# ଆମ ଭାରତୀୟ ଲୋକକଥା

ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି
(ଭରଦ୍ୱାଜ)



# ଆମ ଭାରତୀୟ ଲୋକକଥା

ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)



ପ୍ରଜ୍ଞାଲୋକ

ଆମ ଭାରତୀୟ ଲୋକକଥା

ଲେଖକ :
ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
'ଗୀତିକା', ଜୟଦେବ ନଗର
ଭୁବନେଶ୍ୱର

ପ୍ରକାଶକ :
ପ୍ରଜ୍ଞାଲୋକ
ଡଳମାଳି ସାହି, ପୁରୀ - ୨

ପ୍ରକାଶକାଳ :
ସରସ୍ୱତୀ ପୂଜା, ୧୯୯୩

ମୁଦ୍ରଣ :
ରୟାଲ ପ୍ରିଣ୍ଟିଙ୍ଗ୍ସ୍ ପୁରୀ - ୨

ମୂଲ୍ୟ – ଷାଠିଏ ଟଙ୍କା

'Aama Bharatiya Lokakatha', Written by Janaki Ballav Mohanty,
Published by PRAJNALOKA, PURI - 2.

Rupees SIXTY Only

# ସୂଚୀ


| କ୍ର. ନଂ. | ବିଷୟ | ପୃଷ୍ଠା |
|---|---|---|
| ୧ । | କଥାଟିଏ-କହୁଁ | ୧ |
| ୨ । | ଲମ୍ବାଗୋଡ଼ିଆ | ୫ |
| ୩ । | ବୁଢ଼ା ବୁଢ଼ୀ ଓ କୋକି | ୯ |
| ୪ । | ବଲୁଆ ମଣିଷ | ୧୨ |
| ୫ । | ପାତାଳ କନ୍ୟା ମଣିମାଳା | ୧୫ |
| ୬ । | ଦୁଇ ଲଢ଼ାଳୀ | ୨୪ |
| ୭ । | କୋକି ଓ କଇଁଛ | ୨୭ |
| ୮ । | ସୁଖୁ ଓ ଦୁଖୁ | ୩୦ |
| ୯ । | ଅଫିମ ହେଲା କିପରି | ୩୮ |
| ୧୦ । | ସପନ ଗଛ | ୪୪ |
| ୧୧ । | ଓଟ ଓ ବିଲୁଆ | ୫୪ |
| ୧୨ । | ପୁଅ ହେଲା ମାଙ୍କଡ଼ | ୫୮ |
| ୧୩ । | ମନ୍ତ୍ରୀଙ୍କ ବୁଦ୍ଧି ପରୀକ୍ଷା | ୬୩ |
| ୧୪ । | ଚତୁର ତେନାଲି ରାମ | ୬୬ |
| ୧୫ । | କଙ୍କଡ଼ା ବିଛାର ବିଷ | ୭୧ |
| ୧୬ । | ହାତୀ ବଣ୍ଟା | ୭୩ |
| ୧୭ । | ରାମ ମୂର୍ତ୍ତୀର ଚତୁରତା | ୭୫ |
| ୧୮ । | ସେଠ୍ ଓ ଡକାୟତ | ୭୭ |
| ୧୯ । | ଓଳିଆଲୁ ରଜା | ୭୯ |
| ୨୦ । | ଅନେଶୋତର ମାୟା | ୮୧ |
| ୨୧ । | ନାକ କଟା ପଣ୍ଡିତ | ୮୭ |
| ୨୨ । | ବାରଟି ବାଘ | ୮୯ |
| ୨୩ । | ଭାଇ ଭଉଣୀ | ୯୪ |
| ୨୪ । | ମଣିଗ୍ରେର | ୧୦୪ |
| ୨୫ । | ଝିଅର ପସନ୍ଦ | ୧୧୩ |

| କ୍ର. ନଂ. | ବିଷୟ | ପୃଷ୍ଠା |
|---|---|---|
| ୨୬। | ଗୃହେ ଓଟି ବିଚକ୍ଷ ପଦାର୍ଥ | ୧୧୫ |
| ୨୭। | ଚଢ଼ା ଚଢ଼ୀ | ୧୨୦ |
| ୨୮। | ଗୀତ କଣା | ୧୨୩ |
| ୨୯। | ଲୋଭର ଫଳ | ୧୨୮ |
| ୩୦। | ମୂର୍ଖ ସ୍ୱାମୀ | ୧୩୩ |
| ୩୧। | ଯେସାକୁ ତେସା | ୧୪୦ |
| ୩୨। | ଥାଳଟି ଚୋରଗଲା | ୧୪୩ |
| ୩୩। | ସାଧୁ ଓ ବଣିଆ | ୧୪୪ |
| ୩୪। | ତିନ ଚୋର ଓ ରାଜା | ୧୪୬ |
| ୩୫। | ସ୍ତ୍ରୀର ଚତୁରତା | ୧୫୦ |
| ୩୬। | ଜଗତର ଶ୍ରେଷ୍ଠ ବିଷୟ | ୧୫୫ |
| ୩୭। | ବୁଦ୍ଧିର ଖେଳ | ୧୬୩ |
| ୩୮। | ଓଲୁ ବିଲୁଆ | ୧୭୧ |
| ୩୯। | ସୁନେଲ ଗାଈ | ୧୭୪ |
| ୪୦। | କୃପଣ ବାଲୁଯାତ୍ରା | ୧୮୦ |
| ୪୧। | ଭାଗ୍ୟ | ୧୮୬ |
| ୪୨। | ବୁଦ୍ଧିନାଥର ବୁଦ୍ଧି | ୧୯୦ |
| ୪୩। | କର୍ମର ଫଳ | ୧୯୩ |
| ୪୪। | କାମନା ହାଣ୍ଡି | ୧୯୫ |
| ୪୫। | ସୁଧର ସ୍ୱପ୍ନ | ୨୦୦ |
| ୪୬। | ମୂର୍ଖ ଖୋଜା | ୨୦୩ |
| ୪୭। | ବିଗୁରଙ୍କ ବୁଦ୍ଧି | ୨୦୫ |
| ୪୮। | ବୁଦ୍ଧିମନ୍ତ ବୋହୂ | ୨୧୧ |
| ୪୯। | ଠକ ଗଲା ଠକ | ୨୧୬ |
| ୫୦। | ସେବା କଲେ ପାଇବ | ୨୧୯ |
| ୫୧। | ଭାଲୁର ହଠହଠା | ୨୨୫ |

| କ୍ର. ନଂ. | ବିଷୟ | ପୃଷ୍ଠା |
|---|---|---|
| ୫୨ । | ଅତିଲୋଭରୁ ହଟହଟା | ୧୩୧ |
| ୫୩ । | ବୁଦ୍ଧି ବଡ଼ କି ଧନ ବଡ଼ | ୧୩୫ |
| ୫୪ । | ଯେ ଯାଞ୍ଚେ ପରର ମନ୍ଦ | ୧୩୯ |
| ୫୫ । | ମୂଷା ଓ ଓଟ | ୧୪୭ |
| ୫୬ । | ଲୁହର ମୂଲ | ୧୫୧ |
| ୫୭ । | ଲୋଭର ଫଳ | ୧୫୬ |
| ୫୮ । | ସୁସ୍ଥ ହେବାର ଉପାୟ | ୧୬୧ |
| ୫୯ । | ସାଧବ ଝିଅ | ୧୬୪ |

# କଥାଟିଏ - କହୁଁ

ସ୍ୱାମୀ ଯେପରି, ସ୍ତ୍ରୀଟି ବି ସେହିପରି । ଦୁହେଁଯାକ କୃପଣ; ଯୋଗୀ ଭିକାରୀ କାହାରିକୁ ମୁଠାଏ ଭାତ ଗୁଣ୍ଡଳ ବି ଦିଅନ୍ତି ନାହିଁ । ଅତିଥି, ଅଭ୍ୟାଗତ ତାଙ୍କ ଦୁଆରେ ଚର୍ଚ୍ଚା ହେବା କେହି ଦେଖିନାହିଁ । ଭୋକିଲା ଶୋଷିଲାଙ୍କୁ ଯଦି ବା କେବେ ସାହାଯ୍ୟ କରନ୍ତି, ତା' ବଦଳରେ ସେମାନଙ୍କ ଠାରୁ ଯଥେଷ୍ଟ କାମ ଆଦାୟ କରି ନିଅନ୍ତି । କମ୍ ଖର୍ଚ୍ଚ କରି କିପରି ବେଶୀ ଲାଭ ଉଠେଇବେ, ଏଥିପାଇଁ ଉଭୟେ ସବୁବେଳେ ବ୍ୟସ୍ତ । ଗାଁ ଲୋକେ ସେଥିପାଇଁ ସେ ଦୁହିଁଙ୍କୁ ସୁଝା ପାଆନ୍ତି ନାହିଁ ।

ଥରେ ଜଣେ ବାଟୋଇ ତା ଗାଁକୁ ଯାଉଥିଲା । କୃପଣ ରହୁଥିବା ଗାଆଁ ପାଖେ ସନ୍ଧ୍ୟା ହୋଇଗଲା । ସେ ଭାବିଲା, ଆଜି ରାତିଟା ଏଇ ଗାଆଁରେ ରହି କାଲି ସକାଳୁ ବାହାରି ପଡ଼ିବ । ବାଟୋଇର ଦୁର୍ଭାଗ୍ୟ, ସେ ଆସି ସେଇ କୃପଣ ଦୁଆରେ ବସି ଥକ୍କା ମାରିଲା । ସେତେବେଳେ ସ୍ୱାମୀ-ସ୍ତ୍ରୀ ଦୁହେଁ ଘରେ ଥାଆନ୍ତି । ସ୍ତ୍ରୀ ରୋଷେଇବାସରେ ଲାଗିଥାଏ, ସ୍ୱାମୀ ଅନ୍ୟ କିଛି କାମ କରୁଥାଏ । ବାଟୋଇ ସ୍ତ୍ରୀ ଲୋକଟିକୁ ଆଗେ ଦେଖି କହିଲା—"ମାଉସି ! ସଞ୍ଜ ହୋଇଗଲା, ରାତିକ ପାଇଁ ମୋତେ ତୁମ ଘରେ ସ୍ଥାନ ଦିଅ । କାଲି ପାହାନ୍ତାରୁ ଉଠି ମୋ ବାଟେ ମୁଁ ଚାଲିଯିବି ।'

ଅନିଚ୍ଛା ସତ୍ତ୍ୱେ ସ୍ତ୍ରୀ ଲୋକଟି ବାଟୋଇକୁ ଘର ଭିତରକୁ ଡାକିଲା । ତାକୁ ଗୁଡ଼ାଏ କଞ୍ଚା ଶାଗପତ୍ର ଦେଇ ଖଲିପତ୍ର ତିଆରି କରିବାକୁ କହିଲା ।

ବାଟୋଇ ମନେ ମନେ କଲା, ଏଇ ଖଲିପତ୍ରରେ ତାକୁ ଖାଇବାକୁ ବୋଧହୁଏ ମିଳିବ । ଏଣୁ ସେ ସ୍ୱାମୀ-ସ୍ତ୍ରୀ ଦୁହିଁଙ୍କ ଲାଗି ଦୁଇଟି ଓ ତା' ନିଜପାଇଁ ଗୋଟିଏ —ଏମିତି ତିନିଖଣ୍ଡ ଖଲିପତ୍ର ସିଇଁଲା ।

କିଛି ସମୟ ପରେ ସ୍ତ୍ରୀ ଲୋକଟି ରୋଷେଇ ସାରି ସ୍ୱାମୀକୁ ଖାଇବାକୁ ଡାକିଲା । ସ୍ୱାମୀ ରୋଷେଇ ଘରକୁ ଗଲା । ସ୍ତ୍ରୀ ଗୋଟାଏ ପତ୍ରରେ ନିଜ ପାଇଁ ଓ

ଆଉ ଗୋଟାଏ ପତ୍ରରେ ସ୍ୱାମୀ ପାଇଁ ବାଡ଼ି ଅନ୍ୟ ପତ୍ରଟି ଉପରେ ଚକା ପକାଇ ନିଜେ ବସିପଡ଼ିଲା । ବାଟୋଇ ଏସବୁ ଦେଖିଲା; ମାତ୍ର ସମ୍ପୂର୍ଣ୍ଣ ନିରାଶ ନ ହୋଇ ଭାବିଲା— ବୋଧହୁଏ ଏମାନେ ଖାଇ ସାରିଲେ ତାକୁ ଖାଇବାକୁ ଡାକିବେ । ଏମିତି ଭାବି ଭାବି ବହୁତ ବେଳ ବିତିଲା, ହେଲେ ତାକୁ ଚକିଏ ଖାଇବାକୁ ମିଳିଲା ନାହିଁ ।

ସ୍ୱାମୀ ସ୍ତ୍ରୀ ଦୁହେଁ ଖାଇ ସାରିଲେ । ସ୍ତ୍ରୀ ଚକଥିବା ଖାଇବା ଚାଳକୁ ଘର କଣରେ ହାଣ୍ଡି ଭିତରେ ଘୋଡ଼ାଇ ରଖିଦେଲା । ଗଣ୍ଡିଏ ଖାଇବାକୁ ନ ପାଇ ସେହି ବାଟୋଇ ମନରେ ବଡ଼ ଦୁଃଖ ହେଲା । ଭୋକରେ ତା'ର ପେଟ ଜଳୁଥାଏ, ମାତ୍ର କ'ଣ ବା ସେ ଆଉ କରିପାରିବ ? ବହୁ କଷ୍ଟରେ ଧୈର୍ଯ୍ୟଧରି ବସିରହିଲା ।

ଖରାଦିନ ରାତି । ବାଟୋଇ ବାରଣ୍ଡା ଅଗଣାରେ ବସି ଆପଣା ଦୁର୍ଦ୍ଦଶା ବିଷୟ ଭାବୁଥାଏ । ସ୍ୱାମୀ ସ୍ତ୍ରୀ ଦୁହେଁ ଯାକ ଅଗଣାକୁ ଆସିଲେ । ଗରମ ଦିନ; ରାତିରେ ଭଲ ନିଦ ହୁଏ ନାହିଁ । ଏଣୁ କାହାଣୀ କହିବାପାଇଁ ଏଇଟା ଉପଯୁକ୍ତ ସମୟ । ସ୍ତ୍ରୀ କହିଲା— "ଅତିଥି ମହାଶୟ ! ଗୋଟାଏ ଭଲ କାହାଣୀ କହନ୍ତୁ, ଶୁଣିବା ।"

ବାଟୋଇର ତ ଭୋକରେ ପେଟ ଜଳୁଛି । କଥା କହିବାକୁ ତା'ର ମନ ହେବ କୁଆଡୁ ? କଥା କହିବା ଲାଗି ଏଣେ ସ୍ତ୍ରୀ ଲୋକଟି ତିନିଥର ଅନୁରୋଧ କରି ସାରିଲାଣି । ଏଣୁ ଭୋକଜ୍ୱାଳା ସହି ନ ପାରି ସେ ସେଇ ବିଷୟରୁ କଥାଟିଏ ଆରମ୍ଭ କରି କହିଲା—

"କଥାଟିଏ କହୁଁ କଥଳୀ
ଭୋକରେ ପେଟ ସନ୍ତୁଳି ।
ଚଣା କ୍ଷେତରେ ମିରିଗ ମଲା
ଖାଇବାକୁ ତା'କୁ କେହି ନ ଦେଲା ।"

ସ୍ତ୍ରୀ ଲୋକଟି ପଚାରିଲା— "ଆଜ୍ଞା ! ଏ କି ରହସ୍ୟ କଥା ! ଏହାର ଅର୍ଥ କ'ଣ, କୁହନ୍ତୁ ?"

ବାଟୋଇ କହିଲା— "ଆଜ ସନ୍ଧ୍ୟାବେଳେ ମୁଁ ଏଇ ଗାଁକୁ ଆସିଲାବେଳେ ଦେଖିଲି, ଗୋଟାଏ ସୁନାଗୋଡ଼ିଆ ମିରିଗ ପଣା କବଗଛରେ ଚରିପଡ଼ୁଛି; ମାତ୍ର ତାକୁ କେହି ନେଇ ପାରୁନାହାନ୍ତି ।"

ଏହା ଶୁଣି ଧୂର୍ତ୍ତ ଲୋକଟି ପଚାରିଲା— "ତାକୁ କ'ଣ କେହି ବୋଲି ଆଣିପାରିବେ ନାହିଁ ?"

ବାଟୋଇ ଉତ୍ତର ଦେଲା-- "ହଁ, ଯେ କେହି ଯାଇ ତାକୁ ବୋଲି ଆଣିପାରିବେ । ମାତ୍ର ଏଥିପାଇଁ ଗୋଟାଏ କାମ କରିବାକୁ ପଡ଼ିବ । ମିରିଗକୁ ଆଣିବାକୁ ହେଲେ ପ୍ରଥମେ ଲୁଗାପଟା ଦେହରୁ କାଢି ସମ୍ପୂର୍ଣ୍ଣ ଲଙ୍ଗଳା ହେବାକୁ ହେବ । ମୁଣ୍ଡବାଳକୁ ମୁକୁଳା କରିଦେବାକୁ ପଡ଼ିବ । ତା'ପରେ ଗୋଟାଏ ଘଡ଼ିରେ ସାତଟି ଛିଦ୍ର କରିବ । ସେଥିରେ ସାତଟି ବଳିତା ଜଳାଇ ହାତରେ ଧରିବାକୁ ହେବ । ଅନ୍ୟ ହାତରେ ଗୋଟାଏ ଝାଡ଼ୁ ଧରିବ । ଏମିତି ରୂପରେ ଯେଉଁ ଧୂର୍ତ୍ତଲୋକ ଯିବ, ସେଇ କେବଳ ମିରିଗକୁ ଆଣିପାରିବ । ନୋହିଲେ ଅନ୍ୟ କେହି ଗଲେ ସେ ମିରିଗକୁ ଦେଖିବାକୁ ମଧ୍ୟ ପାଇବ ନାହିଁ ।

ଧୂର୍ତ୍ତ ଲୋକଟି ତ ସୁଖରେ ଲୋଭୀ । ଏପରି ବେଶରେ ଯାଇ ସେ ସେଇ ମିରିଗକୁ ଆଣିବାକୁ ସ୍ଥିର କଲା । ବାଟୋଇ ବତାଇବା ଅନୁସାରେ ସେ ଜିନିଷ ସବୁ ଯୋଗାଡ଼ କରିବାରେ ଲାଗିଗଲା । ଶେଷରେ ଦେହରୁ ଲୁଗାପଟା କାଢିପକାଇ, ମୁଣ୍ଡବାଳକୁ ମୁକୁଳା କରି, ମାଟି ଘଡ଼ିରେ ସାତ ଦୀପ ଜଳାଇ ତାହାକୁ ମୁଣ୍ଡ ଉପରେ ରଖିଲା । ତା'ପରେ ହାତରେ ଗୋଟାଏ ଝାଡ଼ୁଧରି ସେ ଅଦ୍ଭୁତ ବେଶରେ ମିରିଗ ଆଣିବାକୁ ବାହାରି ପଡ଼ିଲା ।

ଧୂର୍ତ୍ତ ଲୋକଟି ଯେତେବେଳେ ଗାଁ-ମୁଣ୍ଡ ପୋଖରୀ ପାଖରେ ପହଞ୍ଚିଲା, ଠିକ୍‌ବେଳେ ସେଇ ଗାଁର କେତେଜଣ ଲୋକ ତାକୁ ଦେଖିପକାଇଲେ । ଧୂର୍ତ୍ତ ଲୋକଟାଏ ଏପରି ଅଦ୍ଭୁତ ବେଶରେ ଚାଲିଆସୁଥିବାର ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଭାବିଲେ, ବୋଧହୁଏ ଏଇ ଧୂର୍ତ୍ତ ଲୋକଟା ନିଶ୍ଚେ ଗୋଟାଏ ଡାହାଣୀ । ଏହାକୁ ଗୋଡ଼ଇଦେବା ଆଦୌ ଉଚିତ୍ ନୁହେଁ । ଏହା ଭାବି ସେମାନେ ଗାଁର ଅନ୍ୟ ଲୋକମାନଙ୍କୁ ଡାକିବାକୁ ଚାଲିଗଲେ । କେତେଜଣ ସଙ୍ଗେ ସଙ୍ଗେ କଟୁଆଳକୁ ବି ଡାକିବାକୁ ବାହାରି ପଡ଼ିଲେ ।

ସ୍ଥିର ହେଲା, ଏଇ ଡ଼ାହାଣୀ ସ୍ତ୍ରୀ ଲୋକକୁ ଆଗେ ଧରି ପିଟିବାକୁ ପଡ଼ିବ । ତା'ପରେ ସେ କାହିଁକି ଏପରି ଯାଉଛି, ଯେ କଥା ତା'ଠାରୁ ବୁଝାଯିବ । ସମସ୍ତେ ମିଶି ତାକୁ ଘେରିଯାଇ ଧରି ପକାଇଲେ । ତା ବାଳକୁ ଧରି ପାଞ୍ଚଜଣରେ ଖୁବ୍ ପିଟିଲେ । ସେ ଅଧମରା ହୋଇଗଲାରୁ ତାକୁ ରଜାଙ୍କ ଦରବାରକୁ ନେଇଗଲେ ।

କଟୁଆଳ ରଜାଙ୍କୁ ସବୁକଥା ଶୁଣାଇଲା । ରଜା ସ୍ତ୍ରୀ ଲୋକଟିକୁ ପଚାରିଲେ— "ରାତିରେ ଏପରି ବେଶରେ କାହିଁକି ବୁଲୁଥିଲ ?" ସ୍ତ୍ରୀ ଲୋକଟି କହିଲା— "ମହାରାଜ ! ମୁଁ ମୋ ନିଜ ଇଚ୍ଛାରେ ଏପରି କରି ନାହିଁ । ମୋ ଘରକୁ କାଲି ଜଣେ ଅତିଥି ଆସିଥିଲେ । ମୁଁ ତାଙ୍କୁ କାହାଣୀ କହିବାକୁ କହିଲି । ସେ କହିଲେ—

"କଥାଟିଏ କହୁଁ କଥୁଲୀ
ଭୋକରେ ପେଟ ସନ୍ଥୁଳି
ଚଣା କ୍ଷେତରେ ମିରିଗ ମଲା
ଖାଇବାକୁ ତାକୁ କେହି ନ ନେଲା ।"

ତା'ପରେ ସେ କିପରି ଅତିଥିଙ୍କ କଥା ମାନି ସେଇ ଅଦ୍ଭୁତ ବେଶରେ ଚଣାକ୍ଷେତ ଆଡ଼କୁ ଯାଉଥିଲା, ତାହା କହିଲା । ରଜାଙ୍କ ଆଦେଶରେ ଆଶ୍ରୟ ନେଇଥିବା ବାଟୋଇକୁ ଦରବାରକୁ ଅଣାଗଲା । ରଜା ତାକୁ ଏସବୁ କଥାର ରହସ୍ୟ କ'ଣ ପଚାରିଲେ ।

ବାଟୋଇଟି କହିଲା— "ମହାରାଜ ! ମୁଁ ଏହାଙ୍କ ଘରେ କାଲି ସନ୍ଧ୍ୟାବେଳେ ଆସି ଅତିଥି ହେଲି । ମାତ୍ର ଇଏ ମୋ ଦ୍ୱାରା ତିନୋଟି ଖଳପତ୍ର ସିଲେଇ କରାଇଲେ । ଘୋଷାଇବାସ କରି ସ୍ୱାମୀ ସ୍ତ୍ରୀ ଆଗ ଖାଇଲେ; କିନ୍ତୁ ମୋତେ କିଛି ଦେଲେ ନାହିଁ । ତା ସତ୍ତ୍ୱେ ଏଇ ସ୍ତ୍ରୀଲୋକ ମୋତେ ଗୋଟାଏ ଗପ କହିବାକୁ କହିଲେ । ଭୋକରେ ତ ମୋ ପେଟ ଜଳୁଥାଏ, କଥା କହିବାକୁ ମୋତେ ଭଲ ଲାଗିବ କେଉଁଠୁ ? ସେଥିପାଇଁ ମୁଁ ଏପରି ଗୋଟାଏ ଶ୍ଳୋକ କହି କିପରି ମିରିଗ ଆଣିବାକୁ ପଡ଼ିବ; ତାହାର ଉପାୟ ବତାଇ ଦେଲି । ଯେମିତି

ଘୀ ଲୋକଟି ଘରୁ ଗୋଡ଼ କାଟି ଗୁଳିଯାଉଛନ୍ତି, ମୁଁ ଯେମିତି ସେହାଙ୍କ ଘରେ ଥିବା ଖାଇବା ଜିନିଷଗୁଡ଼ିକ ଖାଇ ଦେଲି । କେବଳ ଏଇଥିପାଇଁ ମୁଁ ଏପରି ଗୋଟାଏ କଥା ଯୋଡ଼ିଥିଲି ।”

ଘୀ ଲୋକଟିର ସ୍ୱାମୀ ଦରବାରକୁ ଆସିଥିଲା । ସେ ମଧ୍ୟ ଏଇସବୁ କଥା ଠିକ୍ ବୋଲି କହିଲା ।

ରାଜା ବାଟୋଇର ବୁଦ୍ଧିକୁ ପ୍ରଶଂସା କଲେ । ଲୋଭ ଓ କପଟତାର ପ୍ରତିଫଳ ହାତେ ହାତେ ପାଇଥିବାରୁ ଘୀ ଲୋକଟିକୁ କ୍ଷମା ଦେଲେ । ରାଜା ଘୋଷଣା କଲେ— “ଆଜିଠାରୁ ଯାହା ଦୁଆରକୁ ଅତିଥି ଆସିବେ ସେ ଆଗେ ତାଙ୍କର ଚିନ୍ତା କରିବ ।”

( ଛତିଶଗଡ଼ - ମଧ୍ୟପ୍ରଦେଶ )



## ଲମ୍ବାଗୋଡ଼ିଆ

ଗଆଁରେ ବୁଢ଼ୀଟିଏ, କେତୋଟି ଗାଈ ପାଳିଥାଏ । ତାହା ଦୁଧ ପାଏ, ତାକୁ ବିକି ଗୁଜୁରାଣ ମେଣ୍ଟାଏ । ତା’ର କୁଡ଼ିଆ ଘରଟି ବି ଭଙ୍ଗା ଦଦରା, ଛପର ହୋଇ ନ ପାରି ଗୁଳି କଣା, ଘର ଭିତରେ ପାଣି ପଡ଼େ । ବର୍ଷାକାଳ । ଦିନେ ରାତିରେ ବୁଢ଼ୀ ଖାଇ ସାରି ଠାକୁରଙ୍କୁ ପ୍ରାର୍ଥନା କଲା— “ହେ ଭଗବାନ, ମତେ ଯେପରି ଲମ୍ବାଗୋଡ଼ିଆ ଆକ୍ରମଣ ନ କରୁ ।”

ଏତିକି କହି ସେ ଶୋଇବାକୁ ଗଲା । ତା’ର ରହିବା ଘରକୁ ଲାଗି ଗୁହାଳ ଘର । ଦୈବ ଯୋଗକୁ ସେହି ଗୁହାଳ ଘର ପାଖେ ସେତିକିବେଳେ

ଗ୍ଧେରଟିଏ ଲୁଚିଥାଏ । ବୁଢ଼ୀ ଶୋଇଲେ ତା’ର ଗୋଟିଏ ଗାଈ ଗ୍ଧେରଟି ନେବ ବୋଲି ଯାଞ୍ଚି ଥାଏ । ଗୋଟିଏ ବାଘ ବି ସେମିତି ଗୁହାଳ ଘରେ ଅନ୍ଧାରରେ ଲୁଚି ଥାଏ । ବୁଢ଼ୀ ଶୋଇପଡ଼ିଲେ ଗାଈଟିଏ ମାରିବା ତା’ର ବି ଇଚ୍ଛା । ଦୁହେଁଯାକ ବୁଢ଼ୀର ପ୍ରାର୍ଥନା ଶୁଣିଲେ; ମାତ୍ର ଲମ୍ବାଗୋଡ଼ିଆ କିଏ, ବୁଝିପାରିଲେ ନାହିଁ ।

ବୁଢ଼ୀକୁ ଟିକିଏ ଖୁଇ ନିଦ ଲାଗି ଆସିଛି— ଗ୍ଧେର ଗୁହାଳ ଘରେ ପଶିଲା । କଟି କଟି ଅନ୍ଧାର । ଗ୍ଧେର କେମିତିବା ଏଥିରେ ଭଲ ଗାଈଟିଏ ବାଛିବ ? ଭାବିଲା, ଲାଙ୍ଗୁଡ଼ରେ ହାତ ପକାଇଲା ମାତ୍ରେ ଯେ ବେଶୀ ଡେଇଁବ ସେଇ ଗାଈଟି ସବୁଠାରୁ ଭଲ । ଏଇଆ ଭାବି ଗାଈମାନଙ୍କ ଲାଙ୍ଗୁଡ଼ ଛୁଇଁବାକୁ ଆରମ୍ଭ କଲା । ହଠାତ୍ ଅଜାଣତରେ ସେଇ ବାଘ ଲାଙ୍ଗୁଡ଼ରେ ହାତ ପଡ଼ିଲେ । ବାଘ ଚମକି ଡେଇଁ ପଡ଼ିଲା । ଗ୍ଧେର ଭାବିଲା, ଏଇ ସବୁଠୁ ଭଲଗାଈ । ଏଇଟିକୁ ତା’ର ନେବା ଉଚିତ୍ । ତାକୁ ଟାଣି ଟାଣି ଘରକୁ ନେବ ଭାବି ସେ ତା ଲାଙ୍ଗୁଡ଼କୁ ହାତରେ ଗୁଡ଼ାଇବାକୁ ଆରମ୍ଭ କଲା । ଲାଙ୍ଗୁଡ଼ ଟାଣୁଥିବା ଲୋକକୁ ବାଘ ବୁଢ଼ୀ କହୁଥିବା "ଲମ୍ବାଗୋଡ଼ିଆ" ଭାବି ଆଉ ଥରେ ଡେଇଁଲା । ଗ୍ଧେର ଠିକ୍ କଲା, ଏଇ ଗାଈଟା ବଡ଼ ଦୁଷ୍ଟ, ଯା ଉପରେ ନ ବସିଲେ ଯାକୁ ସାଧ କରିହେବ ନାହିଁ । ଏହା ଭାବି ସେ ସେମିତି ବାଘ ଉପରେ ବସିଛି, 'ଲମ୍ବାଗୋଡ଼ିଆ' ମତେ ଧରିଲା ଭାବି ବାଘ ଭୟରେ ଘର ଭିତରୁ ବାହାରେ ଧାଇଁବାକୁ ଲାଗିଲା ।

ଏପରି ବିଚିତ୍ର କାଣ୍ଡ ଦେଖି ଗ୍ଧେରର ପୂରା ବିଶ୍ୱାସ ହେଲା- ଏଇଟା ଗାଈ ନୁହେଁ; ନିଶ୍ଚେ ସେ ବୁଢ଼ୀ କହୁଥିବା ଲମ୍ବାଗୋଡ଼ିଆ ପ୍ରାଣୀ, ଗ୍ଧେର ଓ ବାଘ ପରସ୍ପରକୁ ଲମ୍ବାଗୋଡ଼ିଆ ଭାବି ଭୟରେ ଅଧାପ୍ରାଣ ।

ଗ୍ଧେରକୁ ପିଠିରେ ବସାଇ ବାଘ ବଣ ଭିତରେ ପଶିଲା । ଗ୍ଧେର ବଣରେ ସେ ବାଘ ବେକକୁ ଦୁଇ ହାତରେ ଖୁବ୍ ଜୋରରେ ଚିପି ଦେଲା । ଏହା ଦେଖି ବାଘ ଭାବିଲା, ଏଇଟା ଲମ୍ବାଗୋଡ଼ିଆ ନୁହେଁ, ଇଏ ଗୋଟିଏ 'ତଣ୍ଟିଚିପା' । ବାଘ ଭୟରେ ଆହୁରି ଜୋରରେ ଧାଇଁଲା । ତଣ୍ଟି ଚିପିଲେ ବି ଅଟକେଇ ନ ହେଲାରୁ ଗ୍ଧେର ଆଉ

ଥରେ ବାଘ ଲାଙ୍ଗୁଡ଼କୁ ଧରିଲା । ଲାଙ୍ଗୁଡ଼ରେ ପୁଣି ଥରେ ହାତ ବାଜିବାରୁ ବାଘ ଆହୁରି ଜୋର୍‌ରେ ଧାଇଁଲା । ବାଘ ଏତେ ଜୋର୍‌ରେ ଧାଇଁଲା ଯେ, ଚୋର ତା ପିଠି ଉପରେ ଦମ୍ଭରେ ବସି ନ ପାରି ତଳକୁ ଖସି ପଡ଼ିଲା । ବାଘ ତ ପଳାଇଲା; ମାତ୍ର ଚୋର ତା' ଲାଙ୍ଗୁଡ଼କୁ ଏତେ ଜୋରରେ ଟାଣି ଧରିଥିଲା ଯେ ତାହା ଛିଡ଼ିକରି ତା ହାତରେ ରହିଗଲା ।

ବାଘ ବଣରେ ଛପିଗଲା । ଚୋର ଭାବ ଭାବ ସେ ସ୍ଥିର କଲା ତା' ପିଠିରେ ଯେ ବସିଥିଲା, ସେଇଟା 'ଟେଣିଶପା' ନୁହେଁ ଗୋଟାଏ 'ଲାଙ୍ଗୁଡ଼ ହଣା' । ଚୋରଟି ମଧ୍ୟ ନିଜ ହାତରେ ରହିଯାଇଥିବା ଲାଙ୍ଗୁଡ଼ଟି ଗୋଟିଏ ବାଘ ଲାଙ୍ଗୁଡ଼ ବୋଲି ଚିହ୍ନିପାରି ଭୟରେ ଥରିଲା । ରାତି ପାହିବାକୁ ଆହୁରି ଅନେକ ଡେରି । ଅନ୍ଧାରରେ ସେ ବା କ'ଣ କରିବ ? ଭୟରେ ତା'ର ଛାତି ଥରୁଥାଏ । ଆଉ କିଛି ଉପାୟ ନ ଦେଖି ପାଖରେ ଥିବା ଗୋଟିଏ ଆମ୍ବ ଗଛ ଉପରକୁ ସେ ଚଢ଼ିଗଲା, ସେଇଠି ରାତିଟା କଟାଇବାକୁ ସ୍ଥିର କଲା ।

ଏଣେ ବାଘ ଯାଇ ଆପଣା ସାଥୀ ଭାଇମାନଙ୍କ ପାଖେ ପହଞ୍ଚିଲା । ନିଜ ଅଙ୍ଗେ ଲଭେଇଥିବା ଭୟର କାହାଣୀ ସେମାନଙ୍କୁ କହିଲା । ସବୁ ବାଘ ବସି ଏକଥାର ବିଚାର କଲେ । ସେମାନେ ହେଉଛନ୍ତି ବଣର ରାଜା, ତାଙ୍କ ଭାଇ ଭିତରୁ ଜଣକୁ ପୁଣି ଲାଙ୍ଗୁଡ଼ହଣାଟା ଏପରି ହିନସ୍ତା କରିବ ! କି ଲଜ୍ଜାର କଥା ! ସାରା ବାଘ-ଜାତିର ଏଟା ଅପମାନ ଓ କଳଙ୍କ । ଏହାର ପ୍ରତିକାର କରିବାକୁ ହେବ । ତା ନ ହେଲେ ସେମାନେ ବଣରେ କି ରାଜା ? ଏହାପରେ ତାଙ୍କୁ ଆଉ କିଏ ବା ମାନିବ ? ଆଉ କାଳ ବିଳମ୍ବ ନ କରି 'ଲାଙ୍ଗୁଡ଼ ହଣା'କୁ ଶାସ୍ତି ଦେବାଲାଗି ବାଘ ଦଳ ବାହାରି ପଡ଼ିଲେ ।

ବଣଟା ସାରା ସେଇ ପ୍ରାଣୀଟାକୁ ଖୋଜି ଖୋଜି ଥକିଗଲେ; ମାତ୍ର କାହିଁ ସେ 'ଲାଙ୍ଗୁଡ଼ ହଣା' ? ଶେଷକୁ ଗୋଟିଏ ବାଘ ତାକୁ ଚିହ୍ନଟ କଲା । ଦେଖିଲା, ପାଖ ଆମ୍ବ ଗଛ ଉପରେ ଲାଙ୍ଗୁଡ଼ ହଣା ଆରାମରେ ଶୋଇଛି । ହୁରି ପକାଇଲା— "ହେଇଟି 'ଲାଙ୍ଗୁଡ଼ ହଣା', ଟାଇଁ ଆସ ହୋ, ଧାଇଁ ଆସ ।" ବାଘ-ମହଲରେ ଚହଳ ପଡ଼ିଗଲା । କେମିତି ଲାଙ୍ଗୁଡ଼ ହଣାକୁ ସେମାନେ

ଧରିବେ ? ସଙ୍ଗେ ସଙ୍ଗେ ଉପାୟ ବି ସ୍ଥିର ହୋଇଗଲା । ଗୋଟାଏ ବାଘ ଉପରେ ଆଉ ଗୋଟାଏ ବାଘ, ତା' ଉପରେ ଆଉ ଗୋଟାଏ— ଏମିତିକା ଉଠି ଉଠି ସେମାନେ ଲଙ୍ଗୁଡ଼ ଟଣା ପାଖେ ପାଖେ ପହଞ୍ଚି ତାକୁ ଧରିବେ । ସେଇଆ ବି କଲେ । ଚୋର ପାଖା ପାଖି ଆସି ପହଞ୍ଚିଲେ । ଚୋର ଭାବିଲା ଏଥର ମଲି, ଆଉ ରକ୍ଷା ପାଇବାର ଉପାୟ ନାହିଁ ।

ଏତିକିବେଳେ ତାକୁ ଗୋଟାଏ ଭଲ ବୁଦ୍ଧି ଦିଶିଲା । ସେ ଦେଖିଲା, ସେଇ ଲଙ୍ଗୁଡ଼ଖଣ୍ଡି ବାଘଟି ସବୁର ତଳେ ଠିଆ ହୋଇଛି । ତାକୁ ଦେଖିଲା ଶୁଣେଇ ସେ ଖୁବ୍ ଜୋର, ଧମକେଇ ଚିତ୍କାର କଲା— "ହଇରେ ହେ, ଲଙ୍ଗୁଡ଼ ଖଣ୍ଡି ବାଘ ! ହଇରେ ତୁ ପୁଣି ଏଇଠି ?" ଲଙ୍ଗୁଡ଼ ଖଣ୍ଡି ବାଘ ଭାବିଲା ଲଙ୍ଗୁଡ଼ ଟଣା ବୋଧହୁଏ ଏଥର ସମସ୍ତଙ୍କୁ ଛାଡ଼ି ସିଧା ତା ଏକା ଧରିବ । ଏଇଆ ଭାବି ପ୍ରାଣ ଭୟରେ ସେ ଉଠିପଡ଼ି ଧାଇଁଲା । ସବାତଳ ବାଘଟି ଖସି-ଯିବାରୁ ଗୋଟିକ ପରେ ଗୋଟିଏ ହୋଇ ବାଘ-ଆକଟି ତଳେ ପଡ଼ିଲା । ହଠାତ୍ କ'ଣ ହୋଇଗଲା କିଛି ବୁଝି ନ ପାରି ସବୁ ବାଘଯାକ ଭୟରେ ହାଉଳି ଖାଇ-ଗଲେ । ଲଙ୍ଗୁଡ଼ ଟଣା ଧଇଲା ଭାବି ସମସ୍ତେ ପ୍ରାଣ ବିକଳରେ ଧାଇଁ ପଳାଇ ଗଲେ ।

ସକାଳ ହେବାଯାଏ ଚୋର ସେଇ ଗଛ ଉପରେ ବସିରହିଲା । ସକାଳୁ ଘରକୁ ଫେରି ସେ ପ୍ରତିଜ୍ଞା କଲା, ଆଉ ଦିନେ ସେ ଚୋରି କରିବାକୁ ଯିବନାହିଁ ।

( ଆହ୍ଲାଦ )



# ବୁଢ଼ାବୁଢ଼ୀ ଓ କୋକ

ବୁଢ଼ାଟିଏ ବୁଢ଼ୀଟିଏ । ଦୁହେଁ ଏକାଠି ଝୁପିରେ ଥାଆନ୍ତି । ଦିନେ ବୁଢ଼ା ବାଡ଼ିରେ ସାରୁ ଲଗାଇବାକୁ ଯାଉଛନ୍ତି, ଏତିକିବେଳକୁ ପଲେ କୋକଶିଆଳ ଆସି ପହଞ୍ଚିଗଲେ । ପଚାରିଲେ,— "କିଓ ଅଜା, କଞ୍ଚା ସାରୁ ନା ସିଝା ସାରୁ ଲଗାଉଛ ।"

ବୁଢ଼ା କହିଲା— "ପିଲେ, ମୁଁ ତ ଖାଲି କଞ୍ଚା ସାରୁ ଲଗାଉଛି ।" କୋକଶିଆଳିମାନେ କହିଲେ—"ବୁଝିଲ ଅଜା, ସାରୁ କ'ଣ ଏମିତି ଲଗାଯାଏ ? ତମେ ଆଗ ସାରୁକୁ ସିଝାଇ ଦିଅ । ଲଗାଇବା ଜାଗାରେ ଗାତ ଖୋଳ, ସେଇ ଗାତରେ କିଛି କୁଟା ଦେଇ ତା' ଉପରେ କିଛି ପାନ ପତର ଉପରେ ସାରୁ ଲଗାଅ । ଦେଖିବ, ଏକା ରାତିକେ ସାରୁ କେତେ ବଡ଼ ହୋଇ ଯାଇଥିବ ।"

ବୁଢ଼ା କହିଲା,— "ଆଚ୍ଛା ପିଲାଏ, ତୁମ କଥା ଅନୁସାରେ ମୁଁ ଆଜି ରାତିରେ ସାରୁ ଲଗାଇବି ।"

ସକାଳୁ ସତ ସଞ୍ଜବେଳକୁ ବୁଢ଼ା ସାରୁତକ ସିଝାଇ ସେଇ ଭଳିରେ ଲଗାଇ ଦେଲା । ସେଦିନ ରାତିସାରା କୋକମାନଙ୍କର ମଉଜ । ସେମାନେ ଆସି ସାରୁ ସିଝାତକ ଖୋଳି ଖାଇ ଦେଇ ଚାଲିଗଲେ । ତା'ପରଦିନ ସକାଳେ ବୁଢ଼ା ସାରୁଗଛ ଦେଖିବାକୁ ଯାଇ ନିଜର ଭୁଲ ଓ କୋକମାନଙ୍କ ଚତୁରପଣିଆ ବୁଝିପାରିଲା ।

ଏହାପରେ କେତେଦିନ ବିତିଗଲା । ଦିନେ ବୁଢ଼ା ବୁଢ଼ୀକୁ କହିଲା,— "ତୁ ଗୋଟାଏ କଥା କର, ମୋ ଦେହସାରା ପାଣିଆ ଗୁଡ଼ ବୋଳିଦେ । ଯେମିତି ମୋ ଦେହରେ ବୋଳା ହୋଇଥିବା ଗୁଡ଼ ଖାଇବାକୁ ମାଛି ଆସି ବସିବେ, ତୁ ବଡ଼ ପାଟିରେ କାନ୍ଦିବାକୁ ଆରମ୍ଭ କରିଦେବୁ । କୋକଶିଆଳୀମାନେ ତା'ପରେ ଆସି 'କଣ ହେଲା' ବୋଲି ତତେ ପଚାରିବେ । ତୁ କହିବୁ—

'ପିଲାଏ, ଆଉ କଣ କରିବ ? ବୁଢ଼ାଟି ତ ମରିଗଲା, କିଏ ତାକୁ ଉଠାଇବ ? ତମେ ଏଇ ମୁର୍ଦ୍ଦାରଟାକୁ ନେଇ ଖାଅ । ହଁ, ଏକଥା ସେମାନଙ୍କୁ କହିବା ଆଗରୁ ମୋ ପାଖରେ ଗୋଟାଏ ଶକ୍ତ ଲମ୍ବା ଠେଙ୍ଗା ଥୋଇ ଦେଇଥିବୁ । ଯେମିତି ଲୋକମାନେ ମୋତେ ଘୋଷାରି ନେବାକୁ ଘର ଭିତରକୁ ପଶିଯିବେ ତୁ ସଙ୍ଗେ ସଙ୍ଗେ ବାହାର ପଟୁ କବାଟ ବନ୍ଦ କରିଦେବୁ । ତା'ପରେ ମୁଁ ଉଠି ସେଇ ଠେଙ୍ଗାରେ ସମସ୍ତଙ୍କୁ ଗୋଟି ଗୋଟି କରି ପିଟି ମାରିପକାଇବ ।"

ସତକୁ ସତ ବୁଢ଼ୀ ସେଇଆ କଲା । ଯେମିତି ଲୋକମାନେ ଖୁସିରେ ଘର ଭିତରେ ପଶିଲେ, ବୁଢ଼ୀ ବାହାର ପଟୁ ଶିକୁଳି ଲଗାଇ ଦେଲା । ବୁଢ଼ା ସାଙ୍ଗେ ସାଙ୍ଗେ ଉଠି ଠେଙ୍ଗା ଧରି ଲୋକମାନଙ୍କୁ ପିଟିବାକୁ ଆରମ୍ଭ କରିଦେଲା । ଅନେକ ଲୋକ ମଲେ, ମାତ୍ର ଗୁଟିଏ ଲୋକ କୌଣସି ମତେ ଦରମରା ହୋଇ ଖସି ଚାଲିଗଲେ ।

ତା'ପରେ କିଛିଦିନ ଗଲା । ବୁଢ଼ୀ ବୁଢ଼ାକୁ କହିଲା— ହଇଏ, ଆଜି ଯାଏ ତ ମୁଁ ଲୋକଙ୍କ ଡ଼ରି ଘରୁ ଟିକିଏ ଗୋଡ଼ କାଢିପାରିଲି ନାହିଁ । ଏବେ ଟିକିଏ ଝିଅ ଘରକୁ ଯାଇ ତାକୁ ଦେଖି ଆସିଲେ ହୁଅନ୍ତା ନାହିଁ ?'

ବୁଢ଼ା କହିଲା— "ନା, ନା । ସେଠିକି ଯିବାଟା ମୋଟେ ନିରାପଦ ନୁହେଁ । ସେ ଯେଉଁ ଲୋକ ଗୁରିଟା ଖସି ପଳେଇଲେ, ସେମାନେ ତୋତେ ବାଟରେ ଏକୁଟିଆ ପାଇଲେ ନିଶ୍ଚେ ବିପଦରେ ପକାଇବେ ।" ମାତ୍ର ଝିଅକୁ ଦେଖିଯିବାକୁ ବୁଢ଼ୀର ଏକା ଜିଦ୍ । ବୁଢ଼ା ମନାକରିବା ସତ୍ତ୍ୱେ ଦିନେ ସେ ଝିଅ ଘରକୁ ବାହାରିଲା । ସେଇଠୁ ବୁଢ଼ା ବୁଢ଼ୀକୁ ଗୋଟିଏ ଲାଉ ଖୋଳରେ ପୂରାଇ ଝିଅ ଘର ଆଡ଼କୁ ଗଡ଼ାଇଦେଲା ।

ବୁଢ଼ୀ ଲାଉଖୋଳ ଭିତରେ ପଶି ଝିଅ ଘର ଆଡ଼କୁ ଗଡ଼ ଗଡ଼ ଚାଲିଲା । ଝିଅ ଘର ଆଉ ଅଳ୍ପ ବାଟ ଥାଏ । ଲାଉଟାଏ ଆପଣା ଛାଏଁ ଗଡ଼ ଗଡ଼ ଆସୁ-ଥିବା ଦେଖି ଲୋକମାନେ କାବା ହୋଇଗଲେ । ସନ୍ଦେହ ଓ କୌତୂହଳରେ ସେମାନେ ସେଇଟାକୁ ଅଟକାଇ ଗୋଇଠା ମାରି ମାରି ଫଟେଇ ଦେଲେ । ବୁଢ଼ୀକୁ ତା' ଭିତରେ ଦେଖି ସେମାନଙ୍କ ଆନନ୍ଦ କହିଲେ ନ ସରେ ।

ସେମାନେ କହିଲେ— 'ତୁ ଆମକୁ ଠକ ଖସିଯିବୁ ବୋଲି ପାଞ୍ଚିଥିଲୁ ପରା; ଏଥର ଧରାପଡ଼ିଛୁ । ରହ, ତତେ ଏବେ ସଙ୍ଗେ ସଙ୍ଗେ ମାରି ଖାଇବ ।'

ନାଚ ଦେଖିବାକୁ ଲୋକମାନଙ୍କର ଭାରି ଇଚ୍ଛା ହେଲା । ସେମାନେ ଭାବିଲେ, ବୁଢ଼ୀର ତ ଆଉ ପଳାଇବାର ଉପାୟ ନାହିଁ । ନାଚ ଦେଖାଟା ହୋଇଯାଉ । ବୁଢ଼ୀ କଥାରେ ସେମାନେ ରାଜି ହୋଇଗଲେ । ବୁଢ଼ୀ କହିଲା, "ପିଲାଏ ମୁଁ ନାଚିବା ପୂର୍ବରୁ ତୁମକୁ ଗୋଟାଏ କାମ କରିବାକୁ ପଡ଼ିବ । ମୁଁ ଗୀତ ଗାଇ ଗାଇ ନାଚିବ, ମୁଁ ଗୀତ ଗାଉଥିବା ବେଳେ ତମେ ପାଳି ଧରୁଥିବ । ତା'ହେଲେ ମୁଁ ଆହୁରି ଭଲ ନାଚ ପାରିବ ।"

ବୁଢ଼ୀର ଝିଅ ଘର ଆଉ ଅଳ୍ପ ବାଟଥାଏ । ବୁଢ଼ୀ ସେଇଠି ନାଚିବାକୁ ଆରମ୍ଭକଲା । ଝିଅର ଦୁଇଟି କୁକୁର । ଗୋଟିକର ନାଁ ନାଲି, ଆରଟିର ନାଁ କାଳୀ । ବୁଢ଼ୀ ନାଚୁ ନାଚୁ କୁକୁର ଦୁଇଟିର ନାମ ଧରି ସ୍ୱର ମେଲି ଡାକିଲା— "ନାଲିରେ—କାଳୀରେ କାଳୀରେ—ନାଲିରେ" । କୁକୁର ଦୁଇଟି ସେ ଜାଗାକୁ ଧାଇଁ ଆସିଲେ । କୁକୁର ଦୁଇଟିକୁ ଧାଇଁ ଆସୁଥିବା ଦେଖି ଲୋକମାନେ ପ୍ରାଣ ବିକଳରେ ପଳାଇଲେ । ବୁଢ଼ୀ ନିରାପଦରେ ଝିଅ ଘରେ ପହଞ୍ଚିଗଲା ।

ସଭିଏ କହିଲେ—"ବୁଢ଼ୀ ଲୋ ବୁଢ଼ୀ
ଲାଉ ଖୋଳ ପଶି ଅଇଲୁ ଉଡ଼ି ।"

( ଆସାମ )



# ବଳୁଆ ମଣିଷ

ଗୋଟିଏ ରାଜ୍ୟରେ ଜଣେ ଅତି ଉତ୍ତମ ରାଜା ଥାଆନ୍ତି । ସେହି ରାଜ୍ୟରେ ଗୋଟାଏ ହାତୀ ଓ ଗୋଟାଏ ବାଘ ଥିଲେ । ଦୁହେଁଯାକ ଅତି ଦୁର୍ଦ୍ଦାନ୍ତ । ସେମାନଙ୍କର ଉପଦ୍ରବରେ ଲୋକେ ଭୟରେ କାଳ କାଟୁଥାନ୍ତି । ରାଜା ଯେତେ ଚେଷ୍ଟା କଲେ ମଧ୍ୟ ସେ ଦୁଇଟା ପ୍ରାଣୀଙ୍କୁ ଆୟତ୍ତ କରି ପାରିଲେ ନାହିଁ । ସବୁ ଉଦ୍ୟମ ବ୍ୟର୍ଥ ହେବା ଦେଖି ରାଜା ଘୋଷଣା କରି ଦେଲେ— "ଯିଏ ସେ ପ୍ରାଣୀ ଦୁଇଟାଙ୍କୁ ମାରିଦେବ, ତାକୁ ପୁରସ୍କାର ଦିଆଯିବ ।" ପୁରସ୍କାର ଲୋଭରେ ଅନେକ ଲୋକ ଚେଷ୍ଟା କଲେ; ମାତ୍ର ଦୁଃଖର କଥା, କାହାରି ଭାଗ୍ୟରେ ତାହା ଜୁଟିଲା ନାହିଁ ।

ସେ ରାଜ୍ୟରେ ଜଣେ ଅତି ଦରିଦ୍ର ଲୋକ ଥାଏ । ଏତେ ଦୁଃଖରେ ସେ କାଳ କାଟୁଥିଲା ଯେ ବଞ୍ଚି ରହିବାକୁ ତାର ଆଉ ଆଗ୍ରହ ନ ଥିଲା । ଏଣୁ ସେ ଦିନେ ଜାଉରେ ବିଷ ମିଶାଇ ତାହା ଖାଇ ମରିବାକୁ ସ୍ଥିର କଲା । ବିଷ ମିଶା ସେହି ଜାଉକୁ ସାଥିରେ ନେଇ ସେ ବଣକୁ ଯାଇଥାଏ । ବାଟରେ ତାକୁ ଶୋଷ ହେଲା । ତେଣୁ ସେ ଖାଇବା ପାତ୍ରଟିକୁ ଗୋଟାଏ ଗଛମୂଳେ ରଖି ଦେଇ ପାଣି ପାଇଁ ନିକଟରେ ଥିବା ନଈ କୂଳକୁ ଗଲା । ଠିକ୍ ସେତିକବେଳକୁ ସେହି ଦୁର୍ଦ୍ଦାନ୍ତ ହାତୀଟି ସେଇଠି ପହଞ୍ଚି ସେହି ଜାଉତକ ଖାଇ ଦେଲା । ବିଷ ମିଶା ଖାଦ୍ୟ ଖାଇବା ଫଳରେ ହାତୀଟି ସେଇଠି ପଡ଼ି ମରିଗଲା ।

ହାତୀ ମରିଯିବା ଖବର ଶୁଣି ରାଜା ଭାରି ଖୁସି ହେଲେ । ହାତୀଟି କିପରି ମଲା ତାହା ଜାଣିବାକୁ ତାଙ୍କର ଇଚ୍ଛା ହେଲା । ସେହି ହତଭାଗ୍ୟ ଲୋକଟିକୁ ମଲା ହାତୀ ପାଖେ ଦେଖି ଲୋକେ ତାକୁ ରାଜାଙ୍କ ପାଖକୁ ନେଇଗଲେ । ରାଜା ପଚାରିଲେ, ହାତୀକୁ କିଏ ମାରିଛି ।" ଲୋକଟି କହିଲା, "ଆଉ କିଏ ମାରିବ ? ମୁଁ ସେହି ହାତୀଟିକୁ ଗୋଟିଏ ବିଧାରେ ମାରି ଦେଇଛି ।"

ସବୁଦିନ ପାଇଁ ଦୁର୍ଦ୍ଦାନ୍ତ ହାତୀ କବଳରୁ ରାଜ୍ୟ ରକ୍ଷା ପାଇଲା । ରାଜା

ଲୋକଟି ଉପରେ ଭାରି ଖୁସି ହୋଇ ତାକୁ ବହୁତ ଟଙ୍କା ପୁରସ୍କାର ଦେଲେ, କହିଲେ, "ଏ ରାଜ୍ୟରେ ଆଉ ଗୋଟିଏ ବାଘ ଭାରି ଉତ୍ପାତ କରୁଛି । ଯେ ତାକୁ ମାରିଦେବ ତାକୁ ଏହାଠାରୁ ଅଧିକ ଟଙ୍କା ଦିଆଯିବ ।"

ଲୋକଟି କହିଲା, "ମୁଁ ତାକୁ ବି ମାରିଦେବି ।" ରାଜା ଆଦେଶ ଦେଲେ, "ତା' ହେଲେ ତାକୁ ଏଇ ଦୁଇ ଦିନ ମଧ୍ୟରେ ତୁମକୁ ମାରିବାକୁ ପଡ଼ିବ ।" ଲୋକଟି ସେଥିରେ ବି ନିଜର ସମ୍ମତି ଜଣାଇଲା ।

ତା'ପରେ ଲୋକଟି ବାଘକୁ ମାରିବାର ଗୋଟାଏ କୌଶଳ ପାଞ୍ଚିଲା । ନିର୍ଦ୍ଦିଷ୍ଟ ଦିନରେ ସେ ଗୋଛାଏ ଦଉଡ଼ି ଓ ଗୋଟାଏ ମସ୍ତବଡ଼ ବାଉଁଶ ଧରି ଜଙ୍ଗଲ ଭିତରକୁ ଚାଲିଲା । ଜଙ୍ଗଲର ସବୁଠାରୁ ବଡ଼ ଗଛରେ ଚଢ଼ି, ସେ ଯେତେପାରେ ଜୋରରେ ଚିତ୍କାର କଲା । ଗଛରେ ଥିବା ଚଢ଼େଇମାନେ ଚମକି ଏଣେ ତେଣେ ଉଡ଼ି ଆହୁରି କୋଳାହଳ ସୃଷ୍ଟି କଲେ । ଶେଷକୁ ଉତ୍ପାତ କରୁଥିବା ବାଘଟି ମଧ୍ୟ ସେଇ ଗଛ ମୂଳକୁ ଆସିଲା । ଗଛ ଉପରେ ବସିଥିବା ଲୋକଟିକୁ ପଚାରିଲା "ଭାଇ, ତମେ ଏ ଚଢ଼େଇମାନଙ୍କୁ କି ବିଷୟ ପଢ଼ାଉଛ ?"

ଲୋକଟି କହିଲା, "ମୁଁ ପରା ସେମାନଙ୍କୁ ସଙ୍ଗୀତ ଶିଖାଉଛି ।" ବାଘ କହିଲା, "ଭାଇ ମତେ ତା ହେଲେ ଟିକିଏ ସଙ୍ଗୀତ ଶିଖାଇ ଦେବନି ?"

ଏ କଥା ଶୁଣି ଲୋକଟି ଉତ୍ତର ଦେଲା, "ବୁଝିଲ ବନ୍ଧୁ, ତମେ ତ ଜାଣ ମୁଁ ଗୋଟାଏ ଛାର ମଣିଷ, ତମେ ମହା ବଳବାନ ବାଘ; ତମେ ଯେ ମତେ ନ ଖାଇବ ଏଥିରେ କେଉଁ ବିଶ୍ୱାସ ?"

ବାଘ କହିଲା, "ମୁଁ ହଜାରବାର ସତ୍ୟ କରୁଛି, ମୁଁ ତୁମର କୌଣସି କ୍ଷତି କରିବି ନାହିଁ । ଆଜିଠୁ ତୁମେ ମୋର ଗୁରୁ । ତମେ ଯାହା କହିବ ମୁଁ ତାହା କରିବି । ଯଦି ବିଶ୍ୱାସ ନ ହେଉଛି, ମତେ ତମେ ଏଇ ଗଛରେ ବାନ୍ଧି ଦେଇ ସଙ୍ଗୀତ ଶିଖେଇ ପାର ।"

ଏ କଥା ଶୁଣି ଲୋକଟି ଗଛରୁ ଓହ୍ଲାଇ ଆସିଲା । ବାଘର ଚାରିଗୋଡ଼କୁ ନେଇ ଗଛ ମୂଳରେ ଖୁବ୍ ଶକ୍ତକରି ବାନ୍ଧି ସେଇ ଲମ୍ବା ବାଉଁଶଟିରେ ବାଘକୁ

ପିଟିବାକୁ ଲଗିଲା । ମାତ୍ର ଆଉ ସହ୍ୟ ନ ପାରି ବାଘ କହିଲା, "ଭାଇ, ମୋତେ ଏଥର ଛାଡ଼ି ଦିଅ । ମୋର ଯଥେଷ୍ଟ ସଙ୍ଗୀତ ଶିକ୍ଷା ହୋଇଗଲାଣି, ମୁଁ ଆଉ ଶିଖି ପାରିବ ନାହିଁ ।"

ଲୋକଟି କହିଲା, "ନାଇଁ ନାଇଁ ତମେ କଚ୍ଛ ଶିଖିନା, ଆହୁରି ବହୁତ ଶିଖିବାକୁ ଅଛି । ତମକୁ ଖୁବ୍ ଭଲକରି ସବୁ ଶିଖାଇବାକୁ ହେବ ।" ଏତକ କହି ପୂର୍ବପରି ସେ ବାଘକୁ ପିଟି ଚାଲିଲା; ଫଳରେ ବାଘଟି ଶେଷକୁ ଛଟପଟ ହୋଇ ମରିଗଲା ।

ତା'ପରେ ସେ ବାଘଟିକୁ ରାଜାଙ୍କ ପାଖକୁ ଆଣିଲା । ରାଜା ଲୋକଟିର ସାହସ ଦେଖି ଖୁବ୍ ଖୁସି ହୋଇ ତାକୁ ପୂର୍ବ ଅପେକ୍ଷା ଅଧିକ ଟଙ୍କା ପୁରସ୍କାର ଦେଲେ । କହିଲେ, "ଆଚ୍ଛା, ମୁଁ ଆଉ ଜଣେ ବଳୁଆ ଲୋକକୁ ଡକାଉଛି । ସେ ତମ ସଙ୍ଗେ ଲଢିବ । ଯଦି ତମେ ତାକୁ ହରାଇ ଦେବ, ତା'ହେଲେ ମୁଁ ବର୍ତ୍ତମାନ ଯାହା ଦେଲି ତା' ଅପେକ୍ଷା ଆହୁରି ପ୍ରଚୁର ଟଙ୍କା ତୁମକୁ ପୁରସ୍କାର ଦେବି ।"

ରାଜାଙ୍କର ଆଦେଶରେ ଆଉ ଜଣେ ବଳୁଆ ଲୋକ ଆସିଲା । ଏଇ ଦୁଇଜଣଯାକ ବଳୁଆ ଲୋକ ଗୋଟିଏ ଘରେ ରହିଲେ । ଲଢ଼େଇ ହେବାର ପୂର୍ବଦିନ ରାତିରେ ଦୁହେଁଯାକ ଏକାଠି ଶୋଇଥାନ୍ତି । ହାତୀକୁ ମାରିଥିବା ଲୋକଟି ପ୍ରକୃତ ବଳୁଆ ଲୋକକୁ କହିଲା, "ଭାଇ, ମୁଁ ଏଇ ହାତରେ ଗୋଟିଏ ବାଧାରେ ବାଘ ଓ ହାତୀ ଭଳି ଦୁଇଟା ପ୍ରାଣୀଙ୍କୁ ମାରିଦେଲି । ତୁମେ କେମିତି ସେଇ ବାଧା ସହିପାରିବ ବୋଲି ଭାବୁଛ ? ସତରେ ତମ ଲାଗି ମୋର ଭାରି ଦୁଃଖ ହେଉଛି ?"

ପ୍ରକୃତ ବଳୁଆ ଲୋକଟି ଏ କଥା ଶୁଣି ଭୟ କଲା । ସେଇ ରାତିରେ ସେ ସେଠାରୁ ଲୁଚି କରି ପଳାଇଗଲା । ସକାଳ ହେଲା । ଲୋକେ ସେଇ ଅଦ୍ଭୁତ ଲଢ଼େଇ ଦେଖିବାକୁ ଚାରିଆଡୁ ଆସି ରୁଣ୍ଡ ହୋଇଥାନ୍ତି । ମାତ୍ର ସେତେ ଖୋଜିଲେ ବି ବଳୁଆ ଲୋକଟିକୁ ଆଉ ପାଇଲେ ନାହିଁ । ରାଜ୍ୟକୁ ହାତୀ ଓ

ବାଘ କବଳରୁ ମୁକ୍ତ କରିଥିବା ଲାଗି ରାଜା ଏଇ ଗରିବ, ବୁଦ୍ଧିମାନ ଓ ସାହସୀ ଲୋକଟିକୁ ପ୍ରଚୁର ଉପହାର ଦେଲେ । ରାଜ୍ୟ ନିରାପଦ ହେଲା ।

ପଣମ୍ବ ଗଛ ଫଳିଲା........

ମୁଁ ତା'ପରେ ଫେରି ଆଇଲି ।

( ଆସାମ )



# ପାତାଳ କନ୍ୟା ମଣିମାଳା

ରଜାପୁଅ ମନ୍ତ୍ରୀପୁଅ ଦୁଇ ସଙ୍ଗାତ । ସେମାନେ ଦୁଇଟି ଘୋଡ଼ାରେ ଚଢ଼ି ଦେଶବିଦେଶ ବୁଲିବାକୁ ବାହାରିଲେ । ଯାଉଁ ଯାଉଁ ଗୋଟିଏ ପାହାଡ଼ ପାଖେ ସନ୍ଧ୍ୟା ହୋଇଗଲା ।

ମନ୍ତ୍ରୀପୁଅ କହିଲା—"ସଙ୍ଗାତ, ବଣ ପାହାଡ଼ ମୂଳକରେ ଆଜ ଆଗକୁ ଯାଇ ହେବ ନାହିଁ । ଚାଲ ଏଇ ଗଛ ଉପରେ ରାତିଟା କୌଣସି ମତେ କଟାଇ ଦେବା ।"

ରଜାପୁଅ କହିଲା— 'ହଉ' ।

ଦୁହେଁ ଗୋଟିଏ ପୋଖରୀ କୂଳେ ଘୋଡ଼ାକୁ ବାନ୍ଧିଦେଲେ, ଗୋଟିଏ ବଡ଼ ଗଛ ଉପରକୁ ଚଢ଼ି ସେଇଠି ଶୋଇଲେ ।

ଅଧରାତ୍ର ବେଳକୁ କ'ଣ ଗୋଟାଏ ଭୟଙ୍କର ଶବ୍ଦରେ ମନ୍ତ୍ରୀପୁଅର ନିଦ ଭାଙ୍ଗିଗଲା । ଉଠି ଦେଖିଲା, ଜଙ୍ଗଲଟାସାକ ଆଲୁଅ ହୋଇଯାଇଛି । ରଜାପୁଅର ନିଦ ଭାଙ୍ଗିଗଲା । ଦୁହେଁ ଯାହା ଦେଖିଲେ, ସେଥିରେ ଦୁହିଁଙ୍କ ଦେହ ଶୀତେଇ ଉଠିଲା । ଗୋଟାଏ ମସ୍ତବଡ଼ ଅଜଗର ସାପ ସେମାନଙ୍କ ଘୋଡ଼ା ଦୁଇଟାକୁ ଗିଳିଦେଉଛି ।

ଗୁହୁଁ ଗୁହୁଁ ସାପ ଘୋଡ଼ା ଦୁଇଟାକୁ ଗିଳିଦେଲା; ବଣସାରା ଯେଉଁ ପର୍ଯ୍ୟନ୍ତ ଆଲୁଅ ହୋଇଥାଏ ସେ ପର୍ଯ୍ୟନ୍ତ ଜୀବଜନ୍ତୁ ଖାଇବାକୁ ବୁଲିଲା ।

ରଜାପୁଅ ଏହା ଦେଖି ଥରୁଥାଏ । ମନ୍ତ୍ରୀପୁଅ ତାକୁ ଚୁପ୍‌କରି କହିଲା— ସଙ୍ଗାତ, ଡ଼ରୁଛ କାହିଁକି ? ସେଇ ଯେଉଁଠି ଆଲୁଅ ବାହାରୁଛି, ସେଇଟିକୁ ଆମେ ଆଣିବା ।"

ରାଜାପୁଅ କହିଲା— "ମହାବିପଦରେ କଥା । ସେଇଟିକୁ ଆମେ କିପରି ଆଣିବା ?"

"ତମେ ଭୟ କରନା । ହେଇ ଦେଖ, ମୁଁ ମଣି ଆଣିବି ।" ଏହା କହି ମନ୍ତ୍ରୀପୁଅ ଗଛରୁ ଆସ୍ତେ ଆସ୍ତେ ଓହ୍ଲାଇ ମେଞ୍ଚାଏ କାଦୁଅ ଆଣି ମଣି ଉପରେ ପକାଇ ଦେଲା । କାଦୁଅ ଉପରେ ଖଣ୍ଡାଟିକୁ ଓଲଟେଇ ରଖିଦେଇ ଚଟ୍‌କିନା ଗଛ ଉପରକୁ ଉଠିଗଲା । ସଙ୍ଗେ ସଙ୍ଗେ ଘୁଟ୍‌ଘୁଟ୍ ଅନ୍ଧାର । ଅଜଗର ସାପର ମଣିର ଆଲୁଅ ଲିଭିଗଲା । ଦୁହେଁ ଚୁପ୍‌ଚାପ୍ ବସିଥା'ନ୍ତି । ସାପଟା ଗର୍ଜନ କରି ଧାଇଁଆସିଲା । ଯେଉଁଠି ମଣିଥିଲା ସେଇଠି ଖଣ୍ଡା ଉପରେ ଫଁ, ଫଁ କରି ଦଂଶିବାକୁ ଲାଗିଲା । ମଣିଟା କାଦୁଅ ତଳେ; ଖଣ୍ଡାରେ ଚୋଟ ମାରି ମାରି ସାପ ମୁଣ୍ଡରୁ ଧାର ଧାର ରକ୍ତ ବହିଲା— ଆଖିରୁ ତା'ର ନିଆଁ ବାହାରୁଥାଏ, ମୁହଁରୁ ବିଷ ବୋହି ପଡୁଥାଏ ଅଜଗର ପାଗଳ ଭଳି ବଣ ସାରା ଗଛ ବୃକ୍ଷ ଭାଙ୍ଗିଲା, ଲାଙ୍ଗୁଡ଼ ବାଡ଼େଇ ପୋଖରୀ ପାଣିକୁ ଗୋଳିଆ କରିଦେଲା । ଶେଷକୁ ରାଗରେ ଆପଣା ଦେହକୁ ପୁଳାପୁଳା କାମୁଡ଼ି ଖଣ୍ଡାରେ ମୁଣ୍ଡ କୋଡ଼ିହୋଇ ମରିଗଲା ।

ରାତି ପାହି ସକାଳ ହେଲା । ଦୁଇ ସଙ୍ଗାତ ନର୍ଭୟରେ ଗଛରୁ ଓହ୍ଲାଇ ଦେଖିଲେ ସାପଟା ପ୍ରକୃତରେ ମରିଯାଇଛି । କାଦୁଅବୋଳା ମଣିକୁ ଉଠାଇ ପୋଖରୀ କୂଳକୁ ଆସିଲେ । ମଣିରୁ କାଦୁଅ ଛଡ଼ାଇବା ପାଇଁ ପାଣିରେ ସଫା କଲାବେଳେ ପୋଖରୀର ପାଣି ଦୁ'ଭାଗ ହୋଇଗଲା ।

ପାଣିକୁ ଓହ୍ଲାଇ ଦୁଇ ସଙ୍ଗାତ ଯେତିକି ଆଗେଇଲେ ପାଣି ଦୁଇ ଭାଗ ହୋଇ ଶୁଖି ଯାଉଥାଏ । ଶେଷକୁ ମଣି ଆଲୁଅରେ ଦେଖିଲେ, ପାତାଳପୁର ପର୍ଯ୍ୟନ୍ତ ଗୋଟାଏ ବାଟ ପଡ଼ିଛି । ଦୁହେଁ ସାକ ସେଇଆଡ଼େ ଗଲେ ।

କେତେଦୂର ଗଲା ପରେ ଦେଖିଲେ ଏକ ଅତି ଚମତ୍କାର କୋଠାଘର, ତା' ଚାରିପଟେ ଫୁଲବଗିଚା—ଫୁଲରେ ଫାଟି ପଡୁଥାଏ । ଦୁଇ ସଙ୍ଗାତ ସେଇ କୋଠାଘର ଭିତରକୁ ଗଲେ । ଘର ଭିତରେ ଫଁ ଫଁ ସୁ ସୁ ଗର୍ଜନ । ରଜା ପୁଅର ଛାତି ଭୟରେ ଧଡ଼ପଡ଼ କରୁଥାଏ । ମନ୍ତ୍ରୀ ପୁଅ କହିଲା-- "ସଙ୍ଗାତ, ଆମ ପାଖେ ମଣି ଥାଉ ଥାଉ ତମେ ଡରୁଛ କାହିଁକି ?"

କେତେ ରଙ୍ଗର ଅସଂଖ୍ୟ ସାପଙ୍କୁ ଡେଇଁ, ସେମାନଙ୍କ ଉପରେ ପାଦ ଦେଇ ଯାଇ ସେମାନେ ଗୋଟିଏ କୋଠରୀରେ ପହଞ୍ଚିଲେ । ସେଇ ଘର କାନ୍ଥ ସାପର, ଯାତର କଡ଼ି ବରଗା, କାନ୍ଥରେ ସାପର ମଣି ସବୁ ଖଞ୍ଜା ହୋଇଥାଏ । ସେଇ ବଡ଼ିଆ ଘର ମଝିରେ ଲକ୍ଷେ ସାପର ଶେଯ ଉପରେ ରାଜକୁମାରୀ ମଣିମାଳା ନିଶ୍ଚିନ୍ତରେ ଶୋଇଥାନ୍ତି ।

ରଜାପୁଅ ପଚାରିଲା— 'ସଙ୍ଗାତ, ଏ କିଏ ସେ ?'

ମନ୍ତ୍ରୀପୁଅ କହିଲା— "ସଙ୍ଗାତ, ଇଏ ପାତାଳପୁରର ରାଜକୁମାରୀ ।" ରଜାପୁଅ ଆଶ୍ଚର୍ଯ୍ୟ ହୋଇ ଦେଖୁଥାଏ । ମନ୍ତ୍ରୀପୁଅ ଯାଇ ମଣିମାଳା କପାଳରେ ଯେମିତି ମଣିଟିକୁ ଛୁଆଁଇ ଦେଇଛି ସଙ୍ଗେ ସଙ୍ଗେ ମଣିମାଳା ନିଦରୁ ଉଠିଲା । ରଜାପୁଅ ଓ ମନ୍ତ୍ରୀପୁଅକୁ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲା— "ତମେ ସବୁ କିଏ ? ଏଇଟା ସର୍ପରାଜ ଅନନ୍ତଙ୍କ ଆବାସ— ଏଠିକି ତମେ କିପରି ଆସିଲ ?"

ମନ୍ତ୍ରୀପୁଅ କହିଲା—"ରାଜକନ୍ୟା, ସର୍ପରାଜ ଅଜଗରକୁ ଆମେ ମାରି ଦେଇଛୁ । ଏହି ରାଜପୁତ୍ରଙ୍କୁ ତୁମେ ବର ଭାବେ ଗ୍ରହଣ କର ।"

ମଣିମାଳା କିଛି ଉତ୍ତର ନ ଦେଇ ମୁହଁକୁ ତଳକୁ ପୋତି ଠିଆହେଲା । ମନ୍ତ୍ରୀପୁଅ କଥାରେ ରାଜାପୁଅ ମଣିମାଳା ବେକରେ ଓ ମଣିମାଳା ରାଜାପୁଅ ବେକରେ ବରଣମାଳା ପକାଇଦେଲେ ।

( ୨ )

ଦୁଇସାଙ୍ଗାତ ପାତାଳପୁରରେ ଆନନ୍ଦରେ ଥାଆନ୍ତି । କେତେ ଦିନପରେ ମନ୍ତ୍ରୀପୁଅ କହିଲା— ସାଙ୍ଗାତ, ଆମେ ତ ଏଠି ଖୁସିରେ ରହିଲେ, ଦେଶର ହାଲଚାଲ ତ କିଛି ଜାଣିଲେ ନାହିଁ । ମୁଁ ଦେଶକୁ ଯାଉଛି— ବାଜାବଜନ୍ତ୍ରୀ, ଲୋକବାକ, ଘୁଳ-ବାଣ, ସଲଟଣ ନେଇ ଏଠାକୁ ଆସିବି । ତୁମକୁ ବରଣ କରି ଦେଶକୁ ନେଇଯିବି ।

ରାଜାପୁଅ କହିଲା—'ଆଚ୍ଛା, ହେଉ ।' ମଣି ସାହାଯ୍ୟରେ ସେ ସାଙ୍ଗାତକୁ ନେଇ ପୋଖରୀ କୂଳରେ ବିଦାକରି ମଣିମାଳା ପାଖକୁ ଫେରି ଆସିଲା । ଦୁହେଁଯାକ ସେହି ମହଲରେ ରହିଲେ । ରଜାପୁଅ ମଣିମାଳାକୁ ପୃଥିବୀର ଅନେକ ବିଷୟ କହେ, ମଣିମାଳା ପାତାଳପୁରର ଅନେକ ବିଷୟ ରଜାପୁଅକୁ ଶୁଣାଏ । ମଣିମାଳା ଦିନେ ରଜାପୁଅକୁ କହିଲା— "ତୁମ ମର୍ତ୍ତ୍ୟଭୁବନ କେମିତି କହୁଛ ଦେଖିବ, ତା' ଦେଖିବାକୁ ମୋର ବହୁତ ଇଚ୍ଛା ।"

ରଜାପୁଅ କିଛି ଉତ୍ତର ଦେଲା ନାହିଁ ।

ଦୁଇପ୍ରହର ବେଳକୁ ରଜାପୁଅ ଶୋଇଥାଏ । ମଣିମାଳା ମଣିଟିକୁ ଧରି ପୋଖରୀ ବାଟେ ପୃଥିବୀ ଉପରକୁ ଆସିଲା । ପୃଥିବୀକୁ ଦେଖି ଆଶ୍ଚର୍ଯ୍ୟ ହୋଇ-ଗଲା । ପୃଥିବୀଟା ସତେ କେଡ଼େ ସୁନ୍ଦର ! ପୋଖରୀର ଗୋଟିଏ ପାହାଚ ଉପରେ ମଣିଟିକୁ ଥୋଇଦେଇ ସେ ଗାଧୋଇଲା ।

ସେ ଦେଶର ରଜାପୁଅ ପାରଧି କରିବାକୁ ସେ ପୋଖରୀ କୂଳକୁ ଆସି-ଥାଏ । ରଜା ଝିଅକୁ ଦେଖି ସେ ଭୋଳ ହୋଇଗଲା । ରଜାଝିଅ ବି ଦେଖିଲା

ଆର କୂଳରେ ଗୋଟିଏ ମଣିଷ । ସଙ୍ଗେ ସଙ୍ଗେ ସେ ମଣିକୁ ଧରି ପାଣି ଭିତରକୁ ବୁଡ଼ିଗଲା । ମୁହୂର୍ତ୍ତକ ମଧ୍ୟରେ ଅପସରା ଭଳି ଝିଅଟି କୁଆଡେ ଉଭେଇଗଲା । ରଜାପୁଅ ହାପୁହାପୁ କରି ଫେରିଗଲେ । ପଥର ଗୋଠାଇବାକୁ ଯାଇ ପଞ୍ଚୁଆର ବୁଢ଼ୀମାଆ ଏସବୁ ଦେଖୁଥାଏ ।

( ୩ )

ସାରଧିରୁ ଫେରି ରଜାପୁଅ ସେଇ ଝିଅକୁ ଝୁରି ଝୁରି ପାଗଳ ହୋଇଗଲା । ରାଜା, ରାଣୀ କେତେ ଚିକିତ୍ସା କଲେ, କାହିଁରେ କିଛି ହେଲାନି । ରାଜା ସହରକୁ ଢେଙ୍ଗୁରା ଦିଆଇଲେ— "ଯିଏ ମୋ ପୁଅକୁ ଭଲ କରିଦେବ; ସେ ରାଜ୍ୟରୁ ଅଧେ ପାଇବ । ମୋ ଝିଅକୁ ମୁଁ ତାକୁ ବାହାଦେବି ।"

ପଞ୍ଚୁଆ ମାଆ ରାଜାଙ୍କ ପାଖକୁ ଯାଇ କହିଲା— "ତୁମ ପୁଅକୁ ଭଲ କରିଦେବାର ଔଷଧ ମୋତେ ଜଣା । ମୋ ପୁଅ ପଞ୍ଚୁ ସଙ୍ଗେ ତୁମ ଝିଅକୁ ବିବାହ କରେଇଲେ ମୁଁ ଔଷଧ ଦେବି ।" ରାଜା ଏଥିରେ ରାଜି ହେବାରୁ ପଞ୍ଚୁଆ ମା ତା' ଉପାୟ ଖଞ୍ଜିଲା । କିଛି ତୁଳା ଓ ଚରଖା ନେଇ ଗୋଟିଏ ମନ ପବନ ଡଙ୍ଗା ତିଆରି କଲା । ସେଇ ଡଙ୍ଗାରେ ବସି ବୁଢ଼ୀ କହିଲା—

"ଘର୍ ଘର୍ ଚରଖା ଘର୍ ଘର୍
ରଜାର ପୁଅ ପାଗଳ
ପବନ ନାଆ ଚଳ ଚଳ
ମଣିମାଳା ଦେଶକୁ ଯାଅ ତର୍ ତର୍ ।"

ମନପବନ ଡଙ୍ଗା ଯାଇ ମଣିମାଳା ଦେଶରେ ପହଞ୍ଚିଲା । ବୁଢ଼ୀ ସେଇ ପୋଖରୀ କୂଳରେ ବସି ଚରଖା ଘୂରେଇ ସୂତା କାଟିଲା । ତା' ପରଦିନ ଦ୍ୱିପ୍ରହର ବେଳ । ରାଜାପୁଅ ଶୋଇଥାଏ । ମଣିମାଳା ମଣି ନେଇ ଉପରକୁ ଉଠିଆସିଲା । ବୁଢ଼ୀକୁ ଦେଖି ପଚାରିଲା— "ଆଲୋ, ହେ ! ତୁ କେଉଁଠୁ ଆସିଲୁ ? ଏଠି କ'ଣ କରୁଛୁ ।"

ବୁଢ଼ୀ କହିଲା— "ମୁଁ ସୂତା କାଟୁଛି; ଶାଢ଼ୀ ବୁଣିବ ।"

ମଣିମାଳା କହିଲା— "ମୋ ପାଇଁ ଖଣ୍ଡେ ଶାଢ଼ୀ ବୁଣି ଦେ ।"

ବୁଢ଼ୀ ମଣିମାଳା ପାଇଁ ଖଣ୍ଡିଏ ଶାଢ଼ୀ ବୁଣିଦେଲା । ବୁଢ଼ୀ କହିଲା— ମୋତେ "ଶାଢ଼ୀର ଦାମ ଦିଅ ।"

ମଣିମାଳା କହିଲା— "ବୁଢ଼ୀମାଉସୀ ! ମୋ ପାଖେ ତ ପଇସା ପତ୍ର ନାହିଁ, ଖାଲି ଏଇ ମଣିଟି ଅଛି ।"

ବୁଢ଼ୀ କହିଲା— "ହଉ ସେଇଟି ଦିଅ ।" ମଣିମାଳା ମଣିଟି ଦେଖାଇ-ବାକୁ ଯାଉଛି, ଏତିକିବେଳେ ବୁଢ଼ୀ ଚଟ୍‌କିନି ମଣିମାଳାଠାରୁ ମଣିଟି ଛଡ଼େଇ ନେଇ ତାକୁ ନିଜ ଡଙ୍ଗାରେ ବସାଇ ଦେଇ କହିଲା—

"ଘୂରେ ଚରଖା ଘୂରର
ରଜା ପୁଅଟା ପାଗଳ
ପବନ ନାଆ ଚଳ ଚଳ
ମଣିମାଳା ଦେଶକୁ ଯାଆ ରେ ତର୍ ।"

ଘୁହୁଁ ଘୁହୁଁ ସେମାନେ ଆସି ରଜା ନଅରରେ ପହଞ୍ଚିଗଲେ । ବୁଢ଼ୀ ମଣିମାଳାକୁ ଉଆସକୁ ନେଇଗଲା ସେ ମଣିଟିକୁ ଲୁଚେଇ ନିଜ ଘରକୁ ଚାଲି ଆସିଲା ।

ମଣିମାଳାକୁ ଦେଖି ରଜାପୁଅ ଭଲ ହୋଇଗଲା । ଏ ମଧ୍ୟରେ ପଞ୍ଝୁଆ କୁଆଡ଼େ ଚାଲିଯାଇଛି । ବୁଢ଼ୀ ତାକୁ ଖୋଜିବାକୁ ଚାରିଆଡ଼କୁ ଲୋକ ପଠାଇଲା ।

ରଜାପୁଅ ସଙ୍ଗେ ମଣିମାଳାର ବାହାଘର ହେବ । ଏଥିପାଇଁ ଜୋର୍-ସୋର ଆୟୋଜନ ଚାଲିଲା; କିନ୍ତୁ ମଣିମାଳା କହିଲା— "ମୁଁ ବର୍ଷକ ପାଇଁ ବ୍ରତ କରିଛି, ବର୍ଷକ ପରେ ବାହାଘର ହେବ ।" ସମସ୍ତେ କହିଲେ— "ଆଚ୍ଛା ! ହଉ ।"

ଏଣେ ପାତାଳପୁରରେ ରଜା ପୁଅର ଅବସ୍ଥା କହିଲେ ନ ସରେ ।

ମଣିଗଣ, ମଣିମାଳା ଗଣ । ସାପମାନଙ୍କ ନିଃଶ୍ୱାସରେ ସେ ଦେହରେ ଅଚେତ ହୋଇ ପଡ଼ିଥାଏ ଗୁରୁପଟେ ସାପମାନେ ଫଣାଟେକି ଗର୍ଜନ କରୁଥାନ୍ତି । ଗୁଡ଼ାଏ ସାପ ତା ଦେହଯାକ ଗୁଡ଼େଇ ହୋଇ ଯାଇଥାନ୍ତି । ନାଗପାଶ ବନ୍ଧନରେ ପଡ଼ି ବିଷ ଜ୍ୱାଳାରେ ସେ ଛଟପଟ ହେଉଥାଏ ।

ବହୁ ଲୋକବାକ ବାଜାବଜନ୍ତ୍ରୀ, ସବାସ୍ଥ-ପାଲିଙ୍କି, ଛତ୍ର-ଚଉଁର ନେଇ ମନ୍ତ୍ରୀପୁଅ ପୋଖରୀ କୂଳକୁ ଆସି ଡ଼ାକିଲା— "ସଙ୍ଗାତ ! ସଙ୍ଗାତ ! ମୋତେ ବାଟ ଦେଖାଅ ।

ପାତାଳପୁରରୁ କୌଣସି ସୋର ଶବ୍ଦ ନାହିଁ । କେତେ ଦିନ ଧରି ମନ୍ତ୍ରୀପୁଅ ସେଇଠି ଅପେକ୍ଷା କରି ରହିଲା । ମନ୍ତ୍ରୀପୁଅ ଭାବନାରେ ପଡ଼ି ଲୋକ-ବାକଙ୍କୁ ପୋଖରୀ କୂଳରେ ରଖି ସେ ଉପାୟ ଖୋଜିବା ପାଇଁ ବାହାରିଲା ।

କେତେ ବାଟ ଗଲାପରେ ଲୋକେ ତାକୁ ପଚାରିଲେ— "କିଓ, ତମେ କେଉଁଠୁ ଆସିଲ ? ବାଟରେ ପଞ୍ଚୁଆକୁ ଦେଖିଛ ? ସେ ପରା ରଜାଙ୍କର ଜୁଆଁଇ ହେବ । ତା ମାଆ ତାକୁ ଚୁରିଆଡ଼େ ଖୋଜୁଛି ।"

ମନ୍ତ୍ରୀପୁଅ କହିଲା— ହଁ, ହଁ, ମୁଁ ତାକୁ ଦେଖିଛି । ତେବେ ରଜା ଝିଅକୁ କାହିଁକି ବାହାହେବ ?"

ଲୋକମାନେ ତାକୁ ସବୁକଥା କହିଲେ ।

ମନ୍ତ୍ରୀପୁଅ ପଚାରିଲା— କହିଲ ଦେଖି, ପଞ୍ଚୁଆ ଦେଖିବାକୁ କିପରି ? ସେ କ'ଣ ପିନ୍ଧିଥାଏ ? ଲୋକେ ପଞ୍ଚୁଆର ରୂପ ଓ ବେଶଭୂଷା ବିଷୟ ତାକୁ କହିଲେ । ମନ୍ତ୍ରୀପୁଅ ସବୁ ଶୁଣି ପଞ୍ଚୁଆ ଭଳି ପୋଷାକ ପିନ୍ଧିଲା, ମୁହଁରେ କଳା ବୋଳି, ହୋଇ ତା ବୁଢ଼ୀ ମାଆ ପାଖେ ପହଞ୍ଚିଗଲା । ଖିଲ୍ ଖିଲ୍ ହସୁଥାଏ, ଦୁଇ ହାତରେ ଦୁଇଟା ଗଛର ଡ଼ାଳ ଧରି ନାଚ ନାଚ ବୁଢ଼ୀ ଘରକୁ କମ୍ପାଇ ଦେଲା ।

ବୁଢ଼ୀ ଦଉଡ଼ି ଆସିଲା— "ଆରେ ମୋ ପୁଅ ଆସିଛୁରେ—ଆ···ଲୋ

ମୋ ଅନ୍ଧର ଲଉଡ଼ି, ଦୁଃଖୀ-ସଙ୍କାଳୀ । ଆ, ଆ, ତୋ'ର ପାଇଁ ତ କେତେ ଜିନିଷ ଯୋଗାଡ଼ କରିଛିରେ— ଏହା କହି ବୁଢ଼ୀ ମଣିଟି ବାହାରି କରି ପୁଅ ହାତରେ ଲୁଚେଇ କରି ଦେଲା ।

ମଣିଟି ପାଇ ମନ୍ତ୍ରୀପୁଅ ଏକା ଡ଼ିଆଁରେ ବାହାରି । ମା'ଆଙ୍କୁ କହିଲା— "ମା'ଆଲେ, ମୋ ଦେହ ଭଲ ହୋଇପାଇଛି । ଦେଖିଲୁ ମୋ ରୂପ କେମିତି ହୋଇଛି ।"

ବୁଢ଼ୀ କହିଲା— "ଆହା ମୋ ଗଣ୍ଠିରତନ, ଗଳାର ମାଳ । ଆଜଯାଏ ତୁ କେଉଁଠି ଥିଲୁରେ । ରଜାଝିଅ ପରା ତୋ ଲାଗି କାନ୍ଦୁଛି !"

ତା'ପରଦିନ ସକାଳେ ବୁଢ଼ୀ ପୁଅକୁ ନେଇ ରଜାଙ୍କ ପାଖେ ପହଞ୍ଚିଲା । କହିଲା— "ମଣିମା, ମଣିମା, ହେଇ ମୋ ପଞ୍ଝୁ ଫେରି ଆସିଛି । ଦେଖ ସେ କେଡ଼େ ସୁନ୍ଦର । ଝିଅକୁ ଆଣି ମୋତେ ଦିଅ ।"

ରଜା ବାଧହୋଇ ପଞ୍ଝୁଆ ସଙ୍ଗେ ଝିଅକୁ ବାହା ଦେଲେ ।

ମନ୍ତ୍ରୀପୁଅ ପଞ୍ଝୁଆ ରଜା ଝିଅକୁ ରାତିରେ ସବୁକଥା କହିଲା । ରଜାଝିଅ ଆଶ୍ଚର୍ଯ୍ୟ ହୋଇ କହିଲା— ତା'ହେଲେ ତୁମ ସଙ୍ଗାତଙ୍କ ସ୍ତ୍ରୀ ମଣିମାଳାକୁ ଆଣି ମୋ ଭାଇ ଅଟକେଇ ରଖିଛନ୍ତି ?"

ମନ୍ତ୍ରୀପୁଅ କହିଲା — ହଁ; ଏବେ ମୁଁ ଯାହା କହୁଛି ସେମିତି କଲେ ମୋ ସଙ୍ଗାତ ଉଦ୍ଧାର ପାଇବ । ମୁଁ ଯେଉଁ ଜିନିଷଟି ଦେଉଛି ଏହାକୁ ନେଇ ମଣି-ମାଳାକୁ ଦିଅ ।" ଏହା କହି ସେ ରଜା ଝିଅକୁ ସାପ ମଣିଟିକୁ ଦେଲା ।

ରଜାଝିଅ କେହି ନ ଦେଖିଲାବେଳେ ମଣିମାଳା ପାଖକୁ ଯାଇ ତାକୁ ମଣିଟିକୁ ଦେଲା । ଦିନେ, ଦୁଇଦିନ, ତିନିଦିନ ଗଲା । ଚତୁର୍ଥୀ ଦିନ ରାତି ପାହି ସକାଳ ହେଲା । ମଣିମାଳା ସେ ଦେଶ ରଜାପୁଅକୁ କହିଲା— "ଏଥର ମୋ ବ୍ରତ ଶେଷ ହୋଇଛି । ମୁଁ କନ୍ୟା ବେଶ ହୋଇ ନଈକୁ ଗାଧୋଇଯିବି । ମୋ ସଙ୍ଗେ ଛତି-ଚଉର, ବାଜା-ବଜନ୍ତ୍ରୀ କେହି ଯିବେ ନାହିଁ । କେବଳ ପଞ୍ଝୁ ଓ ରାଜକନ୍ୟା ଯିବେ ।"

ଏଥର ରଜାପୁଅ ଗଜ ହେଲ । ନଈନାଟପାଏ ହେବାକୁ ପଡ଼ିଲ । ମଣିମାଳା ଜନାଆ ବେଶ ହୋଇ ପଞ୍ଝୁଆ ଓ ରାଜକନ୍ୟାକୁ ନେଇ ଗାଧୋଇବାକୁ ବାହାରିଲ ।

ଗାଧୋଇବା ମିଛ । ପାଣିରେ ପଶି ମଣିମାଳା କହିଲ— "ହଇରେ ମଣି ମୋତେ ଭୂଲି କେଉଁଠୁ ଥିଲୁ ?"

"ବୁଢ଼ୀ ଅଳୀରେ"

"କେମିତି ଆସି ପାଇଲୁ ମୋତେ ?"

"ପଞ୍ଝୁ ବୁଦ୍ଧିରେ ।"

ମଣିମାଳା କହିଲ— "ଆଜି ତେବେ ଗୁଲ୍ ମଣି ଅଥଳ ପାଣିରେ···।"

ଦୃହୁଁ ଦୃହୁଁ ନଈପାଣି ଦୁଇଭାଗ ହୋଇଗଲ । ମଣିମାଳା ପଞ୍ଝୁଆ ଓ ରାଜାଝିଅକୁ ନେଇ ତା' ଭିତରେ ଅଦୃଶ୍ୟ ହୋଇଗଲ ।

ଏଣେ ରାଜାଝିଅ ଆଉ ନ ଫେରିବାରୁ ରଜାପୁଅ ହାୟ ହାୟ କରିବାକୁ ଲଗିଲ । ରାଜା, ରାଣୀ କାନ୍ଦିଲେ । ପଞ୍ଝୁଆ ଭଲ ପୁଅକୁ ହରେଇ ବୁଢ଼ୀ ମୁଣ୍ଡ-ପିଟି ମଲ । ରାଜ୍ୟ ଲୋକେ ମନଦୁଃଖ କଲେ ।

ରାଜକୁମାରୀ ମଣିମାଳା ମଣି ନେଇ ପାତାଳପୁରକୁ ଫେରିଆସିବାରୁ ସାପମାନେ ରାଜପୁଅଠାରୁ ଦୂରେଇ ଗଲେ । ମଣି ଆଲୁଅରେ କଟି କଟି ଅନ୍ଧାର କଟିଗଲ । ରଜାପୁଅ ଆଖିମେଲି ଉଠିବସିଲ । ରଜାପୁଅ, ମନ୍ତ୍ରୀପୁଅ ମଣିମାଳା ଓ ରଜାଝିଅକୁ ନେଇ ଆପଣା ଦେଶକୁ ଫେରିଲ ।

ପାତାଳପୁରୀରେ ସାପ ରାଇଜର ସାପ ପବନ ହୋଇ ଉଡ଼ିଗଲେ ।

( ବଙ୍ଗଳା )



# ଦୁଇ ଲଢ଼ାକୀ

ତା'ଭଳି ବଳୁଆ ସେ ରାଜ୍ୟରେ ନ ଥିଲେ । ମାଲକୁସ୍ତିରେ କିଏ ବା ତା' ସଙ୍ଗେ ପାରିବ ? ବାଇଶ ଜଣ ଲୋକଙ୍କ ବଳ ଯେତିକି, ଏକା ତା' ବଳ ସେତିକି । ଜଗତରେ ତା'ଠାରୁ ବଳୁଆ କେହି ନାହିଁ—ଏଇଆ ଭାବି ନିର୍ଭୟରେ ସେ ବୁଲୁଥାଏ । ଥରେ ସେ ଶୁଣିଲା, ଆଉ ଗୋଟିଏ ରାଜ୍ୟରେ ଜଣେ ଲଢ଼ାକୀ ଅଛି, ତା'ର ବଳ ତେଇଶ ଜଣଙ୍କ ବଳ ସଙ୍ଗେ ସମାନ । ଏହାଶୁଣି ବାଇଶ-ବଳୁଆର ମନଟା ବିଗିଡ଼ିଗଲା । ତାକୁ ନ ହରାଇଲେ ନ ଚଳେ । ଜଗତରେ ତାକୁ ଆଉ କିଏ ବା ମାନିବ ? ଦିନେ ସେ ତେଇଶବଳୁଆକୁ ହରେଇବା ଲାଗି ତା ରାଜ୍ୟକୁ ବାହାରିପଡ଼ିଲା ।

ଏତେ ତରବରରେ ବାହାରିପଡ଼ିଲା ଯେ ଘରୁ ଗଣ୍ଡାଏ ଖାଇକରି ନିବାକୁ ମଧ୍ୟ ଭୁଲିଗଲା । କାନ୍ଧରେ କେବଳ ଥଳିଟିଏ ପକେଇ ସେ ଆଗେଇ ଚାଲିଲା । ଯାଉ ଯାଉ ଦେଖିଲା, ତା ଥଳିରେ ମୋଟେ ଚବିଶ ମହଣର ଅଟା ରହିଛି । ଭାବିଲା, ସେତକ ଚକଟି ଜଳଖିଆ ଭାବେ ଖାଇ ଏ ବେଳଟା ଚଳେଇ ନେବ; ମାଛ ଖାଇବ କେଉଁଠିରେ ! କଂସା ବା ଥାଳି କାହିଁ ? କିଛି ବାଟ ଗଲାପରେ ଗୋଟିଏ ପୋଖରୀ ପଡ଼ିଲା । ସେଇ ପୋଖରୀରେ ତା' ପାଖେ ଥିବା ସବୁତକ ଅଟା ଢାଳିଦେଲା । ପାଣିରେ ପଡ଼ିବାରୁ ଅଟାତକ ଗୋଳି ହୋଇଗଲା । ଏଥର ସେ ପୋଖରୀ କୂଳରେ ବସି ସବୁତକ ପାଣି ଶୋଷିଦେଲା । ଅଳ୍ପ ହେଉ ପଛକେ ପେଟରେ କେତେକ ପଡ଼ିଥିବାରୁ କିଛି ସମୟ ପାଇଁ ତା'ର ଭୋକ ଟିକିଏ କମିଗଲା । ସେତେବେଳକୁ ଦ୍ୱିପ୍ରହର । ବାଇଶବଳୁଆ ଭାବିଲା, ଖାଇ-ସାରି ପୋଖରୀ କୂଳରେ ଟିକିଏ ବିଶ୍ରାମ ନେବା ଦରକାର । ଏଇଆ ଭାବି ସେ ପୋଖରୀ କୂଳରେ ଥିବା ଗୋଟିଏ ଗଛମୂଳେ ଗୋଡ଼ହାତ ଲମ୍ବାଇ ଶୋଇ-ପଡ଼ିଲା । ତାକୁ ଟିକିଏ ନିଦ ଲାଗି ଆସିଥାଏ । ଏତିକିବେଳେ ଗୋଟିଏ ବଣୁଆ ହାତୀ ସେଇ ପୋଖରୀକୁ ପାଣି ପିଇବାକୁ ଆସିଲା । ହାତୀ ଦେଖିଲା ପୋଖରୀଟା ଶୁଖିଲା ପଡ଼ିଛି । କୂଳରେ ଶୋଇଥିବା ଲୋକଟା ସବୁତକ ପାଣି ପିଇଦେଇଛି

ଠଉଠେଇ, ସେ ବାଇଶବଳୁଆକୁ ଗୋଡ଼ରେ ଦଳଦେବାକୁ ବସିଲା । ତା' ଉପରେ ଗୋଡ଼ ଥୋଇବା ମାତ୍ରେ ବାଇଶବଳୁଆର ନିଦ ବାଉଳାରେ ମନେ-ହେଲା, ତାକୁ ବୋଧହୁଏ ଗୋଟାଏ ମଶା କାମୁଡ଼ୁଛି । ଏହା ଭାବି ସେ ହାତକୁ ଗୁପୁଡ଼ାଏ ମାରି କରି ଲେଉଟାଇ ଶୋଇଲା । ସେତିକରେ ହାତଟା ମରି ଶୋଇଲା ।

ଅଳ୍ପ ସମୟ ପରେ ବାଇଶବଳୁଆ ନିଦରୁ ଉଠିଲା ଓ ତେଇଶବଳୁଆର ଘର ଆଡ଼କୁ ଚାଲିଲା । ସନ୍ଧ୍ୟାବେଳକୁ ସେ ତା' ଘର ପାଖେ ପହଞ୍ଚି ଫାଟକ ପାଖରେ ଡ଼ାକିଲା; ମାତ୍ର ତା'ର ପାଟି ଶୁଣି କେହି ଜବାବ ଦେଲେ ନାହିଁ । ବାଇଶବଳୁଆ ରାଗିଯାଇ ମାଟି ଉପରେ ଖୁବ୍ ଜୋରରେ ପାଦ କଚାଡ଼ିବାକୁ ଲାଗିଲା । ଏହା ଫଳରେ ପ୍ରଚଣ୍ଡ ଶବ୍ଦରେ ଚାରିଆଡ଼ କମ୍ପି ଉଠିଲା । ସେଇ ଶବ୍ଦରେ ତେଇଶବଳୁଆ ଘରୁ ନଅ ବର୍ଷର ଝିଅଟିଏ ବାହାରି ଆସି ପିଲାଳିଆ କଣ୍ଠରେ କହିଲା—"ଓଃ ତମେ ଏଠି ଡ଼ାକୁଛ ? ମୁଁ ଭାବିଲି, ସବୁଦିନ ଭଳି ଯେଉଁ ବଳେଇଟା ଆସି ମାଟି ଆମ୍ପୁଡ଼ୁଛି ।"

ଝିଅଟିର ଏପରି କଥାରେ ବାଇଶବଳୁଆ ନିଜକୁ ଭାରି ଛୋଟ ମନେ-କଲା । ଥକ୍କା ମାରିବା ଲାଗି ଗୋଟିଏ ବଡ଼ ତାଳ ଗଛକୁ ଆଉଜି ସେ ଝିଅକୁ ପଚାରିଲା—"ଆଲୋ ମା ! ତେଇଶବଳୁଆ କ'ଣ ତୋ' ବାପା ? ସେ କାହାନ୍ତି ?"

ଝିଅଟି କହିଲା—"ହଁ, ସେ ମୋ ବାପା । ଏବେ ନଈକୂଳକୁ ଯାଇ-ଛନ୍ତି । ଟିକିଏ ଅପେକ୍ଷା କର । ସେ ସଙ୍ଗେ ସଙ୍ଗେ ଫେରିଆସିବେ ।" ବାଇଶବଳୁଆକୁ ତାଳଗଛରେ ଆଉଜିଥିବାର ଦେଖି, ଝିଅଟି କହିଲା—"ସେ ଗଛ ଉପରେ ନିର୍ଭର ହୁଅନାହିଁ । ଗଛଟା ନଇଁଯିବ । ଆଉ ଟିକିଏ ବଡ଼ ହୋଇଗଲେ ଦାନ୍ତକାଠି କରିବେ ବୋଲି ବାପା ସେଇଟିକୁ ଲଗାଇଛନ୍ତି ।"

ବାଇଶବଳୁଆ ଝିଅର କଥାକୁ ବିଶ୍ୱାସ କରିପାରିଲାନାହିଁ । ସେ ମନେ ମନେ ଭାବିଲା, ଯେଉଁ ଲୋକ ଏତେ ବଡ଼ ଗଛକୁ ଦାନ୍ତକାଠି କରୁଛି, ସେ କେତେ ବଳୁଆ ହୋଇ ନଥିବ ? ତା'ପରେ ସେ ତେଇଶବଳୁଆର ଆସିବାକୁ

ଅପେକ୍ଷା ନ କରି ନଈକୂଳକୁ ଚାଲିଲା । ସେଠାରେ ତେଲଇଣାବନ୍ଧୁଆ ସଙ୍ଗେ ଭେଟ ହେବାମାତ୍ରେ ଦୁହିଁଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଲାଗିଗଲା ।

ଏତିକିବେଳେ ବୁଢ଼ୀଟିଏ ତା'ର ଛେଳି ଗୋଠଧରି ଘରକୁ ଫେରୁଥିଲା । ବାଟରେ ଏହି ଦୁଇଜଣଙ୍କୁ ଦେଖି କହିଲା — "ପିଲାଏ, ଏଠି ବାଟରେ କାହିଁକି ଖେଳୁଛ ? ଖେଳ ବନ୍ଦକର, ମୁଁ ମୋ ଛେଳିଙ୍କୁ ନେଇ ଚାଲିଗଲାପରେ ଖେଳିବ ।"

ଏକଥା ଶୁଣି ଦୁଇ ଲଢ଼ାଳି ଆଉ ଲଢ଼ିବେ କ'ଣ ଥକ୍କା ହୋଇ ରାସ୍ତା ଉପରେ ବସିଗଲେ । ତାଙ୍କ ଭଳି ଦୁଇଜଣ ବନ୍ଧୁଆଙ୍କୁ ବୁଢ଼ୀ ପୁଣି ପିଲା ବୋଲି କହୁଛି ? ତା' ହେଲେ ସେ ବୁଢ଼ୀ କେଡ଼େ ବନ୍ଧୁଆ ହୋଇ ନଥିବ ? ସେମାନେ ଏଇଆ ଭାବୁଥିବାବେଳେ ବୁଢ଼ୀଟି ଦୁଇ ମାଲଙ୍କୁ ତା' କାନ୍ଧରେ ବସାଇ ଛେଳି ଗୋଠକୁ ତା' ଲୁଗା କାନିରେ ବାନ୍ଧି ବାଟେ ବାଟେ ଚାଲିଲା । ଏତିକିବେଳେ ପକ୍ଷିରାଜ ଗରୁଡ଼ ସେହିବାଟେ ଆକାଶରେ ଉଡ଼ି ଯାଉଥିଲା । ବୁଢ଼ୀକୁ ଦେଖି ଖାଇବାକୁ ଭଲ ଶିକାରଟାଏ ମିଳିଗଲା ଭାବି ସେହି ବୁଢ଼ୀକୁ ଥଣ୍ଟରେ ଧରି ଉଡ଼ିଗଲା ।

ଗରୁଡ଼ ଉଡ଼ି ଯାଉଯାଉ ଗୋଟିଏ ଦେଶରେ ପହଞ୍ଚିଲା । ସେଇ ରାଇଜର ରଜାଙ୍କ ଝିଅ ସେତିକିବେଳେ ନଅର ଛାତ ଉପରେ ବସି ସଖୀମାନଙ୍କଠାରୁ କାହାଣୀ ଶୁଣୁଥାଏ । ଏଇ ସମୟରେ ଖୁବ୍ ଦମକାଏ ପବନ ବହି ଆସିଲା । ରାଜକୁମାରୀ ଆଖିରେ କ'ଣ ଟିକିଏ ମଇଳା ପଡ଼ିଗଲା । ରାଜକୁମାରୀ ତା'ର ଜଣେ ସଖୀକୁ ଡାକି କହିଲା — "ଦେଖିଲୁ, ଦେଖିଲୁ, ପବନରେ କ'ଣ ଗୋଟିଏ ଉଡ଼ିଆସି ମୋ ଆଖିରେ ପଡ଼ିଯାଇଛି ।" ସଖୀଟି ରଜାଝିଅ ଆଖିରୁ ସେଇ ଗୁଣ୍ଡିଟି କାଢ଼ିଦେଲା । ରାଜକୁମାରୀର ଆଖିକୁ ଟିକିଏ କଷ୍ଟହେଲା । ତା' ଆଖିରୁ ଟୋପାଏ ଲୁହ ବି ଝରିପଡ଼ିଲା । ତା'ପରେ ରାଜକୁମାରୀ ଦେଖିଲା, ତା' ଆଖିରେ ପଡ଼ିଥିବା ସେଇ ମଇଳାଟି ହେଉଛି ଗୋଟିଏ ବୁଢ଼ୀ, ତା' କାନ୍ଧରେ ଲଦୁଥିବା ଦୁଇଜଣ ମଣିଷ ଓ ତା' ଲୁଗାରେ ବନ୍ଧା ହୋଇଥିବା ଦଳେ ଛେଳି । ସେଉଁ ଦମକାଏ ପବନରେ ଗୁଣ୍ଡିଟିଏ ଆସି

ରଜାଙ୍କିଅ ଆଖିରେ ପଡ଼ିଥିଲା, ତାହା ଥିଲା ଗୋଟାଏ ପ୍ରବଳ ଝଡ଼ । ଏହା ଫଳରେ ଗରୁଡ଼ ସମ୍ଭାଳି ନପାରିବାରୁ ତା’ ଥଣ୍ଟରୁ ବୁର୍ଡ଼ାଟା ତଳକୁ ଖସି-ପଡ଼ିଥିଲା ।

( ବଙ୍ଗଳା )



# କୋକି ଓ କଇଁଛ

କୋକ ଥରେ ଗୃହଶାଳୀଟିଏ କରିଥାଏ । କଇଁଛର ସାତୋଟି ଛୁଆ । ସେମାନଙ୍କୁ ପାଠ ପଢାଇବାକୁ ତା’ର ଭାରି ଇଚ୍ଛା । ଦିନେ ସେ ତା’ର ପିଲା-ମାନଙ୍କୁ ନେଇ କୋକ ମାଷ୍ଟ୍ରଙ୍କ ଗୃହାଳୀକୁ ଗଲା । କହିଲା — “ତମ ଭଳି ମାଷ୍ଟ୍ରେ ଥାଉ ଥାଉ ମୋ ପିଲା କ’ଣ ମୂର୍ଖ ହେବେ ! ତାଙ୍କୁ କଛୁ ପାଠଶାଠ ଶିଖାଇ ଦିଅ ।”

କଇଁଛର ସାନ ସାନ ପିଲାଙ୍କୁ ଦେଖି କୋକର ମନ ଭାରି ଖୁସି । ପାଟିରୁ ଲାଳ ବୋହିଲା । ସେ କହିଲା — “ହଉ, ତୁମେ ସେମାନଙ୍କୁ ଏଇଠି ଛାଡ଼ି ଦେଇଯାଅ । ଆଜିଠାରୁ ସେମାନଙ୍କର ଦାୟିତ୍ୱ ମୋ ଉପରେ ଲାଗିଲା ।

କଇଁଛ ଛୁଆମାନଙ୍କୁ କୋକ ପାଖେ ଛାଡ଼ିଦେଇ ଆନନ୍ଦରେ ଫେରିଗଲା । ଭାବିଲା, ଏଥର ମୋ ପିଲାଏ ଏଭଳି ଯୋଗ୍ୟ ଗୁରୁଙ୍କ ପାଖେ ପାଠପଢି ପାରିଲେ ବଡ଼ ହୋଇଯିବେ ।

ଦିନେ ଦୁଇଦିନ ଗଲା । ତୃତୀୟ ଦିନ କଇଁଛର ଇଚ୍ଛା ହେଲା, ଗୃହାଳୀକୁ ଯାଇ ପିଲାଙ୍କୁ ଟିକିଏ ଦେଖିଆସିବ । ଏହା ଭିତରେ ସାତୋଟି ଛୁଆ ଭିତରୁ ଗୋଟିଏ ମାଷ୍ଟ୍ରଙ୍କ ଜଳଖିଆରେ ଲାଗି ସାରିଥାଏ । କୋକ ମାଷ୍ଟ୍ରେ କିନ୍ତୁ ମହା ଚତୁର । ସେ ଗୋଟି ଗୋଟି କରି ଛଅଟି ଛୁଆଙ୍କୁ ଓ ଶେଷ ଛୁଆଟିକୁ ଦୁଇଥର

ଆଣି ଦେଖାଇଦେଲେ । ଏଣୁ କଇଁଛ ତା' ଛୁଆଙ୍କ ସଂଖ୍ୟା କମିବା ବିଷୟ ଜାଣିପାରିଲା ନାହିଁ । ଏମିତି ଶୋକ ମାଷ୍ଟ୍ରେ କଇଁଛର ଛଅଟି ଛୁଆଙ୍କୁ ଜଳଖିଆ କରିଦେଲେ । ଶେଷକୁ ଗୋଟିଏ ମାତ୍ର ଛୁଆଥାଏ । କଇଁଛ ତା' ଛୁଆକୁ ଦେଖିବା ଲାଗି ଆସିଥାଏ । ମାଷ୍ଟ୍ରେ ସେହି ଛୁଆଟିକୁ ଆଣି କଇଁଛକୁ ଦେଖାଇ ପୁଣି ପାଠଶାଳା ଭିତରକୁ ନେଇଯାଆନ୍ତି; ପୁଣି ସେଇ ଛୁଆଟିକୁ ଆଣି କଇଁଛକୁ ଦେଖାନ୍ତି । ଏହିପରି ସେ ସାତଥର ତାକୁ ଆଣି କଇଁଛକୁ ଦେଖାଇଲେ । କଇଁଛ ଭାବିଲା, ତା'ର ସାତୋଟିଯାକ ପିଲା ରହି ବେଶ୍ ଆରାମରେ ପଢାପଢି କରୁଛନ୍ତି ।

ଶେଷକୁ ମାଷ୍ଟ୍ରେ ସେଇ ଛୁଆଟିକୁ ମଧ୍ୟ ଖାଇ ଶେଷ କରିଦେଲେ । ଏହାପରେ କଇଁଛ ଦିନେ ତା' ଛୁଆଙ୍କୁ ଦେଖିବାକୁ ଆସିଲା । ମାଷ୍ଟ୍ରେ କହିଲେ —"ତୁମ ପିଲାଙ୍କର ସ୍କୁଲ ପାଠ ଶେଷ ହୋଇଯାଇଛି । ସେମାନେ ଏବେ କଲେଜ ପାଠ ପଢିବାକୁ ଯାଇଛନ୍ତି । କଇଁଛର ବିଶ୍ୱାସ ହେଲାନାହିଁ । ସେ ବୁଝିପାରିଲା ଯେ ଶୋକ ତାକୁ ମିଛ କହି ଭଣ୍ଡାଉଛି । ତା'ର ସବୁ ଛୁଆଙ୍କୁ ସେ ଖାଇଦେଇଛି । ସେ ପ୍ରତିଜ୍ଞା କଲା, ନିଶ୍ଚୟ ଏହାର ପ୍ରତିଶୋଧ ନେବ । ସେହି ଦିନଠୁ ସେ ତାକୁ ମାରିବାପାଇଁ ଛକିଲା ।

ଦିନେ କୋକଶିଆଳ ନାଳ ପାର ହେଉଥାଏ । ଏତିକିବେଳେ କଇଁଛ ପାଣିରେ ରହି କୋକର ଗୋଟାଏ ଗୋଡ଼କୁ କାମୁଡ଼ି ଧରିଲା । କୋକ ବୁଦ୍ଧିଆଙ୍କ ଗୁରୁ । ବିପଦରେ ପଡ଼ିଲେ ବି ବିଚଳିତ ନ ହୋଇ ସେ କହିଲା - "ବାଃ ! ବାଃ ! ମୋର କପାଳ ଭଲ । ଠିକେକେ ମୁଁ ରକ୍ଷା ପାଇଗଲି । ବୋକା କଇଁଛଟା ତା' ପାଟିରେ କାଠଟିଏ କାମୁଡ଼ିଛି । ଯାହେଉ ମୋ ଗୋଡ଼ ତା' କବଳରୁ ରକ୍ଷା ପାଇଗଲା ।" କଇଁଛ ଭାବିଲା, ମୋର ଭୁଲ ହୋଇଯାଇଛି । ଏହା ଭାବି ସେ କୋକ ଗୋଡ଼କୁ ପାଟିରୁ ଛାଡିଦେଲା ।

ଆଉଦିନେ କୋକଶିଆଳୀ ସ୍ରୋତ କେନାଲକୁ କପରି ପାରିହେବ ସେ କଥା ଭାବୁଥାଏ । ଆର କୂଳରେ ତା'ର ଗୋଟିଏ ଜରୁରୀ କାମ ଥାଏ । କଇଁଛଟି କାଳେ ପୁଣି ତାକୁ ଧରି ପକାଇବ ଏଥିପାଇଁ ସେ ଖୁବ୍ ସତର୍କ

ହୋଇ ପାଣି ଭିତରକୁ ପାଦ ପକାଉଥାଏ । ଏଣେ କଇଁଛଟି କୋକକୁ ଧରିବା ଲାଗି ବହୁତ ସମୟ ଅପେକ୍ଷା କରି ଅସ୍ଥିର ହୋଇପଡ଼ୁଥାଏ । ଶେଷକୁ ସେ ପାଣି ଉପରକୁ ଭାସିଉଠିଲା । କୋକକୁ ଦେଖି ମନଇଚ୍ଛା ଗାଳି ଦେଲା । କହିଲା—“ରହିଥା, ମୋ ହାବୁଡ଼ରୁ ତୁ କେବେହେଲେ ରକ୍ଷା ପାଇପାରିବୁ ନାହିଁ ।” କୋକଣିଆଳୀ ମଧ୍ୟ ତାକୁ ଠିକଣା ଜବାବ ଶୁଣାଇ ଦେଲା । ଏହା ଶୁଣି କଇଁଛ ଆହୁରି ରାଗିଗଲା । କୋକ ସଙ୍ଗେ ସଙ୍ଗେ କଇଁଛ ପିଠି ଉପରକୁ ଡେଇଁ ପଡ଼ିଲା । ତା’ ପିଠିରେ ବସି ଅପର ପାଖକୁ ଚାଲିଗଲା । ଅପର ପାଖେ ମହାଆନ୍ଦ କହିଲା—“ବାଃ, ବାଃରେ । କୋକଟା ପଳାଇବା ଦେଖି କଇଁଛ ନାରାଜ ହୋଇଗଲା ।” ଭାବିଲା, କୋକଣିଆଳୀଟା ମୋତେ ସବୁଥର ଠକିଲା; ମାତ୍ର ମୁଁ ତାକୁ ଏଥର ଛାଡ଼ିବିନାହିଁ । ନିଶ୍ଚେ ଧରି ଉଚିତ୍ ଶିକ୍ଷା ଦେବି । ସେ କେନାଲ କୂଳକୁ ଆସି ମାଟି ଉପରେ ମଲାଭଳି ଆଖି ବୁଜି ଶୋଇରହିଲା । ଭାବିଲା—ମୋତେ ଶବ ମନେକରି କୋକ ମୋ ପାଖକୁ ଆସି ମୋ ମାଂସ ଖାଇବ । ଅନେକ ସମୟ ପର୍ଯ୍ୟନ୍ତ ସେମିତି ଅପେକ୍ଷା କରିଥାଏ । ସନ୍ଧ୍ୟା ହେଲା, ସବୁଦିନ ଭଳି କୋକ ବୁଲିବାକୁ ଆସିଲା । ବୁଢ଼ା କଇଁଛଟି ମାଟି ଉପରେ ମଲାଭଳି ପଡ଼ିଥାଏ । କିଛି ସମୟ ପରେ କୋକ କଇଁଛର କୌଶଳ ଜାଣିପାରିଲା । ଆଉ ଆଗକୁ ନଯାଇ କହିଲା—“ଆରେ କଇଁଛଟାଏ କ’ଣ ଏଠି ହଠାତରେ ମରି ପଡ଼ିଛି । ମତେତ ଠିକ୍ ଜଣାପଡ଼ୁନି । କଇଁଛ ମରିଗଲେ କାନ ହଲାନ୍ତି; ମାତ୍ର ଏଇଟାତ କାନ ହଲାଉନାହିଁ । ଏହା ଶୁଣି କଇଁଛ ଭାବିଲା, ବୋଧହୁଏ କଇଁଛମାନେ ମଲାପରେ କାନ ହଲାନ୍ତି । ତେଣୁ ସେ ନିଜେ ମୃତ ବୋଲି ଜଣାଇ ଦେବା ଲାଗି ସେ ଧୀରେ ଧୀରେ ତା’ର କାନ ଦୁଇଟିକୁ ହଲାଇବାକୁ ଆରମ୍ଭ କଲା ।

କୋକଣିଆଳୀ ପୁଣି କହିଲା—“ଆରେ କଇଁଛମାନେ ମରିଗଲା ପରେ ଥରେ ଆଖି ଖୋଲନ୍ତି ଓ ପୁଣି ବୁଜିଦିଅନ୍ତି ।” ବୋକା କଇଁଛ ଏହା ଶୁଣି କୋକର କହିବା ଅନୁସାରେ ଆଖି ଖୋଲି ପୁଣି ବନ୍ଦକଲା । କୋକଣିଆଳୀଟି ତା’ପାଖକୁ ଯାଇ ଗୋଇଠାଟାଏ ପକାଇ ବଣ ଭିତରକୁ ଧାଇଁ ପଳାଇଲା ।

( ବଙ୍ଗଳା )

# ସୁଖୁ ଓ ଦୁଖୁ

ତନ୍ତୀଟିଏ—ତାର ଦୁଇଟି ସ୍ତ୍ରୀ । ଦୁଇ ସ୍ତ୍ରୀଙ୍କର ଦୁଇଟି ଝିଅ, ସୁଖୁ ଓ ଦୁଖୁ । ତନ୍ତୀଟି ତାର ବଡ଼ ସ୍ତ୍ରୀ ଓ ତା ଝିଅ ସୁଖୁକୁ ବେଶି ଆଦରକରେ—ସେ ଦୁହେଁ କୁଟା ଖଣ୍ଡକୁ ଦ'ଖଣ୍ଡ କରନ୍ତିନାହିଁ । ଅଏସରେ ଥାଆନ୍ତି; ମାତ୍ର ସାନ ସ୍ତ୍ରୀ ଓ ତା ଝିଅର ଦୁଃଖ କହିଲେ ନସରେ । ସେ ଦୁହେଁ ସୂତା କାଟନ୍ତି, ଘର ଓଲପନ୍ତି, ସବୁର ଗଞ୍ଜଣା ଶୁଣି ସନ୍ଧ୍ୟାବେଳକୁ ଦ'ମୁଠା ଭାତ ଖାଇବାକୁ ପାଆନ୍ତି ।

କେତେଦିନ ପରେ ତନ୍ତୀଟି ମରିଗଲା । ସଙ୍ଗେ ସଙ୍ଗେ ତାର ବଡ଼ ସ୍ତ୍ରୀ ତନ୍ତୀର ଯାହା କିଛି ଟଙ୍କା କଉଡ଼ି ଥିଲା, ସବୁ ଲୁଚେଇ ରଖିଦେଲା । ଦୁଖୁ ଓ ତା ବୋଉକୁ ଭିନ୍ନ କରିଦେଲା ।

ସୁଖୁର ବୋଉ ବେଶ୍ ମଜାରେ ଥାଏ । ହାଟରୁ ଆଜ ବଡ଼ ମାଛଟି ଆଣେ ତ କାଲି ବଡ଼ କଦଳୀ କାନ୍ଦିକ ଆଣେ । ରାନ୍ଧି ବାଢ଼ି ସଉତୁଣୀ ଓ ତା ଝିଅକୁ ଦେଖେଇ ଦେଖେଇ ଖାଏ ।

ଦୁଖୁ ଓ ତା ବୋଉ କଷ୍ଟରେ ଚଳୁଥାନ୍ତି । ଦିନ ରାତି ସୂତା କାଟି କେଉଁଦିନ ଗାମୁଛଟିଏ ତ କେଉଁଦିନ ଦୋସଡ଼ାଟିଏ ବୁଣନ୍ତି । ତାକୁ ବିକି ଯାହା ପାଆନ୍ତି, ସେଥିରେ ମା' ଝିଅ ଦୁହେଁ କୌଣସି ମତେ କଷ୍ଟରେ ଚଳିଯାନ୍ତି ।

ଦିନେ ଦୁଖୁ ବୋଉର ସୂତା ନେଠଇକୁ ମୂଷା କାଟିଦେଲା । ତାର ତୂଳାଗୁଡ଼ିକ ମଧ୍ୟ ଖରାପ ହୋଇଗଲା । ଏଣୁ ସେ ସୂତା ଗୋଛାକ ଖେଳାଇଦେଲା, ତୂଳା ଟୋକେଇକୁ ଖରାରେ ଦେଲା । ଦୁଖୁକୁ କହିଲା—"ତୁ ତୂଳାକୁ ଜଗିଥା । ମୁଁ ଗାଧୋଇ ଯାଉଛି ।"

ଏହା କହି ସେ ନଈକୂଳକୁ ଚାଲିଗଲା । ଦୁଖୁ ତୂଳା ଜଗିଥାଏ । ଏଇ

ସମସ୍ତ ର ହଠାତ୍ ଏମିତି ଦମକାଏ ପବନ ଆସିଲା ଯେ ସବୁତକ ତୂଳା ଉଡ଼ି-ଗଲା । ଏତେ ଟିକିଏ ବି ତୂଳା ଦୁଖୁ ରଖି ପାରିଲାନାହିଁ — ମନ ଦୁଃଖରେ ଦୁଖୁ କାନ୍ଦିଲା ।

ପବନ କହିଲା—'ଦୁଖୁ ତୁ କାନ୍ଦନା । ମୋ ସାଙ୍ଗରେ ଆ । ମୁଁ ତତେ ତୂଳା ଦେବି ।' ଦୁଖୁ କାନ୍ଦି କାନ୍ଦି ପବନ ପଛେ ପଛେ ଚାଲିଲା ।

ଯାଉ ଯାଉ ବାଟରେ ଗୋଟାଏ ଗାଈ ଦୁଖୁକୁ ଡାକିଲା — "ଦୁଖୁ କୁଆଡ଼େ ଯାଉଛୁ—ମୋ ଗୁହାଳଟା ସଫା କରିଦେଇ ଯିବୁ କି ?" ଦୁଖୁ ଆଖି ଲୁହ ପୋଛି ଗାଈ ଗୁହାଳକୁ ଗଲା । ତାକୁ ନିର୍ମଳ କରି ସଫାକଲା, ଗାଈକୁ କୁଣ୍ଡା ପାଣି ଦେଲା; ତାପରେ ପବନ ପଛେ ଚାଲିଲା ।

କେତେବାଟ ଗଲାପରେ କଦଳୀ ଗଛଟିଏ କହିଲା — 'ଦୁଖୁ କୁଆଡ଼େ ଯାଉଛୁ ? ମୋ ଦେହସାକ ଗୁଡ଼ାଏ ନଟି ମାଡ଼ିଯାଇଛି, ଏଗୁଡ଼ାକ ଟାଣି ସଫା କରି ଦେବୁ କି ?' ଦୁଖୁ ଟିକିଏ ରହି କଦଳୀ ଗଛରୁ ନଟିଗୁଡ଼ାକ ଟାଣି ସଫା କରିଦେଲା ।

ପୁଣି କିଛିବାଟ ଗଲାପରେ ଗୋଟାଏ ସାହାଡ଼ା ଗଛ ତାକୁ ଡାକି କହିଲା—"ଦୁଖୁ କୁଆଡ଼େ ଯାଉଛୁ କି ? ମୋ ମୂଳଟା ବଡ଼ ଅଳିଆ ହୋଇଛି, ଟିକିଏ ସଫା କରିଦେବୁ ?'

ଦୁଖୁ ସାହାଡ଼ା ଗଛ ମୂଳଟାକୁ ଓଳେଇ ଦେଲା । ତା' ଗଣ୍ଡିଟାକୁ ସଫାକରି ପବନ ପଛେ ପଛେ ଚାଲିଲା ।

କେତେବାଟ ଗଲାପରେ ଗୋଟାଏ ଘୋଡ଼ା କହିଲା—"ଦୁଖୁ, ଦୁଖୁ ! କୁଆଡ଼େ ଯାଉଛୁ ? ମୋତେ ଦି' ଗୋଛା ଘାସ ଦେଇ ଯା ।" ଦୁଖୁ ଘୋଡ଼ାକୁ ଘାସ ଦେଲା । ତା'ପରେ ପବନ ପଛେ ଧାଇଁ ଧାଇଁ ଗୋଟାଏ ଧୋବ ଫରି-ଫର ଘରେ ପଶିଗଲା ।

ଘରଟିରେ କେହି ନଥାନ୍ତି, ଘରଦୁଆର ସଫା ସୁତୁରା, ଅଗଣା ଚକ୍

ଚକ୍ କରୁଛ—ବାରଣ୍ଡାରେ କେବଳ ବୁଢ଼ୀଟିଏ ବସି ସୂତା କାଟୁଥାଏ । ପଲକ ପଡ଼ବାମାତ୍ରେ ତାର ସୂତାରେ ଯୋଡ଼ାକୁ ଯୋଡ଼ା ଶାଢ଼ୀ ହୋଇଯାଉ-ଥାଏ ।

ସେଇ ବୁଢ଼ୀଟି ହେଉଛୁ, ଚନ୍ଦର ମା' । ପବନ କହିଲା—"ଦୁଖୀ ବୁଢ଼ୀ ପାଖକୁ ଯାଇ ଭୂଲା ମାଗ, ସେ ଦେବ ।" ଦୁଖୀ ଯାଇ ବୁଢ଼ୀ ପାଦତଳେ ମୁଣ୍ଡ ଲଗେଇ ନମସ୍କାର କରି କହିଲା—"ଦେଖ୍ ଆଈମା, ପବନ ମୋର ସବୁତକ ଭୂଲା ଉଡ଼ାଇ ନେଲା—'ମୋ ମାଆ ମତେ ଗାଳିଦେବ, ମୋତେ କିଛି ଭୂଲା ଦେ ।'

ଚନ୍ଦମା ବୁଢ଼ୀ ତାର ଦୁଧଫେଣ ଭଳି ଧୋବ ଫର୍‌ଫର୍ ବାଳଗୁଡ଼ାକ ହାତରେ ଆଡ଼େଇ ଦେଇ ଆଖି ଟେକି ଗ୍ରେଟ ଝିଅଟିକୁ ଚାହିଁଲା । ଝିଅଟିର କଥାଗୁଡ଼ାକ ମହୁଭଳି ମଧୁର । ବୁଢ଼ୀ କହିଲା - "ଆହା ମୋ ସୁନା ଝିଅଟା । କେତେ ବାଟରୁ ଚାଲି ଚାଲି ଆସିଛୁ । ଏଇ ଘରେ ଗାମୁଛା ଅଛି, ସେ ଘରେ ଲୁଗା ଅଛି, ହେଇ ଆର ଘରେ ତେଲ ଅଛି, ଏଇ ପୋଖରୀକୁ ଯା ଦି' ବୁଡ଼ା ପକେଇ ଗାଧୋଇ ଆସ । ତା'ପରେ ପାଖ ଘରକୁ ଯାଇ ଦି'ଟା ଖା । ତା' ପରେ ତତେ ଭୂଲା ଦେବ ।"

ବୁଢ଼ୀ ଯେଉଁ ଘର ଦେଖେଇ ଦେଲା, ଦୁଖୀ ସେଇ ଘରକୁ ଯାଇ ଦେଖିଲା ସେଠି କେତେ ଭଲ ଭଲ ଗାମୁଛା, ଶାଢ଼ୀ ଥୁଆ ହୋଇଛି । ସେଗୁଡ଼ାକ ଆଡ଼େଇ ଦେଇ ସେଠାରୁ ଛିଣ୍ଡା ଗାମୁ ଛା ଲୁଗା ଦି'ଖଣ୍ଡ ନେଇ ନାଁକୁ ମାତ୍ର ଟିକିଏ ତେଲ ମୁଣ୍ଡରେ ଲଗେଇ ଗାଧୋଇବାକୁ ଚାଲିଗଲା ।

ପାଣିରେ ପଶି ବୁଡ଼ ପଡ଼ବାମାତ୍ରେ ଦୁଖୀର ରୂପ ଝଲ୍‌ମଲ୍ ହୋଇ ଉଠିଲା । ଏମିତି ରୂପ, ଦେବ କନ୍ୟାର ବି ହେବନାହିଁ । ଦୁଖୀ ତା' ଜାଣି-ପାରିଲା ନାହିଁ । ଆଉ ଥରେ ବୁଡ଼ ପଡ଼ବା ମାତ୍ରେ ଦୁଖୀ ଦେହଯାକ ଅପୂର୍ବ ଗହଣାରେ ପୂରିଗଲା । କେତେ ନା କେତେ ଅଳଙ୍କାରରେ ମୁଣ୍ଡ ହୋଇ ସେ ଖାଇବା ଘରକୁ ଗଲା ।

ଖାଇବା ଘରେ ପୁଣି କେତେ ଖାଇବା ଚିଜ । ସେମିତି ଚମତ୍କାର ଖାଇବା ଜିନିଷ । ଖାଇବା ଦୂରେ ଥାଉ ତାହା ସେ ଜନ୍ମରୁ ଦେଖିନାହିଁ । ସେଇ ଗୋଟିଏ କୋଣରେ ବସି ଦୁଖୁ ପଖାଳ ଦି'ମୁଠା ଖାଇ ବୁଢ଼ୀ ପାଖକୁ ଆସିଲା ।

ଚନ୍ଦମା ବୁଢ଼ୀ କହିଲା— "ମୋ ସୁନା ଝିଅଟା ସବୁ କାମ ସାରି ଆସିଲୁ ତ ! ଏଇ ଘରକୁ ଯା । ପେଟରାରେ ତୁଳା ଅଛି, ନେଇଯିବୁ ।"

ଦୁଖୁ ଯାଇ ଦେଖିଲା ପେଟରା ଉପରେ ପେଟରା— ଛୋଟ ବଡ଼ ନାନା ପ୍ରକାରର । ଦୁଖୁ ସାନ ଖେଳନା ପେଟରାଟିଏ ଧରି ବୁଢ଼ୀ ପାଖକୁ ଆସିଲା । ବୁଢ଼ୀ କହିଲା— "ମୋ ସୁନା ଝିଅ, ଆଉ ମୋ ପାଖକୁ କାହିଁକି ଆସିଲୁ ? ଏଥର ତୁଳା ନେଇ ତୋ ମାଆ ପାଖକୁ ଯା । ଏଇ ପେଟରାରେ ତୁଳା ଦେଇଛି ।" ବୁଢ଼ୀର ପାଦଧୂଳି ନେଇ ପେଟରାକୁ କାନ୍ଧରେ ରଖି ରୂପ ଓ ଗହଣାରେ ରାସ୍ତାକୁ ଚମକାଇ ଦୁଖୁ ଆପଣା ଘରକୁ ଫେରିଲା ।

ଯାଉ ଯାଉ ବାଟରେ ଘୋଡ଼ା ସଙ୍ଗେ ଦେଖାହେଲା । ସେ କହିଲା— "ଦୁଖୁ ଦୁଖୁ, ଆ, ଆ, ! ତୋତେ ଆଉ କ'ଣ ଦେବି ? ଏଇ ତେଜୀୟାନ ପକ୍ଷିରାଜ ଘୋଡ଼ା ଛୁଆଟିକୁ ନେ ।"

ସାହାଡ଼ା ଗଛ କହିଲା— 'ଦୁଖୁ ଦୁଖୁ ଆ, ଆ ! ତତେ ଆଉ କ'ଣ ଦେବି ? ଏଇ ସୁନା ମୋହର ଥିବା ଘଡ଼ିଟି ନେ ।'

ଗାଈ କହିଲା— "ଦୁଖୁ ଦୁଖୁ ଆ, ଆ, ତତେ ଆଉ କ'ଣ ଦେବି । ଏଇ ସୁଲକ୍ଷଣୀ କପିଳା ବାଛୁରୀଟି ନେ ।" ଘୋଡ଼ା ଛୁଆ ଉପରେ ମୋହର ଘଡ଼ି, କାନ୍ଧିଏ ସୁନାକଦଳୀ ରଖି ବାଛୁରୀଟିକୁ ସାଙ୍ଗରେ ନେଇ ଦୁଖୁ ଘରକୁ ଆସିଲା ।

"ଦୁଖୁ ଦୁଖୁ, ଆଲୋ ପୋଡ଼ାମୁହିଁ— ତୁଳା ନେଇ କୁଆଡ଼େ ଗଲୁ ?" ଡାକି ଡାକି ବିଲ ବଣ, ଖାଲ, ଖମା ସବୁଆଡ଼ ଖୋଜି, ଝିଅକୁ ନ ପାଇ ଦୁଖୁର ମା ଅସ୍ଥିର । ଦୁଖୁକୁ ଦେଖି ଧାଇଁ ଆସି କହିଲା— "ଆଲୋ ମୋ ଝିଅ ଆସିଲୁଣି ଲୋ । ଆଲୋ ତୁ କେଉଁଠି ଥିଲୁ ଲୋ ।" ଝିଅ ଏତେ ଜିନିଷ ଆଣିଛି

ଦେଖି ଆଶ୍ଚର୍ଯ୍ୟ ହୋଇ ସେ କହିଲା— "ଆ ଲୋ ତୁ ଏସବୁ ଜିନିଷ କେଉଁଠୁ ଆଣିଲୁ ?"

ମାଆକୁ ଦୁଖୁ ସବୁ କଥା କହିଲା । ଦୁଖିଆର ମା' ଖୁସି ହୋଇ ଦୁଖିକୁ ନେଇ ସୁଖୁ ମାଆ ପାଖକୁ ଗଲା । କହିଲା— "ଅପା, ଅପା ! ଆଲୋ ସୁଖି ! ଆଜିଠୁଁ ଆମର ଦୁଃଖ ଗଲା । ଚାହିଁ ଦେଖ୍, ଚନ୍ଦ୍ରମା ବୁଢ଼ୀ ଦୁଖୁକୁ କେତେ ଜିନିଷ ଦେଇଛି । ଏଥିରୁ ସୁଖୁ କିଛି ନେଉ, ଦୁଖୁ ପାଇଁ କିଛି ଥାଉ ।"

ଆଖି ବଡ଼ ବଡ଼ କରି ମୁହଁ ବଙ୍କାଇ ସୁଖୁର ମା କହିଲା, "ହରି ହରି ଦରଦ । କ'ଣ ହେଲା, ପର ଜିନିଷରେ ଭାଗ ନେବ ସୁଖୁ ଆଉ ତା' ମାଆ ।" ମନେ ମନେ ଗୁଣ୍ଠ ଗୁଣ୍ଠ ହୋଇ କହିଲା— ମୋ ସୁଖୁ କୁଆଡୁ ଉଡ଼ ଆସିଛି ? ତା କପାଳରେ ଥିବ ତ ସିଏ ମୋର କାଲି ଯାଇ ଇନ୍ଦ୍ର ସମ୍ପତ୍ତି ଲୁଟି ଆଣିବ ।" ମନ ଶୁଖେଇ ଦୁଖୁମା ଫେରିଆସିଲା ।

ରାତିରେ ପେଟରା ଖୋଲିବାରୁ ସେଥିରୁ ଦୁଖୁର ରାଜପୁତ୍ର ବରଟି ବାହାରିଲା । ଦୁଖୁ ଓ ତା ମାଆର ଆନନ୍ଦ କହିଲେ ନ ସରେ । ରାଜପୁତ୍ର ବର ଘୋଡ଼ାରେ ଚଢ଼ି ବୁଲେ । କପିଳା ଗାଈ ଦୁଧରେ ହାତ ଧୁଏ । ଦୁଖୁ ଓ ତା ମାଆର କୁଡ଼ିଆ ଘର ଆଲୁଅ ହୋଇଗଲା ।

ହୋର ଶବଦ ନାହିଁ, ସୁଖୁ ମାଆ ତୋ ଦୁଆର କିଳି ଦେଇଥାଏ । ବାରପଟେ ତୂଳାଗୁଡ଼ାକୁ ଖରାରେ ଶୁଖେଇଲା, ସୁଖୁକୁ ଜଗେଇ ଦେଇ ଲୁଗା ପୋଟଳିଟି ଧରି ପୋଖରୀକୁ ଗାଧୋଇଗଲା ।

ଟିକିଏ ପରେ ପବନ ଆସି ସୁଖୁର ତୂଳା ଉଡ଼େଇନେଲା । ସୁଖୁ ତା ପଛେ ପଛେ ଧାଇଁଲା !

ବାଟରେ ସେଇ ଗାଈଟି ଡାକିଲା— "ସୁଖୁ ସୁଖୁ ! କୁଆଡ଼େ ଯାଉଛୁ, ଶୁଣି ଯା ।" ସୁଖୁ ତାକୁ ମୁହଁ ବୁଲେଇ ଚାହିଁଲା ବି ନାହିଁ । କଦଳୀ ଗଛ, ସାହାଡ଼ା ଗଛ, ଘୋଡ଼ା ସମସ୍ତେ ଡାକିଲେ । ସୁଖୁ କାହାରି କଥା କାନରେ ପୂରାଇଲା ନାହିଁ ବରଂ ଆହୁରି ରାଗିଯାଇ ଗାଳିଦେଇ କହିଲା— "ଓଃ, ମୁଁ

ଚନ୍ଦମା ବୁଢ଼ୀ ଘରକୁ ବାହାରିଛି । ତୁମ କଥା ଶୁଣିବାକୁ ମୋର ଫୁରୁସତ୍ ନାହିଁ ।

ପବନ ପଛେ ପଛେ ସୁଖୁ ଚନ୍ଦମା ବୁଢ଼ୀ ଘରକୁ ଗଲା । ଯାଇ କହିଲା, "ଏହି ବୁଢ଼ୀ ! ଏଠି ବସି ଏସବୁ କ'ଣ କରୁଛୁ ? ମୋତେ ଆଗେ ସବୁ ଜିନିଷ ଦେଇ ଦେ, ତା'ପରେ ସୂତା କାଟିବୁ । ହଁ, ଚୂଲମୁହାଁ ଦୁଖୁକୁ ପୁଣି ଏତେ ଜିନିଷ ଦେଲୁ ।" ଏହା କହି ସୁଖୁ ବୁଢ଼ୀର ଚରଖା, ଫରଖା ଟାଣି ଟାଣି ଭାଙ୍ଗିବାକୁ ବସିଲା ।

ଚନ୍ଦମା ବୁଢ଼ୀ କାବା । ଆରେ ବାପରେ ! ଏତେ ଟିକିଏ ପିଲା ତା'ର ପୁଣି ଏତେ ଦେମାକ୍ । ଛୁଞ୍ଚି ଭଳି କଥା, ଅଗ୍ନିବାଣ୍ଡୀ ଭଳି ବ୍ୟବହାର ! ବୁଢ଼ୀ ଚୁପ୍ କରି ରହିଲା; ତା'ପରେ କହିଲା— "ଆଚ୍ଛା, ଗାଧୋଇ ପା ଧୋଇ; ଦି'ଟା ଖାଇସାର, ତା'ପରେ ସବୁ ପାଇବୁ ।"

ସୁଖୁକୁ ମୁହୂର୍ତ୍ତେ ତର ସହୁ ନ ଥାଏ । ସେ ଦୁମ୍ ଦାମ୍ ହୋଇ ଏ ଘରୁ ସବୁଠୁ ଭଲ ଗାମୁଛା, ସେ ଘରୁ ସବୁଠୁ ଭଲ ଶାଢ଼ୀଟା, ବାସନା ତେଲର ଘଡ଼ିଟା, ଚନ୍ଦନର ତାଟିଆଟା, ଏମିତି ସବୁ ଭଲ ଜିନିଷତକ ନେଇ ଗାଧୁଆ ଘାଟକୁ ଗଲା ।

ସାତଥର ତେଲ ଲଗାଇଲା, ସାତଥର ମୁଣ୍ଡ ଘଷିଲା, ଏଣିକି ତେଣିକି ଚାହିଁଲା, ସାତଥର ଦର୍ପଣରେ ମୁହଁ ଦେଖିଲା, ତଥାପି ସୁଖୁର କିଛି ମନକୁ ପାଉ ନ ଥାଏ । ତିନି ପହର ପର୍ଯ୍ୟନ୍ତ ଏମିତି ହୋଇ ସୁଖୁ ପାଣିରେ ପଶିଲା ।

ସୁଖୁ ଏଣେ ତେଣେ ଚାହିଁ ଭାବୁଥାଏ । ଏକା ଡୁବାରେ ରୂପା, ଆଉ ଗୋଟାଏ ବୁଡ଼ରେ ଗହଣା । ଆଃ ଆଉ ସୁଖୁକୁ କିଏ ପାଇବ !

"ଆରେ ଆରେ, ଏ କ'ଣ ହେଲା ! ସୁଖୁ ପାଣିରେ ତିନି ବୁଡ଼ା ଦେଇ ଉଠି ଦେଖିଲା, ତା ଦେହଯାକ ଘା, ବ୍ରଣ, ଏତେ ଏତେ ନଖ, ଶଣ ଫୁଲପରି ବାଳ, ମୁହଁଟା କପରି କଦର୍ଯ୍ୟ ହୋଇଯାଇଛି । "ଆଲୋ ବୋଉ ଲୋ; କଣ ହେଲା ଲୋ ।" କାନ୍ଦି କାନ୍ଦି ସୁଖୁ ବୁଢ଼ୀ ପାଖକୁ ଗଲା ।

ବୁଢ଼ୀ ସୁଖୁକୁ ଦେଖି କହିଲା— "ଆହା ଲୋ, ହୀନକପାଳୀ, ତୁ ଛନ ବୁଢ଼ା ମାରିଥିଲୁ ବୋଧହୁଏ ? ହଉ ଯା, କାନ୍ଦନା— ବେଳ ହୋଇଯାଉଛି, କିଛିଆଣି ଖାଇଦେ ।" ବୁଢ଼ୀ କହିବା ମାତ୍ରେ ସୁଖୁ ଖାଇବା ଘରକୁ ଯାଇ କ୍ଷୀରି, ପିଠା ପ୍ରଭୃତି ଭଲ ଖାଇବା ଜିନିଷ ସବୁ ଟାଉଁ ଟାଉଁ କରି ଖାଇଦେଇ ମୁହଁ ହାତ ଧୋଇ ଫେରିଆସି କହିଲା— "ଆଚ୍ଛା ବୁଢ଼ୀ, ମୁଁ ଏବେ ବୋଉ ପାଖକୁ ଯିବି । ମତେ ପେଟରା ଦେଇଁ ଦେଁ ।"

ବୁଢ଼ୀ ପେଟରା ଥିବା ଘରଟି ସୁଖୁକୁ ଦେଖାଇଦେଲା । ସୁଖୁ ସେ ଘରୁ ସବୁଠାରୁ ବଡ଼ ପେଟରାଟିଏ ମୁଣ୍ଡରେ ଥୋଇ ଗାଣ୍ଡୁ ଗାଣ୍ଡୁ ହୋଇ ବୁଢ଼ୀର ସାତ ପୁରୁଷକୁ ଗାଳି ଦେଇ, ଆପଣା ରୂପରେ ଫେରିଆଉ ଚମକେଇ ଘରକୁ ଚାଲିଲା ।

ସୁଖୁର ରୂପ ଦେଖି ବଲୁଆ ଧାଇଁ ପଳାଏ, ବାଟରେ ମଣିଷଙ୍କୁ ଝାମ ମାରିଯାଏ ।

ଯାଉ ଯାଉ ବାଟରେ ଘୋଡ଼ା ନାଟେ ମାରିଲା ।

ସୁଖୁ କହିଲା— "ଆଲୋ ମା'ଲୋ ।" ସାହାଡ଼ା ଗଛର ଗୋଟାଏ ଡାଳ ମଚ୍‌କରି ତା' ଉପରେ ଭାଙ୍ଗି ପଡ଼ିଲା । ସୁଖୁ କହିଲା— 'ମରିଗଲି ଲୋ ମରିଗଲି ।' କଦଳୀ ଗଛରୁ କାନ୍ଧିଟାଏ ତା' ପିଠି ଉପରେ ପଡ଼ିଲା; ସୁଖୁ କହିଲା— "ଆଲୋ, ମାଆଲୋ ।" ଗାଈ ତା ଶିଙ୍ଗକୁ ବଙ୍କେଇ ତାକୁ ଭୁଷିବାକୁ ଧାଇଁଲା । ସୁଖୁ ଧାଇଁ ଧାଇଁ ଆସି ଆପଣା ଘରେ ପଶିଗଲା ।

ଦୁଆର ମୁହଁରେ ଝୋଟି ଦେଇ, କଳସୀ, ଆମ୍ବ ପତ୍ର ଥୋଇ ସୁଖୁ ବୋଉ ବସିଥାଏ । ଥରକୁ ଥର ତା' ଆସିବା ବାଟକୁ ଚାହୁଁଥାଏ । ହଠାତ୍ ସୁଖୁକୁ ଦେଖି, "ଆଲୋ ମାଲୋ, କ'ଣ ହେଲା, ମୁଁ କୁଆଡ଼େ ଯିବି ଲୋ" କହି ତଳେ ମୂର୍ଚ୍ଛା ହୋଇଗଲା । କିଛି ସମୟ ପରେ ଉଠି ବାହୁନି ବାହୁନି ସେ କହିଲା— "ଆଲୋ ହତଭାଗୀ, ପେଟରାକୁ ଧରି କାହିଁକି ଠିଆ ହୋଇଛୁ ? ଘରେ ନେଇ ରଖ । ଆଗେ ଦେଖ ତା' ଭିତରେ ଭଲ ବରଟିଏ ଥିବ' ତ ତୋ

କପାଳ ଭଲ । ମା' ଝିଅ ଦୁହେଁ ମିଶି ପେଟରାକୁ ନେଇ ଘରେ ରଖିଲେ । ରାତିରେ ପେଟରାକୁ ଖୋଲିବାରୁ ସୁଖୁର ବର ବାହାରିଲା । ସୁଖୁ କହିଲା— "ମା ମୋ ଗୋଡ଼ଟା କାହିଁକି ସଲ୍ ସଲ୍ ହେଉଛି ?"

ମା' କହିଲା— "ମଲ୍ ପିନ୍ଧପକା ?"

ସୁଖୁ କହିଲା— "ମା'ଆ ଲୋ, ଦେହଟା କାହିଁକି ସର୍ ସର୍ ହେଉଛି ।"

ମା କହିଲା— 'ଗହଣା ପିନ୍ଧପକା ।'

ତା'ପରେ ସୁଖୁର ହାତ କଟକଟ, ବେଣି ଢଉଢଉ, ମୁଣ୍ଡ ଟନ୍‌ଟନ୍ ଏମିତି କେତେ କ'ଣ ହେଲା । ସୁଖୁ ହାର ପିନ୍ଧିଲା, ନୋଥ, ନୋଲକ ପିନ୍ଧିଲା, ସୁନ୍ଥାରେ ସିନ୍ଦୂର ଲଗାଇ ଚୁପ୍ ହେଲା । ତା'ପରେ ମନ ଖୁସିରେ ତା'ବୋଉ ଶୋଇବାକୁ ଗଲା ।

ପରଦିନ ସୁଖୁ ଆଉ କବାଟ ନ ଖୋଲେ । ମା ଡାକିଲା— "କିଲୋ, ଏତିକବେଳ ହେଲାଣି, କାହିଁକି ଉଠୁନୁ ।"

ଗାଧୁଆବେଳ ହେଲା, ତେବେ ବ ସୁଖୁ ଶେଯରୁ ଉଠିଲା ନାହିଁ । ସୁଖୁ ବୋଉ ଯାଇ କବାଟ ଖୋଲିଲା । ସୁଖୁ ଘରେ ନାହିଁ । ତା'ର ଚିହ୍ନ ବର୍ଣ୍ଣ ନାହିଁ । ଘର ଚଟାଣରେ ପଡ଼ିଛି ତା'ର ହାତଗୋଡ଼, ଆଉ ଗୋଟାଏ ଅଜଗରର କାତି । ଅଜଗର ସୁଖୁକୁ ଗିଳଦେଇଛି ।

ମୁଣ୍ଡ କୋଡ଼ିହୋଇ ସୁଖୁ ବୋଉ ମରିଗଲା ।

( ବଙ୍ଗଳା )



# ଅଫିମ ହେଲା କପର ?

ଗଙ୍ଗାନଦୀ କୂଳରେ ଜଣେ ଋଷି ରହୁଥିଲେ । ସକାଳୁ ପର୍ଯ୍ୟନ୍ତ ସେ ନଦୀକୂଳରେ ବସି ଜପତପ କରନ୍ତି । ସନ୍ଧ୍ୟା ହେଲେ ପାଖରେ ଥିବା ଗୋଟିଏ କୁଡ଼ିଆରେ ଯାଇ ଆଶ୍ରୟ ନଅନ୍ତି । କୁଡ଼ିଆଟି ନିର୍ଜନ ସ୍ଥାନରେ । ତା ପାଖରେ ଗୋଟିଏ ମୂଷା ରହୁଥିଲା । ଋଷି ଭାତରେ ଖାଇସାରିଲା ପରେ ଯାହା କିଛି ବଳକା ତାକୁଇ ଖାଇ ସେ ରହୁଥାଏ । ଋଷିଙ୍କ ପାଖରେ ରହି ମୂଷାଟିର ସ୍ୱଭାବ ବଦଳି ଯାଇଥିଲା । କାହାକୁ ଦେଖିଲେ ସେ ଡ଼ର ପଳାଇ ଯାଏନାହିଁ । ବରଂ ପାଖକୁ ଯାଇ ସେ ଗୋଡ଼କୁ ଛୁଇଁ ଖେଳେ । ଏଇ ଶ୍ରେଷ୍ଠ ପ୍ରାଣୀଟି ପ୍ରତି ଋଷିଙ୍କର ଦୟା ହେଲା । ବେଳେ ବେଳେ ତା ସଙ୍ଗେ କଥାବାର୍ତ୍ତା କରିବାଲଗି ସେ ତାକୁ କଥା କହିବାର ଶକ୍ତି ଦେଲେ ।

ଦିନେ ଭାତରେ ମୂଷା ପଛ ଦୁଇ ଗୋଡରେ ଛିଡ଼ାହୋଇ ହାତଯୋଡ଼ି କହିଲା— "ଆପଣ ଦୟାକରି ମୋତେ ମଣିଷଭଳି କଥା କହିବାକୁ ଶକ୍ତି ଦେଇଛନ୍ତି । ଯଦି ମୋ ଉପରେ ନ ରାଗନ୍ତି ମୁଁ ଗୋଟିଏ ବର ମାଗିବି ।"

ଋଷି କହିଲେ— "ଆଚ୍ଛା, ହଉ, କି ବର ମାଗୁଛୁ ମାଗ !"

ମୂଷା କହିଲା— "ଦିନବେଳେ ଆପଣ ନଦୀକୂଳକୁ ପୂଜା କରିବାକୁ ଗଲାପରେ ଗୋଟିଏ ବିଲେଇ ମୋତେ ଧରିବାକୁ ଏହି କୁଡ଼ିଆକୁ ଆସୁଛି । ମୋର ଆଶଙ୍କା, ସେ ମୋତେ ଦିନେ ମାରି ଖାଇଦେବ । ଏଣୁ ମୋର ପ୍ରାର୍ଥନା ମୋତେ ବିଲେଇଟିଏ କରି ଦିଅନ୍ତୁ । ତା' ହେଲେ ବିଲେଇ ମୋର କିଛି କରିପାରିବ ନାହିଁ ।" ଋଷି ମୂଷା ଉପରେ ସନ୍ତୁଷ୍ଟ ହୋଇ କିଛି ପାଣି ମନ୍ତ୍ରି ମୂଷା ଉପରେ ପକାଇଦେଲେ । ଦେଖୁଁ ଦେଖୁଁ ମୂଷାଟି ବିଲେଇ ପାଲଟିଗଲା ।

କେତେଦିନ ପରେ ଋଷି ଦିନେ ପଚାରିଲେ— "କିରେ ବେଟା ବିଲେଇ ! ଏବେ ତୋତେ କପରି ଲାଗୁଛି ?"

ବଲେଇ କହିଲା – "ମୁଁ ବିଶେଷ ଭଲରେ ନାହିଁ ।"

ଋଷି ପଚାରିଲେ— "କାହିଁକି ତୋତେ ଭଲ ଲାଗୁନାହିଁ ? ନିଜକୁ ରକ୍ଷା କରିବାକୁ କ'ଣ ତୋର ଶକ୍ତି ନାହିଁ ?"

ବଲେଇ କହିଲା— "ଆପଣଙ୍କ ଦୟାରୁ ମୁଁ ବେଶ୍ ବଳୁଆ । ପୃଥିବୀର କୌଣସି ବିଲେଇକୁ ମୋର ଡର ନାହିଁ; କିନ୍ତୁ ମୋର ଏବେ ଗୋଟିଏ ନୂଆ ଶତ୍ରୁ ଜୁଟିଛି । ଆପଣ ନିଶ୍ଚୟ ଜଙ୍ଗଲରେ ଥିବା କୁକୁର ଏହି କୁଡ଼ିଆ ପାଖକୁ ଆସି ଏପରି ଚିତ୍କାର ଆରମ୍ଭ କରୁଛନ୍ତି ଯେ, ଭୟରେ ମୋର ଛାତି ଶୁଖିଯାଉଛି । ଆପଣ ଯଦି ମୋ ଉପରେ ସନ୍ତୁଷ୍ଟ, ତେବେ ମୋତେ ଗୋଟିଏ କୁକୁର କରିଦିଅନ୍ତୁ ।"

ଋଷି କହିଲେ— "ହଉ କୁକୁର ହୋଇଯାଅ ।"

ସଙ୍ଗେ ସଙ୍ଗେ ବିଲେଇଟି କୁକୁର ହୋଇଗଲା । କେତେଦିନ ବିତିଗଲା ଦିନେ ବାଡ଼ରେ ଏହି କୁକୁରଟି ଋଷିଙ୍କୁ କହିଲା— "ମୁଁ ଗୋଟିଏ ସାମାନ୍ୟ ମୂଷା ଥିଲି, ମୋତେ ଆପଣ ଦୟାକରି ବିଲେଇଟିଏ କଲେ । ତା'ପରେ କୁକୁରଟିଏ କରିଦେଲେ; ମାତ୍ର କୁକୁର ହୋଇ ମୁଁ ବହୁତ ଦୁଃଖ ଭୋଗ କରୁଛି । ଖାଇବାକୁ ଯଥେଷ୍ଟ ମିଳୁନାହିଁ । ଆପଣଙ୍କ ଅଇଁଠା ମତେ ଅଣ୍ଟୁନାହିଁ; କିନ୍ତୁ ମୋ ଭଳି ଏକ ବଡ଼ ଜନ୍ତୁର ପେଟ ପୂରାଇବାକୁ ତାହା ଯଥେଷ୍ଟ ହେଉ ନାହିଁ । ଦେଖୁଛି ମାଙ୍କଡ଼ମାନେ ବେଶ୍ ଆରାମରେ ଗଛ ଉପରେ ଡେଇଁ ପାଚିଲା ଫଳ ଖାଇ ଖୁସିରେ ଅଛନ୍ତି । ମୁଁ ସେହିଭଳି ମାଙ୍କଡ଼ଟିଏ ହେବାକୁ ଇଚ୍ଛା କରୁଛି । ଦୟାକରି ମୋତେ ଗୋଟିଏ ମାଙ୍କଡ଼ କରିଦିଅନ୍ତୁ ।" ଋଷି ଦୟାକରି କୁକୁରକୁ ମାଙ୍କଡ଼ଟିଏ କରିଦେଲେ ।

ମାଙ୍କଡ଼ଟି ଏଥର କୁଡ଼ିଆରେ ନ ରହି ଆନନ୍ଦରେ ଗଛ ଉପରେ ଡ଼ିଆଁ ଡେଇଁ କରି ଫଳ ଖାଇ ରହିଲା । ମାତ୍ର ତା'ର ଆନନ୍ଦ ବେଶିଦିନ ରହିଲା ନାହିଁ । ଗ୍ରୀଷ୍ମଦିନ ଆସିଲା, ବର୍ଷା ନ ହେବାରୁ ପ୍ରାଣୀମାନେ କଷ୍ଟ ପାଇଲେ । ମାଙ୍କଡ଼ଟିକୁ ନଈ ବା ପୋଖରୀରୁ ପାଣି ପିଇବା କଷ୍ଟକର ହେଲା । ସେ ଦେଖିଲା, ବଣରେ ରହୁଥିବା ବାର୍‌ହାଗୁଡ଼ିକ ଦିନସାରା ପାଣିରେ ପଡ଼ି

ଖେଳୁଛନ୍ତି । ଭାବିଲା, ଏହି ବାରହାଗୁଡ଼ିକ ପ୍ରକୃତରେ ଭାଗ୍ୟବାନ । ସେମାନେ କେତେ ମଜାରେ ଅଛନ୍ତି । ମୁଁ ଯଦି ବାରହା ହୋଇଥାନ୍ତି ତେବେ ଭଲ ହୋଇଥାନ୍ତା ।

ଦିନେ ରାତିରେ ସେ ଋଷିଙ୍କ ପାଖକୁ ଗଲା । ମାଙ୍କଡ଼ ଜୀବନର ଦୁଃଖ ଓ ବାରହା ଜୀବନର ସୁଖ ବିଷୟ ତାଙ୍କୁ ଜଣାଇ ପ୍ରାର୍ଥନା କଲା— 'ମୋତେ ବାରହାଟିଏ କରିଦିଅନ୍ତୁ ।' ଋଷି ତ ଦୟାଳୁ, ମାଙ୍କଡ଼ ତ ତାଙ୍କର ପ୍ରିୟ ପାତ୍ର । ମାଙ୍କଡ଼ର ଅନୁରୋଧ ରକ୍ଷାକରି ସେ ତାକୁ ବାରହାଟିଏ କରିଦେଲେ ।

ଦୁଇଦିନ ପର୍ଯ୍ୟନ୍ତ ବାରହାଟି ଆନନ୍ଦରେ ପାଣିରେ ପଡ଼ି ଉଆଁ ଡେଇଁ କରି ଦିନ କାଟିଲା । ତୃତୀୟଦିନ ସେ ପାଣିରେ ଖେଳୁଥିବା ବେଳେ ଦେଖିଲା— ସେ ଦେଶର ରାଜା ଖୁବ୍ ଦାମିକା ପୋଷାକ ପିନ୍ଧି ହାତୀ ଉପରେ ବସି ଶିକାର କରିବାକୁ ଯାଉଛନ୍ତି । ଯୋଗକୁ ଏହି ବାରହା ଉପରେ ତାଙ୍କ ଦୃଷ୍ଟି ପଡ଼ି ନ ଥିଲା । ଏଣୁ ବାରହା ରକ୍ଷା ପାଇଲେ । ବାରହା ଭାବିଲା, ଜୀବନରେ ଅନେକ ବିପଦ । ହାତୀର ଜୀବନ ସବୁଠୁ ଭଲ । ଦେଶର ରାଜାଙ୍କୁ ସେ ପିଠିରେ ବୋହୁଛି । ଏଣୁ ସେ ସବୁଠୁ ଭାଗ୍ୟବାନ । ସେ ହାତୀଟିଏ ହେବାକୁ ଇଚ୍ଛାକଲା । ସେହିଦିନ ରାତିରେ ଯାଇ ଋଷିଙ୍କୁ ତା' ଇଚ୍ଛା ଜଣାଇଲା ।

ଋଷି ବାରହାକୁ ହାତୀଟିଏ କରିଦେଲେ । ହାତୀଟି ଏଥର ବଣରେ ଆରାମରେ ବୁଲିଲା । ଦିନେ ସେ ଦେଖିଲା, ରାଜା ଶିକାରକୁ ଯାଉଛନ୍ତି । ଧରା-ଦେବା ଉଦ୍ଦେଶ୍ୟରେ ସେ ରାଜାଙ୍କ ଆଡ଼କୁ ଧୀରେ ଧୀରେ ପାହୁଲ ପକାଇ ଆଗେଇଲା । ରାଜା ଦୂରରୁ ଏ ସୁନ୍ଦର ହାତୀଟିକୁ ଦେଖି ଖୁସି ହୋଇଗଲେ ଓ ତାକୁ ଧରି ପୋଷା ମନେଇବାକୁ ଆଦେଶ ଦେଲେ । ହାତୀ ସହଜରେ ଧରା-ଦେଲା । ରାଜାଙ୍କ ହାତୀଶାଳରେ ଯାଇ ରହିଲା । ପୋଷା ମାନିଲା ।

ଦିନେ ରାଣୀ ଗଙ୍ଗା ନଈରେ ଗାଧୋଇବି ବୋଲି ଇଚ୍ଛା କଲେ । ରାଜା ବି ତାଙ୍କ ସଙ୍ଗେ ଗାଧୋଇବାକୁ ବାହାରିଲେ । ରାଜା କହିଲେ— "ସେହି ନୂଆ ଧରା ହୋଇଥିବା ହାତୀଟିକୁ ଆଣ । ଆମେ ତା'ର ପିଠିରେ ବସି ନଈକୁ ଯିବୁ ।" ସେଇ ହାତୀଟି ଆସିଲା । ରାଜା ରାଣୀ ତା' ଉପରେ ବସିଲେ । ହାତୀ

କିନ୍ତୁ ଅନୋନ୍ଦିତ ହେବା ପରିବର୍ତ୍ତେ ଭାବିଲା, ରାଜା ମୋ ପିଠିରେ ବସିଲେ, ତାହା ମୋର ଗୌରବ । ମାତ୍ର ଯେ ତହେଲେ ରାଣୀ ଜଣେ ସ୍ତ୍ରୀଲୋକ । ମୋ ଭଳି ପ୍ରାଣୀ ଉପରେ ଜଣେ ସ୍ତ୍ରୀଲୋକ ବସିବାଟା ମୋ ପକ୍ଷେ ନିଶ୍ଚୟ ଅପ-ମାନ । ବରଂକ୍ତର ସହିତ ସେ ଏତେ ଜୋରରେ କୁଦି ପଡ଼ିଲା ଯେ ରଜା ରାଣୀ ତଳେ ପଡ଼ିଗଲେ । ରାଜା ତଳୁ ଉଠିପଡ଼ି ରାଣୀଙ୍କୁ ଉଠାଇଲେ । ତାଙ୍କ ଦେହରୁ ଧୂଳି ଝାଡ଼ିଦେଲେ ଓ ତାଙ୍କ ଦେହରେ ଆଘାତ ହୋଇଥିବ ଭାବି ଆଉଁସିବାକୁ ଲାଗିଲେ । ହାତୀ ଏହା ଦେଖି ଖୁବ୍ ଶୀଘ୍ର ବଣକୁ ଧାଇଁ ପଳାଇ-ଗଲା । ଯାଉଁ ଯାଉଁ ଭାବିଲା ନା, ହାତୀ ହେବାଟା ଭଲ ନୁହେଁ ।

ହାତୀଟି ଧାଇଁ ଧାଇଁ ଯାଇ ଋଷିଙ୍କ କୁଡ଼ିଆ ପାଖେ ପହଞ୍ଚିଲା ଓ ତାହାଙ୍କ ପାଦତଳେ ପଡ଼ିଗଲା । ଋଷି ପଚାରିଲେ — "ବେଟା, ଆଜି ତୋର ଖବର କ'ଣ ? ତୁ ରାଜାଙ୍କ ହାତୀଶାଳ ଛାଡ଼ି କାହିଁକି ଚାଲି ଆସିଲୁ ?"

ହାତୀ କହିଲା— "ଆପଣଙ୍କୁ ମୋ ଦୁଃଖ କଥା ବା କ'ଣ କହିବି ? ମୋର ସବୁ ପ୍ରାର୍ଥନା ଆପଣ ପୂରଣ କରିଛନ୍ତି । ଏହି ଗୋଟିଏ ପ୍ରାର୍ଥନା । ଏହାହିଁ ମୋର ଶେଷ ପ୍ରାର୍ଥନା । ମୋତେ ରାଣୀଟିଏ କରି ଦିଅନ୍ତୁ । ହାତୀ ହେବା ଦ୍ୱାରା ମୋର ଦେହଟା ଯିନା ବଡ଼ ହେଲା; କିନ୍ତୁ ମୋର ସୁଖ ବଢ଼ି-ଲାନି । ଦେଖିଲି ରାଣୀ ସବୁଠାରୁ ସୁଖୀ ।"

ଋଷି ଉତ୍ତରଦେଲେ—"ବେଟା ତୁ ଗୋଟାଏ ମୂର୍ଖ । ମୁଁ ତୋତେ ରାଣୀଟିଏ କିପରି କରିଦେବି ? ତୋ ପାଇଁ ଏକା ଥରକେ ରାଜ୍ୟ ଓ ସ୍ୱାମୀ ଭାବରେ ରାଜାଟିଏ ମୁଁ କୁଆଡ଼ୁ ଯୋଗାଡ଼ କରିବି ? ଯା ହେଉ ତୋତେ ରାଜ-ପୁତ୍ରର ମନକୁ ଆକୃଷ୍ଟ କଲାଭଳି ସୁନ୍ଦରୀ ଝିଅଟିଏ କରି ଦେଇପାରେ । ତେଣିକି ରାଜକୁମାର ସଙ୍ଗେ ସାକ୍ଷାତ ହେବାଟା ତୋ ଭାଗ୍ୟର କଥା ।"

ହାତୀ ଏଥିରେ ରାଜି ହୋଇଗଲା । ମୁହୂର୍ତ୍ତକ ମଧ୍ୟରେ ବୁଦ୍ଧିମାନ୍ ହାତୀଟି ଯୁବତୀ ପାଲଟିଗଲା । ଋଷି ତା ନାଁ ଦେଲେ "ପୋସ୍ତକମଣି" (ଅଫିମ ମଞ୍ଜି) । ଏଣିକି ପୋସ୍ତକମଣି ଋଷିଙ୍କ କୁଡ଼ିଆରେ ରହିଲା । ଫୁଲ ଫଳାହାକର ଗଛରେ ପାଣି ଦେଇ କାଳ କାଟୁଥାଏ ।

ଘନେ ଋଷି ନ ଥାନ୍ତି । ପୋସ୍ତକମଣି କୁଡ଼ିଆରେ ଏକୁଟିଆ ବସିଥିଲା । ଏତିକବେଳେ ଦେଖିଲା, ଦାମିକା ପୋଷାକ ପିନ୍ଧି ଜଣେ ଯୁବକ ସେହି କୁଡ଼ିଆ ଆଡ଼କୁ ଆସୁଛନ୍ତି । ପୋସ୍ତକମଣି ଠିଆହୋଇ ତାହାଙ୍କ ପରିଚୟ ପଚାରିଲା । ଯୁବକ କହିଲେ—"ମୁଁ ଶିକାର କରିବାକୁ ଆସିଥିଲି । ହରିଣ ପିଛା ଧାଇଁ ଧାଇଁ କିଛି ଫଳ ହେଲାନାହିଁ । ମୋତେ ଶୋଷ ହେବାରୁ ଋଷିଙ୍କ କୁଡ଼ିଆକୁ ଆସିଛି ।" ପୋସ୍ତକମଣି କୁଡ଼ିଆ ଭିତରକୁ ଯାଇ ପାଣି ନେଇଆସିଲା । ନିଜ ହାତରେ ଅତିଥିଙ୍କ ପାଦ ଧୋଇ ଦେବାକୁ ଯାଇ କହିଲା—"ଆପଣଙ୍କୁ ଦେଖି ମନେହୁଏ ଆପଣ ବୋଧହୁଏ ଜଣେ ରାଜକୁମାର । ଆପଣଙ୍କର ଯୋଗ୍ୟ ସତ୍କାର କରିବା ସମ୍ଭବ ନୁହେଁ । ଏଠାରେ ଆମର ବା କ'ଣ ଅଛି ?"

ଯୁବକ ଅଳ୍ପ ହସି କହିଲେ—"ହଁ ! ମୁଁ ଏ ଦେଶର ରଜାପୁଅ; ମାତ୍ର ଆପଣ ମୋର ଗୋଡ଼ ଧୋଇ ପାରିବେନ । କାରଣ, ଆପଣ ଋଷି କନ୍ୟା, ମୁଁ ହେଉଛି କ୍ଷତ୍ରିୟ ।"

ପୋସ୍ତକମଣି କହିଲା—"ମୁଁ ଋଷିଙ୍କ କନ୍ୟା ନୁହେଁ ବା ବ୍ରାହ୍ମଣ ଘରର ଝିଅ ନୁହେଁ । ତେଣୁ ଆପଣଙ୍କ ପାଦ ଛୁଇଁଲେ କିଛି ଦୋଷ ହେବନାହିଁ । ଋଷିଙ୍କଠାରୁ ଶୁଣିଛି ମୋ ବାପ ମା କ୍ଷତ୍ରିୟ ଥିଲେ ।"

କୌଣସି ଉତ୍ତର ନ ଦେଇ ପୋସ୍ତକମଣି କୁଡ଼ିଆ ଭିତରକୁ ଗଲା ଓ ରାଜକୁମାରଙ୍କ ପାଇଁ କିଛି ଫଳ ଆଣି ତାଙ୍କୁ ଦେଲା । ରାଜକୁମାର ପୋସ୍ତକମଣିର ରୂପ ଗୁଣରେ ଖୁସି ହୋଇଗଲେ ଓ ତାଙ୍କୁ ରାଣୀ କରିବାକୁ ଇଚ୍ଛାକଲେ । ଋଷିଙ୍କୁ ମଧ୍ୟ ତାହା ଜଣାଇଲେ । ଋଷି ପୋସ୍ତକମଣି ସଙ୍ଗେ ରାଜକୁମାରଙ୍କୁ ବାହା କରିଦେଲେ ।

ପୋସ୍ତକମଣି ଏଥର ଆନନ୍ଦରେ ଉଆସରେ ରହିଲା । ରାଜା ତାଙ୍କ ପୂର୍ବ ରାଣୀଙ୍କୁ ଆଉ ପଚାରିଲେ ନାହିଁ । ଘନେ ପୋସ୍ତକମଣି ତାଙ୍କ ବଗିଚା କୂଅ ପାଖେ ଛିଡ଼ା ହୋଇଥିଲା । ହଠାତ୍ ତାର ମୁଣ୍ଡ ବୁଲାଇବାରୁ ସେ କୂଅରେ ଗଳି ପଡ଼ିଲା । କେହି ତାକୁ ଉଦ୍ଧାର କରିବା ପୂର୍ବରୁ ତାର ପ୍ରାଣବାୟୁ ଉଡ଼ିଗଲା । ରାଜା ବହୁତ କାନ୍ଦିବାକୁ ଲାଗିଲେ ।

ଏହି ସମୟରେ ଋଷି ଆସି ପହଞ୍ଚିଗଲେ । କହିଲେ—"ରାଜା ! ଯାହା ହୋଇଗଲା ସେଥିପାଇଁ ଦୁଃଖ କରିବା ଅନାବଶ୍ୟକ । ଭାଗ୍ୟରେ ଯାହା ଅଛି, ତାହା ନିଶ୍ଚୟ ଫଳିବ । ତୁମର ଏଇ ରାଣୀ ରାଜକନ୍ୟା ନଥିଲେ ।" କପଟେ ସେ ମୂଷାରୁ ରାଣୀ ହୋଇପାରିଥିଲେ, ତାହା ରାଜାଙ୍କ ଆଗେ ବର୍ଣ୍ଣନା କରି ଶେଷରେ କହିଲେ—"ଆପଣ ଏଣିକି ପୂର୍ବ ରାଣୀଙ୍କୁ ଆଗପରି ପଟରାଣୀ କରନ୍ତୁ । ମୋର ଇଚ୍ଛା, ମୋର ଏହି କନ୍ୟାଟିର ନାଁ ଜଗତରେ ଅମର ହୋଇ ରହୁ । ତା'ର ଦେହଟିକୁ କୂଅରୁ ନ କାଢି କୂଅଟିକୁ ମାଟିରେ ପୂର୍ଣ୍ଣକରି ଦିଅ । ପୋସ୍ତକମଣିର ହାଡ଼ମାଂସରୁ ଏଇଠି ଗୋଟିଏ ଗଛ ହେବ । ତା'ର ନାମ ହେବ ପୋସ୍ତକ ଗଛ (ଅଫିମ ଗଛ) । ଏଇ ଗଛ ରସରୁ ଅଫିମ ବୋଲି ଗୋଟିଏ ଜିନିଷ ତିଆରି ହେବ । ଯିଏ ତାହାକୁ ଖାଇବ, ପୋସ୍ତକମଣି ଯେଉଁ ଛଅଟି ଜନ୍ତୁ ହୋଇଥିଲା, ସେଇ ଜନ୍ତୁମାନଙ୍କ ଗୁଣ ତା'ଠାରେ ପ୍ରକାଶ ପାଇବ । ମୂଷା ଭଳି ସେ ସମସ୍ତଙ୍କର ଅନିଷ୍ଟ କରିବ ଓ ବିଲେଇଭଳି ଦୁଧ ପ୍ରତି ହେବ ତା'ର ବେଶି ଲାଳସା । କୁକୁର ଭଳି ସେ କଳି କରିବ ଓ ମାଙ୍କଡ଼ ଭଳି ସେ ହେବ ଅପରିଷ୍କାର । ତା'ଛଡ଼ା ଘୁଷୁରି ଭଳି ସେ ହେବ ଅସଭ୍ୟ ଓ ରାଣୀଙ୍କ ଭଳି ହେବ ଉଚ୍ଚମନା ।" ଏହା କହି ଋଷି ଅନ୍ତର୍ଦ୍ଧାନ ହୋଇଗଲେ । ସେହିଦିନୁ ଅଫିମଖୋର ଲୋକଙ୍କଠାରେ ଏଇ ଲକ୍ଷଣଗୁଡ଼ାକ ଦେଖାଯାଏ ।

( ବଙ୍ଗଳା )



# ସପନ ଗଛ

ରଜାଙ୍କର ଦୁଇଟି ରାଣୀ । ବଡ଼ ରାଣୀର ଚାରି ପୁଅ, ସାନ ରାଣୀଙ୍କର ଗୋଟିଏ । ରଜା ପାଞ୍ଚ ପୁଅଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି; କିନ୍ତୁ ସାନ ପୁଅଟିର ସ୍ୱଭାବ ଥିଲା ସବୁଠାରୁ ଭଲ । ତେଣୁ ରଜା ତାଙ୍କୁ ବେଶି ଆଦର କରୁଥିଲେ ।

ଦିନେ ରାତିରେ ରଜା ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖିଲେ । ସଙ୍ଗେ ସଙ୍ଗେ ସେ ପାଞ୍ଚ ପୁଅଙ୍କୁ ଡ଼ାକି କହିଲେ—"ଆରେ ପିଲାଏ, ମୁଁ ଏବେ ସପନରେ ଗୋଟିଏ ବିଚିତ୍ର ଗଛ ଦେଖିଲି । ତାର ମୂଳରୁ ଡ଼ାଳ ପର୍ଯ୍ୟନ୍ତ ରୂପା ର ତିଆରି । ଡ଼ାଳଗୁଡ଼ିକ ସୁନାର, ପତ୍ର ଗୁଡିକ ହୀରାର । ସେଥିରେ ମୋତି ସବୁ ପେନ୍ଥା ପେନ୍ଥା ହୋଇ ଫଳିଛି । ସେଇ ଗଛ ଉପରେ ଶୁଆ ପକ୍ଷୀଟିଏ ବସିଛି । ପକ୍ଷୀଟି ଯେତେବେଳେ ଖୁସିରେ ବୋବାଉଛି, ସେତେବେଳେ ଗଛଟି ସତେଜ ଦିଶୁଛି; ମାତ୍ର ପକ୍ଷୀଟି ଯେତେବେଳେ ଦୁଃଖରେ ମୁହଁ ଶୁଖାଇ ଦେଉଛି, ସେ ତବେଳେ ଗଛଟି ଝାଉଁଳି ପଡ଼ୁଛି । ଏହି ସପନ ଗଛଟିକୁ ପାଇବାକୁ ମୋର ଭାରି ଇଚ୍ଛା । ଦୁଇବର୍ଷ ଭିତରେ ତୁମମାନଙ୍କ ଭିତରୁ ଯେ ସେ ଗଛଟିକୁ ଆଣିଦେବ, ମୁଁ ତାକୁଇ ରାଜଗାଦି ଦେବିବୋଲି ଭାବିଛି । ସେଥିପାଇଁ ଟଙ୍କା ସୁନା ଯାହା ଦରକାର ଭଣ୍ଡାରରୁ ତମେ ନେଇପାର ।"

ବଡ଼ରାଣୀର ଚାରି ପୁଅ ବହୁତ ଧନ ଦଉଲତ ନେଇ ସପନ ଗଛ ଖୋଜିବାକୁ ବାହାରି ପଡ଼ିଲେ । ସେମାନଙ୍କ ପଛେ ସାନ ପୁଅ ମଧ୍ୟ କିଛି ଟଙ୍କା ପଇସା ନେଇ ବାହାରି ପଡ଼ିଲା ।

ଯାଉ ଯାଉ ପାଞ୍ଚ ରାଜକୁମାର ଗୋଟିଏ ଜଙ୍ଗଲରେ ପହଞ୍ଚିଲେ । ସେଇଠି ବଡ଼ ଚାରିପୁଅ ସାନ ପୁଅଠାରୁ ସବୁ ଟଙ୍କା ପଇସା ଛଡ଼ାଇ ତାକୁ ଗୋଟିଏ କୂଅରେ ପକାଇଦେଲେ । କିଛି ଦୂର ଗଲାପରେ ସେମାନେ ଗୋଟିଏ ସହର ରେ ପହଞ୍ଚିଲେ । ସେଠିକାର ସବୁଠାରୁ ବଡ଼ ବଣିଆ ପାଖକୁ ଯାଇ

ତାଙ୍କୁ ରାଜାଙ୍କ କହିବା ମତେ ଗଛଟିଏ ଗଢ଼ିଦେବାକୁ ବରାଦକଲେ । ଦଶଲକ୍ଷ ଟଙ୍କାରେ ଗଛଟି ଗଢ଼ିଦେବ ବୋଲି ବଣିଆ କହିବାରୁ ରାଜପୁତ୍ରମାନେ ତାଙ୍କୁ ଲକ୍ଷ ଟଙ୍କା ବଇନା ଦେଇ ସେହି ସହରରେ ରହିଲେ ।

ଏଣେ ସାନ ରାଜପୁଅ କୂଅରେ ପଡ଼ି ଛଟପଟ ହେଉଥାଏ । ଏହି ସମୟରେ ଦଳେ ଗାଈଆଳ ଟୋକା କୂଅକୁ ପାଣି ପିଇବାକୁ ଆସିଲେ । କୂଅରେ ଜଣେ କିଏ ପଡ଼ିଛି ଦେଖି ସେମାନେ ଦୌଡ଼ି ପକାଇ ଉପରକୁ ଉଠାଇଲେ । ରାଜକୁମାର କହିଲା—"ଭାଇମାନେ, ତମ ଋଣ ମୁଁ ଶୁଝି ପାରିବିନି ।" ସେମାନଙ୍କୁ ଧନ୍ୟବାଦ ଦେଇ ସାନ ରାଜପୁଅ ଆଗକୁ ଚାଲିଲା । ଗୋଟିଏ ବଣ ପାଖରେ ଦେଖିଲା ଜଣେ ସାଧୁ ଶୋଇଛନ୍ତି । ସାଧୁ ସନ୍ଥଙ୍କ ପ୍ରତି ତାର ବହୁତ ଭକ୍ତି । ଶୁଣିଲା, ସେଇ ସାଧୁ ଛଅମାସ ଶୋଇରହନ୍ତି ଓ ଛଅମାସ ଚେଇଁ ରହନ୍ତି । ତାଙ୍କ ଚାରିପାଖେ ଲମ୍ବା ଲମ୍ବା ଘାସ ଉଠି ଯାଇଥାଏ ।

ରାଜକୁମାର ଘାସ ସବୁ ପରିଷ୍କାର କରି ସାଧୁଙ୍କ ପାଦ ଆଉଁଷିବାରେ ଲାଗିଗଲା । ନିଦରୁ ଉଠିବାକୁ ସାଧୁଙ୍କର ଆଉ ମାତ୍ର ତିନିଦିନ ବାକିଥାଏ । ତିନିଦିନ କାଳ ସେ ସାଧୁଙ୍କ ପାଦ ସେବାରେ ଲାଗିରହିଲା ।

ସାଧୁ ତିନିଦିନ ପରେ ଆଖି ଖୋଲିଲେ । ରାଜକୁମାର ପାଦସେବା କରୁଛି ଦେଖି ଖୁସି ହୋଇ କହିଲେ— "ଆରେ ପୁଅ, ମୁଁ ଜାଣେନା ତୁ କେଉଁଦିନୁ ମୋ ସେବାରେ ଲାଗିଛୁ । ଏବେ କ'ଣ ବର ମାଗୁଛୁ ମାଗ ।"

ରାଜକୁମାର କହିଲା—"ମହାରାଜ, ମୁଁ ମୋ ବାପାଙ୍କ ଲାଗି ସପନ ଗଛ ଖୋଜି ବାହାରିଛି ।" ଏହା କହି ସେ ରାଜା ଦେଖିଥିବା ସପନ ଗଛ ବିଷୟ ତାଙ୍କୁ ଜଣାଇଲା ।

ସାଧୁ କହିଲେ—"ଆରେ ବାବୁ, ମୁଁ ଜାଣି ନଥିଲି ତୁ ଏପରି କଠିନ ବର ମାଗିବୁ ବୋଲି । ଏପରି ଜିନିଷ ଦେବା ମୋ ଶକ୍ତି ବାହାରେ । ତୁ ମୋ ଗୁରୁଙ୍କ ପାଖକୁ ଯାଅ । ଏଇ ପାଖରେ ତାଙ୍କର କୁଡ଼ିଆ । ସେ ବର୍ଷେ କାଳ ଶୋଇ ରହନ୍ତି । ପୁଣି ବର୍ଷେ କାଳ ଚେଇଁ ରହନ୍ତି । ତାଙ୍କର ଦୟା ହେଲେ

ତୋହର ସପନ ଗଛ ମିଳିପାରିବ ।”

ସାଧୁଙ୍କୁ ପ୍ରଣାମକରି ସାନପୁଅ ଯାଇ ତାହାଙ୍କ ଗୁରୁଙ୍କ ପାଖେ ପହଞ୍ଚିଲା । ତାଙ୍କ ଶୋଇବା ଯାଗା ପାଖରୁ ବଣ ବୁଦା ସଫାକରି ସେ ପୂର୍ବପରି ସାଧୁଙ୍କ ପାଦସେବା କରିବାକୁ ବସିଗଲା ।

ସାଧୁଙ୍କ ନିଦ ଭାଙ୍ଗିବାକୁ ଆଉ ତିନିଶହ ଦିନ ବାକିଥାଏ । ନିଦ ଭାଙ୍ଗିଲାପରେ ରାଜାପୁଅକୁ ତାଙ୍କ ପାଦ ସେବା କରୁଥିବା ଦେଖି ସେ କହିଲେ– “ଆରେ ବାବୁ, ତୁ କେଉଁଦିନରୁ ମୋ ସେବାରେ ଲାଗିଛୁ ଜାଣେନା । ମୋତେ କି ବର ମାଗୁଛୁ ମାଗ ।”

ରାଜକୁମାର ତାହାଙ୍କୁ ସେଇ ସ୍ୱପ୍ନ ବୃକ୍ଷକଥା କହିଲା ।

ସାଧୁ କହିଲେ—“ଆରେ ଆରେ, ଏ ତ ମୋ ଶକ୍ତିର ବାହାରେ । ଯାହା ହେଉ, ମୁଁ ତୋତେ ତାହା ପାଇବାର ବାଟ ବତେଇ ଦେବି । ଏଠାରୁ ଅଳ୍ପ ଦୂରରେ ମୋ ଗୁରୁ ରହନ୍ତି । ତୁ ତାଙ୍କ ପାଖକୁ ଯାଆ । ସେ ତୋର ଇଚ୍ଛା ନିଶ୍ଚୟ ପୂର୍ଣ୍ଣ କରିଦେବେ । ସେ ଦୁଇବର୍ଷ ଶୁଅନ୍ତି ଓ ଦୁଇବର୍ଷ ଚେଇଁ ରହନ୍ତି । ଏବେ ତାଙ୍କ ନିଦ ଭାଙ୍ଗିବାକୁ ଆଉ ତିନିଶହ ଦିନ ବାକି ଅଛି ।”

ସାଧୁଙ୍କୁ ପ୍ରଣାମକରି ରାଜକୁମାର ତାହାଙ୍କ ଗୁରୁଙ୍କ ସ୍ଥାନରେ ପହଞ୍ଚିଲା । ସେଠିକାର ଜଙ୍ଗଲ ଘାସ ସଫାକରି ସେହିପରି ତାଙ୍କର ପାଦସେବା କଲା । ନିଦ ଭାଙ୍ଗିଲାପରେ ସାଧୁ ଖୁସି ହେଲେ । ରାଜକୁମାରଙ୍କୁ ବର ମାଗିବାକୁ କହିଲେ ।

ରାଜକୁମାର ତାଙ୍କୁ ସେଇ ସପନ ଗଛ ବୃତ୍ତାନ୍ତ କହିଲା ।

ସାଧୁ କହିଲେ—“ମୋ ପକ୍ଷେ ତୋତେ ଏଇ ବରଦେବା ବି ସହଜ ନୁହେଁ । ତୁ ଚିନ୍ତା କରନା । ମୁଁ ତାର ବାଟ ବତେଇ ଦେଉଛି । ଏଇ ପାଖରେ ଗୋଟିଏ ମନ୍ଦିର ଅଛି । ତୁ ସେଠାକୁ ଯାଇ ଠାକୁରଙ୍କୁ ପୂଜାକର । ଠାକୁର ତୋତେ ଗୋଟିଏ ମଣି ଦେବେ । ସେଇ ମଣିକୁ ନେଇ ତୁ ପାତାଳ-

ପୁରକୁ ଯିବୁ । ପାତାଳପୁରରେ ଦେଖିବୁ ଗୋଟିଏ ରାଜ ମହଲ । ସେଇ ମହଲରେ ରହିଛି 'ସପନ ଗଛ' ।"

ସାଧୁଙ୍କୁ ପ୍ରଣାମ କରି ସାନ ରାଜକୁମାର ସେଇ ଠାକୁରଙ୍କ ମନ୍ଦିରରେ ପହଞ୍ଚିଲା । ନିଷ୍ଠାରେ ଠାକୁରଙ୍କୁ ପୂଜା କରିବାରୁ ଠାକୁର ତାକୁ ଗୋଟିଏ ମଣି ଦେଲେ । ମଣିଟିକୁ ନେଇ ସେ ପାତାଳପୁରରେ ପହଞ୍ଚିଲା । ସତକୁ ସତ ସେଇଠି ଦେଖିଲା, ଗୋଟିଏ ସୁନ୍ଦର ରାଜମହଲ । ଫାଟକ ଜଗୁଆଳି ପଚାରିଲେ—"ତୁ କିଏ ସେ ? ଏଇଟା ପରି ମହଲ । ପରିଙ୍କ ଆଦେଶ ନପାଇଲେ କେହି ଏହା ଭିତରକୁ ଯାଇପାରିବେନି ।"

ରାଜକୁମାର କହିଲା—"ମୁଁ ମର୍ତ୍ତ୍ୟ ଲୋକରୁ ଆସିଛି । ଗୁରୁଙ୍କ ଆଜ୍ଞା, ମୁଁ ନିଶ୍ଚୟ ଏହା ଭିତରକୁ ଯିବି । ତୁମେ ଯାଇ ଭିତରୁ ବୁଝି ଆସ ।"

ପ୍ରହରୀ ଭିତରକୁ ଯାଇ ପରି ରାଣୀଙ୍କୁ ଏଇ କଥା ଜଣାଇଲା, ସେ ଅନୁମତି ଦେବାରୁ ରାଜକୁମାର ଭିତରକୁ ଗଲା । ଦେଖିଲା, ପ୍ରଥମ କୋଠରି ଉପରେ ଲେଖାହୋଇଛି "ରୂପା ପରି ମହଲ" ସେଇ ଘର ଭିତରର ସବୁ ଜିନିଷ ରୂପାର ତିଆରି । ରାଜକୁମାର ନିର୍ଭୟରେ ରୂପା ପରିଙ୍କ ନିକଟକୁ ଗଲା । ରୂପା ପରି ପଲଙ୍କ ଉପରେ ଶୋଇଥାନ୍ତି । ରାଜକୁମାରକୁ ଦେଖି ସେ ଉଠିପଡ଼ି କହିଲେ—"ଆରେ ତମେ ଆସିଛ ! ତୁମକୁ ସ୍ୱାମୀ ରୂପେ ପାଇବା ଲାଗି ମୁଁ କେତେଦିନରୁ ଅପେକ୍ଷା କରି ରହିଛି । ଆଜି ମୋର ଭାଗ୍ୟ; ତମେ ଦେବତାଙ୍କ ମଣି ପାଇ ମୋ ପାଖକୁ ଆସିଲ ।"

ରାଜକୁମାର କହିଲା—"ମୁଁ ତ ଆସିଲି, କିନ୍ତୁ ତୁମର କି ଗୁଣ ଅଛି, ତାହାତ ଜାଣେନା ।"

ରୂପାପରି କହିଲା—"ମୁଁ ସପନ ଗଛର ଗଣ୍ଡି ହୋଇ ଯାଇପାରିବି ।"

ରାଜକୁମାର କହିଲା—"ହଉ, ଏବେ ମୁଁ ବେଶି ସମୟ ରହି ପାରୁନି । ଏହା ଭିତରେ ଘୂରିଆଡ଼ ବୁଲି ବୁଲି କରି ଗୁରୁଙ୍କ ପାଖକୁ ମୋର ଫେରି ଯିବାର କଥା ।'

ରୂପାପଟା ପାଖରେ ଦିନଟିଏ ରହି ରାଜକୁମାର ସେଇ ମହଲର ଅନ୍ୟ ଆଡ଼କୁ ଦେଖିବାକୁ ଗଲା । ତା'ପରେ ସେ ଯାଇ ଯେଉଁ କୋଠରୀ ପାଖରେ ପହଞ୍ଚିଲା, ସେଇ ଘର ଉପରେ ଲେଖା ହୋଇଥିଲା 'ସୁନାପଟା ମହଲ' । ସୁନାପଟା ମହଲର ସବୁ ଜିନିଷ ସୁନାରେ ତିଆରି । ରାଜକୁମାର ସେଇ କୋଠରୀ ଭିତରକୁ ନିର୍ଭୟରେ ଗଲା ।

ସୁନାପଟା ପଲଙ୍କ ଉପରେ ଶୋଇଥିଲେ । ରାଜକୁମାରଙ୍କୁ ଦେଖି ସେ ଉଠିପଡ଼ି କହିଲେ—"ଓଃ ତମେ ଆସିଛ ! ତମକୁ ସ୍ୱାମୀ ରୂପେ ପାଇବା ଲାଗି ମୁଁ କେଉଁ କାଳରୁ ଅପେକ୍ଷା କରି ରହିଛି । ଭାଗ୍ୟର କଥା, ଠାକୁରଙ୍କ ମଣି ପାଇ ତମେ ଏଠାକୁ ଆସିଲ ।"

ସୁନାପଟା ରାଜକୁମାରଙ୍କୁ ଆଦରରେ ବସାଇଲା । ରାଜକୁମାର ତାର କି ଗୁଣ ଅଛି ବୋଲି ପଚାରିବାରୁ ସେ କହିଲା—"ମୋ ଗୁଣ ହେଉଛି, ରୂପାପଟା ଯଦି ସପନ ଗଛର ଗଣ୍ଡି ହୋଇଯିବ ତେବେ ମୁଁ ସୁନାର ଶାଖା ହୋଇ ସେଥିରେ ଲାଗିଯିବି ।"

ରାଜକୁମାର କିଛିଦିନ ସୁନାପଟା ପାଖରେ ରହି ମହଲର ଅନ୍ୟ ଅଂଶ ଦେଖିଯିବାକୁ ଇଚ୍ଛାକଲା । ସୁନାପଟା ତାକୁ ତୃତୀୟ କୋଠରୀର ବାଟ ଦେଖାଇଦେଲା । ରାଜପୁଅ ସେଠାକୁ ଯାଇ ଦେଖିଲା, ସେଠାରେ ଲେଖା-ହୋଇଛି 'ହୀରାପଟା ମହଲ' । ସେଇ ଘରର ସବୁ ଜିନିଷ ହୀରାରେ ତିଆରି । ରାଜକୁମାର ନିର୍ଭୟରେ ସେଇ କୋଠରୀ ଭିତରକୁ ଗଲା । ହୀରାପଟା ସେହିପରି ତାକୁ ଦେଖି ପଲଙ୍କରୁ ଉଠି ସୁନା ଓ ରୂପାପଟା ଭଳି ଆଦର ସତ୍କାର କଲା ଓ ସ୍ୱାମୀ ଭାବରେ ଗ୍ରହଣ କଲା । ତା'ର କଣ ଗୁଣ ଅଛି ପଚାରିବାରୁ ସେ କହିଲା-"ମୋ ଗୁଣ ହେଉଛି, ଯଦି ରୂପାପଟା ସପନ ଗଛର ମୂଳ ଓ ସୁନାପଟା ତାର ଡ଼ାଳ ହୋଇଯିବ, ତା'ହେଲେ ମୁଁ ସେଥିରେ ପତ୍ର ହୋଇ ଲାଗିଯିବି ।

ସାନ ରାଜପୁଅ ଖୁସି ହୋଇ ତା ପାଖରେ କିଛିଦିନ ରହିବା ପରେ ତାଠାରୁ ବିଦାୟ ନେଇ ମହଲର ଅନ୍ୟ ଅଂଶ ଦେଖିବାକୁ ବାହାରିଲା ।

ହୀରାପଖୀ ତାକୁ ମୋତିପଖୀର ମହଲ ଦେଖାଇ ଦେଲା । ମୋତିପଖୀ ମଧ୍ୟ ରାଜକୁମାରକୁ ସ୍ୱାମୀ ରୂପେ ଗ୍ରହଣ କରିବାକୁ ଆପଣାର ଗୁଣ କହିବାକୁ ଯାଇ କହିଲା— 'ମୁଁ ସପନ ଗଛରେ ମୋତି ଫେନ୍ନା ହୋଇ ଫଳରୂପେ ଲାଗିଯିବି । ରାଜକୁମାର ମୋତିପଖୀ ପାଖରେ କିଛିଦିନ ରହି ମହଲର ଶେଷ ଅଂଶ ଦେଖି ଯିବାକୁ ଚାହିଁଲା ।

ମୋତିପଖୀ ରାଜକୁମାରକୁ ଶୁଆପଖୀ ମହଲକୁ ପଠାଇ ଦେଲା । ସେହି କୋଠରୀର ସବୁ ଜିନିଷ ସବୁଜ ରଙ୍ଗର । ରାଜକୁମାର ସେହି ମହଲକୁ ଯିବାରୁ ଶୁଆପଖୀ ମଧ୍ୟ ତାକୁ ସ୍ୱାମୀ ଭଳି ଆଦର କଲା । ତାହାର କି ଗୁଣ ଅଛି ପଚାରିବାରୁ ସେ କହିଲା— "ରୂପାପଖୀ, ସୁନାପଖୀ, ହୀରାପଖୀ ଓ ମୋତିପଖୀ ମିଶି ଯଦି ସପନ ଗଛ ତିଆରି କରନ୍ତି, ତେବେ ମୁଁ ଶୁଆଟିଏ ହୋଇ ଯାଇ ସେହି ଗଛ ଉପରେ ବସିଯିବି । ମୋ ମନ ଖୁସି ରହିଲେ ସେ ଗଛଟି ସତେଜ ରହିବ । ତା ନ ହେଲେ ଗଛଟି ଝାଉଁଳି ପଡ଼ିବ ।"

ରାଜକୁମାର ଶୁଆପଖୀ ପାଖ ଖୁସିରେ କିଛିଦିନ ରହିବା ପରେ ଦିନେ କହିଲା— 'ଏଥର ମୋ ଗୁରୁଙ୍କ ପାଖକୁ ଫେରିଯିବାକୁ ପଡ଼ିବ ।'

ଶୁଆପଖୀ କହିଲା— 'ମୋତେ ତେବେ ତୁମ ସାଙ୍ଗରେ ନିଅ । ଶୁଆ-ପଖୀକୁ ସାଙ୍ଗରେ ନେଇ ରାଜକୁମାର ମୋତିପଖୀ ପାଖକୁ ଆସିଲା । ସେ ମଧ୍ୟ ରାଜକୁମାର ସଙ୍ଗରେ ଯିବାପାଇଁ ଚାହିଁଲା । ଏହାପରେ ରାଜକୁମାର ହୀରାପଖୀ, ସୁନାପଖୀ ଓ ରୂପାପଖୀକୁ ନେଇ ଦେଶକୁ ଯିବାକୁ ପାହିଲା । ପଖୀମାନଙ୍କୁ ପାଖ ର ବସାଇ କହିଲା— 'ମୋ ବାପାଙ୍କ ଲାଗି ସପନ ଗଛ ଖୋଜିବାକୁ ଆସି ତୁମ୍ଭମାନଙ୍କ ପାଖେ ପହଞ୍ଚିଲି । ତୁମେ ମୋତେ ସ୍ୱାମୀରୂପେ ଗ୍ରହଣ କରିଛ ଓ ମୁଁ ତୁମକୁ ସ୍ତ୍ରୀ ରୂପେ ଗ୍ରହଣ କରିଛି; ମାତ୍ର ଆଉ ଏଠାରେ ମୁଁ ବେଶି ସମୟ ରହି ପାରିବିନି । ଏଥର ତୁମେ ସମସ୍ତେ ତୁମ ଗୁଣ ଦେଖାଅ । ତା'ପରେ ଆମେ ସମସ୍ତେ ଦେଶକୁ ବାହାରିବା ।"

ଚାହୁଁ ଚାହୁଁ ମୁହୂର୍ତ୍ତକ ମଧ୍ୟରେ ରୂପାପଖୀ, ସୁନାପଖୀ, ହୀରାପଖୀ ଓ ମୋତିପଖୀ ମିଶି ସୁନାଗଛ ହୋଇଗଲେ । ଶେଷକୁ ଶୁଆପଖୀ ଉଡ଼ିକରି ଆସି

ସେହି ଗଛର ଶାଖା ଉପରେ ବସିଗଲେ । ପାଞ୍ଚପକ୍ଷୀଙ୍କ ଗୁଣ ଦେଖି ରାଜକୁମାର ଭାରି ଖୁସି ହୋଇଗଲା ଓ ସେମାନଙ୍କୁ ସାଙ୍ଗରେ ନେଇ ଗୁରୁଙ୍କ ପାଖରେ ପହଞ୍ଚିଲା ।

ଗୁରୁ ଆଶୀର୍ବାଦ କଲେ ଓ ମଣିଟିକୁ ମନ୍ଦିରର ଯେଉଁଠାରୁ ନେଇଥିଲା ସେଠାରେ ରଖିଦେବାକୁ କହିଲେ । ତାଙ୍କର ମଧ୍ୟ ସପନ ଗଛ ତିଆରି କରିଦେଲେ । ସାଧୁ ଏହି ଆଶ୍ଚର୍ଯ୍ୟ ଗଛ ଦେଖି ଭାରି ଖୁସି ହେଲେ ଓ ତାକୁ ଗୋଟିଏ କୁହୁକ ଲାଠି ଓ ଦଉଡ଼ି ଦେଇ କହିଲେ— "ଆରେ ବାବୁ ତୁ ତେବେ ତୋ ବାପାଙ୍କ ପାଖକୁ ଯାଇ ତାହାଙ୍କୁ ଏହି ଗଛ ଦେଖାଇ ଖୁସିକର । ଏହି ବାଡ଼ି ଓ ଦଉଡ଼ି ଥିଲେ ବାଟରେ କୌଣସି ଶତ୍ରୁ ତୋଠାରୁ ଏହି ପକ୍ଷୀଙ୍କୁ ନେଇଯାଇ ପାରିବେ ନାହିଁ ।"

ସାଧୁଙ୍କୁ ପ୍ରଣାମ କରି ରାଜକୁମାର, ପକ୍ଷୀ, ବାଡ଼ି ଓ ଦଉଡ଼ି ନେଇ ଦ୍ୱିତୀୟ ସାଧୁଙ୍କ ପାଖେ ପହଞ୍ଚିଲା । ସେ ମଧ୍ୟ ରାଜକୁମାର ଉପରେ ଖୁସି ହେଲେ ଓ ସପନ ଗଛ ଦେଖିବାକୁ ଇଚ୍ଛାକଲେ; ମାତ୍ର ସପନ ଗଛ ଦେଖିଲା ପରେ ତାଙ୍କର ଲୋଭହେଲା; ସେ ଭାବିଲେ, ମୁଁ ଏତେଦିନ ତପସ୍ୟା କରି ମଧ୍ୟ ଏପରି ଆଶ୍ଚର୍ଯ୍ୟ ଜିନିଷଟିଏ ପାଇପାରିଲି ନାହିଁ । ତାହାକୁ ପାଇବାଲାଗି ସେ ରାଜକୁମାରକୁ କହିଲେ— "ଆରେ ବାବୁ, ଏ ପକ୍ଷୀମାନଙ୍କୁ ମୋ ପାଖେ ଛାଡ଼ି ଯା ।" ତୋତେ ମୁଁ ଏହି କୁହୁକ କାଠବାଟି ଦେଉଛି । ଏହାର ଗୁଣ ହେଉଛି, ତୁ ଯେତେବେଳେ ଏହାକୁ କହିବୁ, ଏଥିରୁ ଅପୂର୍ବ ଖାଦ୍ୟ ବାହାରିବ ।"

ରାଜକୁମାର କହିଲା— "ମହାରାଜ, ଆପଣଙ୍କ ଅନୁଗ୍ରହରୁ ମୁଁ ଏତେ କଷ୍ଟକରି ଏହାକୁ ପାଇଛି । ତାହାକୁ ମୋ ବାପାଙ୍କୁ ଦେଖାଇବା ଲାଗି ନେଉଛି । ଆପଣ ଏହା ବିବେଚନା କରନ୍ତୁ ।" ସାଧୁ ରାଜକୁମାରର କୌଣସି କଥା ଶୁଣିବାକୁ ଚାହିଁଲେନି । ବିଚରା ରାଜକୁମାର ପାଞ୍ଚପକ୍ଷୀଙ୍କୁ ସେଠାରେ ଛାଡ଼ି ବାଟେ ବାଟେ ବାଡ଼ି ଦଉଡ଼ି ଓ କାଠବାଟିକୁ ନେଇ ଆଗକୁ ଚାଲିଲା । ପକ୍ଷୀମାନଙ୍କୁ ଛାଡ଼ିବାକୁ ତ ତା'ର ଆଦୌ ଇଚ୍ଛା ନ ଥାଏ । କିଛି ଦୂର ଗିବାପରେ ସେ ବାଡ଼ି ଦଉଡ଼ିକୁ ଆଦେଶ ଦେଲା—"ଯାଅ, ସାଧୁଙ୍କୁ ବାନ୍ଧି ପାଞ୍ଚପକ୍ଷୀଙ୍କୁ ନେଇ ଆସ ।"

ବାଡ଼ ଦଉଡ଼ ଦୁହେଁ ଯାଇ ସାଧୁଙ୍କୁ କହିଲେ— "ତୁମ ଗୁରୁଙ୍କ ଆଜ୍ଞା, ଆମେ ରାଜକୁମାରଙ୍କ କଥାମାନ ଚଳାଉ ! ! ପାଞ୍ଚପକ୍ଷୀଙ୍କୁ ଭଲରେ ଦିଅ । ନ ହେଲେ ଆମେ ଆମ କରାମତି ଦେଖାଇବୁ ।"

ସାଧୁ ବାଡ଼ ଦଉଡ଼କୁ ଦେଖି ଡ଼ରିଗଲେ । ସଙ୍ଗେ ସଙ୍ଗେ ପାଞ୍ଚପକ୍ଷୀଙ୍କୁ ଫେରାଇ ଦେଲେ । ପକ୍ଷୀମାନଙ୍କୁ ପାଇ ରାଜକୁମାର ସେମାନଙ୍କ ସହିତ ଆସି ଛ'ମାସ ଶୋଇଥିବା ସାଧୁଙ୍କ ପାଖରେ ପହଞ୍ଚିଲା । ସେ ମଧ୍ୟ ସପନ ଗଛ ଦେଖିବାକୁ ଇଚ୍ଛାକଲେ । ରାଜକୁମାର କହିବାରୁ ପକ୍ଷୀମାନେ ମିଶି ତାହାଙ୍କୁ ସପନ ଗଛ ଦେଖାଇଲେ । ଏଇ ଗୁରୁଙ୍କର ମଧ୍ୟ ପକ୍ଷୀଙ୍କୁ ଦେଖି ଲୋଭ ହେଲା । ସେ କହିଲେ— 'ଆରେ ବାବୁ, ତୁ ଏ ପକ୍ଷୀମାନଙ୍କୁ ମୋ ପାଖରେ ଛାଡ଼ିଦେ ।' ଏମାନଙ୍କ ବଦଳରେ ମୁଁ ତୋତେ କଠରାଟିଏ ଦେଉଛି । ଏହାର ଗୁଣ ଅଦ୍ଭୁତ । ଯେତେବେଳେ ଚାହିଁବୁ ଓ ଯେତେଲୋକଙ୍କ ପାଇଁ ଚାହିଁବୁ ଏଥିରୁ ଦ୍ରବ୍ୟ ଖାଇବା ଜିନିଷ ମିଳିପାରିବ ।" ସାଧୁଙ୍କୁ ବୁଝାଇବା ସତ୍ତ୍ୱେ ସାଧୁ ନ ବୁଝିବାରୁ ପକ୍ଷୀମାନଙ୍କୁ ସେଠାରେ ଛାଡ଼ି ରାଜକୁମାର ଆଗକୁ ଚାଲିଲା । କିଛିବାଟ ଗଲାପରେ ବାଡ଼ ଦଉଡ଼କୁ ଆଦେଶ ଦେଲା— "ଶୀଘ୍ର ଯାଇ ସାଧୁଙ୍କ ପାଖରୁ ପକ୍ଷୀମାନଙ୍କୁ ନେଇଆସ ।" ବାଡ଼ି ଦଉଡ଼ ଯାଇ ସାଧୁଙ୍କ କୁଡ଼ିଆକୁ ଘେରିଗଲେ । ବାଡ଼ ଦଉଡ଼ର କରାମତି ସାଧୁଙ୍କୁ ଜଣା । ସଙ୍ଗେ ସଙ୍ଗେ ସେ ପକ୍ଷୀମାନଙ୍କୁ ତାଙ୍କୁ ଜମା କରିଗଲେ ।

ଦୁଇବର୍ଷ ପୂରିବାକୁ ଅଳ୍ପ କେତେଦିନ ଥାଏ । ଶ୍ରେଷ୍ଠ ରାଜକୁମାର ପକ୍ଷୀଙ୍କୁ ନେଇ ଯୋଉ କୂଅରେ ତାକୁ ଭାଇମାନେ ଠେଲି ଦେଇଥିଲେ ସେହି-ଠାରେ ପହଞ୍ଚିଲା । ସେଇଠି ମୁହଁ ହାତ ଧୋଇ ବିଶ୍ରାମ କରୁଥାଏ । ଦୂରରୁ ଦେଖାଗଲା, ବଡ଼ଭାଇ ଘୋଡ଼ାରେ ବସି ଗୋଟିଏ ନଗରୁ ଆସୁଛନ୍ତି ।

ବଡ଼ଭାଇ ଆସି ସେଇଠି ପହଞ୍ଚିଲେ । ସେମାନେ ପଚାରିଲେ— "କିରେ, ତୁ କେଉଁଠାରୁ ଫେରିଲୁ ! ବାପାଙ୍କ ପାଇଁ ସପନ ଗଛ ଆଣିଛୁ ନା ନାହିଁ ?"

ଶ୍ରେଷ୍ଠ ରାଜକୁମାର ତ ଅତି ସରଳ; ଛନ୍ଦ କପଟ କ'ଣ ଜାଣେନା ସେ ଭାଇମାନଙ୍କୁ ଯାଇ ଯାହା ଘଟିଥିଲା କହିଲା । ଈର୍ଷାରେ ବଡ଼ଭାଇଙ୍କ ହୃଦୟ

ଜଳୁଥାଏ । ସେମାନେ କପଟ କରି ସ୍ତୋଟ ରାଜକୁମାରକୁ ପୁଣି ସେହି କୂଅକୁ ଠେଲିଦେଲେ । ପରୀମାନଙ୍କୁ ନେଇ ଦେଶକୁ ଚାଲିଗଲେ । ମାତ୍ର ପରୀମାନେ ଭାଇମାନଙ୍କ କଥା ମାନୁ ନ ଥାନ୍ତି । ବାପାଙ୍କ ପାଖରେ ପହଞ୍ଚି ବଡ଼ପୁଅ କହିଲେ— "ବାପା ଆମେ ଗୋଟିଏ ବଡ଼ ମହାଦେଶକୁ ଯାଇ ଦଶ ଲକ୍ଷ ଟଙ୍କାରେ ଜଣେ ଭଲ ବଣିଆଦ୍ୱାରା ସପନଟିଛ ତିଆରି କରି ଆଣିଛୁ । କହିବେ ଯଦି ଏଇକ୍ଷଣି ତାହା ଦେଖାଇବୁ ।"

ରାଜା କହିଲେ— "ଆଜି ଦିନଟିଏ ଅପେକ୍ଷା କର । କାଲିକୁ ଦୁଇବର୍ଷ ପୂରିବ । ସାନପୁଅ ତ ଆଜଯାଏ ଫେରିନାହିଁ । ତା'ପାଇଁ ମଧ୍ୟ ଆମେ ଅପେକ୍ଷା କରିବା ।"

ଏଣେ ରାଜକୁମାର ଯେଉଁ କୂଅରେ ପଡ଼ିଥିଲା, ସେଠାକୁ ଗାଈ ଚରାଳୀମାନେ ପିଇବାକୁ ଆସିଲେ । ସେମାନେ ତାକୁ କୂଅରୁ ଉଦ୍ଧାର କଲେ । ପଚାରିଲେ— "ଭାଇ, ତୁମେ କିଏ ? ତମକୁ ତ ଆଉଥରେ ଆମେ ଏଥିରୁ ଉଦ୍ଧାର କରିଥିବା ଭଳି ମନେ ହେଉଛି ।"

ସ୍ତୋଟ ରାଜକୁମାର କହିଲା— "ମୋ ଦୁଃଖ କଥା କ'ଣ କହିବି ? ମୋ ଭାଇମାନେ ମୋତେ ପୁଣି କୂଅକୁ ଠେଲି ଦେଲେ । ତୁମେମାନେ ମୋତେ ଦୁଇଥର ଏଇ କୂଅରୁ ଉଦ୍ଧାର କଲ । ଉପକାର କଲ । ଏ ଉପକାର ମୁଁ କିପରି ଶୁଝିବି ? ଡେଥର ଉଦ୍ଧାର କଲାବେଳେ ମୁଁ ଦେଇପାରି ନ ଥିଲି । ଏଥର ଭାବିଛି, ତୁମକୁ ଓ ତୁମ ସାଙ୍ଗ ଭାଇ କୁଟୁମ୍ବଙ୍କୁ ମଧ୍ୟ କିଛି ଖାଇବାକୁ ଦେବି । ଯାଅ, ସେମାନଙ୍କୁ ଡାକି ଆଣିବ ।"

ଗାଈଆଳ ପିଲାଏ ଗାଁକୁ ଯାଇ ତାଙ୍କ ବନ୍ଧୁ କୁଟୁମ୍ବମାନଙ୍କୁ ଡାକି ଆଣିଲେ । ରାଜକୁମାର ସେମାନଙ୍କୁ ବସିଯିବାକୁ କହିଲା । ସମସ୍ତେ କିଛି କିଛି ବୁଝିପାରୁ ନ ଥାନ୍ତି । ରାଜକୁମାର ତା ଅଳିରୁ କାଠରଟିକୁ କାଢି ସମସ୍ତଙ୍କୁ ଦ୍ରବ୍ୟ ଭୋଜନ ପରଷିବାକୁ ଆଦେଶ ଦେଲା ।

ମୁହୂର୍ତ୍ତକ ମଧ୍ୟରେ ସମସ୍ତେ ଦେଖିଲେ ପ୍ରତ୍ୟେକଙ୍କ ଆଗରେ ଦ୍ରବ୍ୟ

ଖାଦ୍ୟ ପଦାର୍ଥ ବଢ଼ା ହୋଇଯାଇଛି । ସମସ୍ତେ ଖାଇ ପିଇ ଖୁସିହୋଇ ରାଜ-କୁମାରଙ୍କୁ କଲ୍ୟାଣ କରି ଯେ ଯାହା ଘରକୁ ଗଲେ ।

ସାନ ରାଜକୁମାର ବାଡ଼ି ଦଉଡ଼ି ଓ କଟାରୀକୁ ନେଇ ବାପାଙ୍କ ପାଖରେ ପହଞ୍ଚିଲା । ଘରୁ ଗଲାଦିନଠାରୁ ଯାହା ଯାହା ଘଟିଥିଲା, ତାଙ୍କୁ ତାହା କହିଲା । ଚାରି ଭାଇଙ୍କ କାର୍ଯ୍ୟ ଶୁଣି ରାଜା ଖୁବ୍ ରାଗିଲେ ।

ପରଦିନ ଦରବାର ବସିଲା । କେତେ କେତେ ଲୋକ ଜମା ହୋଇଥାନ୍ତି । ରାଜା ପ୍ରଥମେ ବଡ଼ ଚାରି ପୁଅଙ୍କୁ ସପନ ଗଛ ଦେଖାଇବାକୁ କହିଲେ । ରାଜକୁମାର-ମାନେ ଦଶଲକ୍ଷ ଟଙ୍କାରେ ତିଆରି କରାଇଥିବା ଗଛଟିକୁ ଆଣି ରାଜାଙ୍କ ଆଗରେ ରଖିଲେ । ଗଛଟିର ମୂଳ ରୂପାର, ଶାଖା ସବୁ ସୁନାର ଓ ପତ୍ରସବୁ ହୀରାର । ସେଥିରେ ପେନ୍ଥା ପେନ୍ଥା ହୋଇ ମୋତିର ଫଳ ସବୁ ଝୁଲୁଥାଏ । ରାଜା ଏହାକୁ ଦେଖି କହିଲେ— 'ଗଛଟି ସିନା ଠିକ୍ ତିଆରି ହୋଇଛି, ମାତ୍ର ଏଥିରେ ତ ସେଇ ଶୁଆଟି ବସିନାହିଁ, ଯିଏ ଖୁସି ହେଲେ ଗଛଟି ହସି ଉଠିବ ଓ ଦୁଃଖ କଲେ ଗଛଟି ଝାଉଁଳି ପଡ଼ିବ ।'

ଏହାପରେ ରାଜା ସାନ ପୁଅକୁ ସପନ ଗଛ ଦେଖାଇବାକୁ କହିଲେ । ସାନପୁଅ କହିବା ମାତ୍ରେ ରୂପାପରି ଗଛର ମୂଳ ହୋଇଗଲା । ସୁନାପରି ସେଥିରେ ଡାଳ ହୋଇଗଲା ଓ ହୀରାପରି ସୁନା ଗଛର ଡାଳରେ ହୀରାପତ୍ର ହୋଇ ଝୁଲିଲା । ଶେଷରେ ମୋତି ପରି ସେଇ ଗଛରେ ପେନ୍ଥା ପେନ୍ଥା ହୋଇ ଝୁଲିଲା । ତାହାପରେ ଶୁଆ ପକ୍ଷୀ ଉଡ଼ିଆସି ତା ଉପରେ ଖୁସିରେ ବସି ପଡ଼ିଲା ଓ ଗଛଟି ତତ୍‌କ୍ଷଣାତ୍ ହସି ଉଠିଲା ଭଳି ଦିଶିଲା । ଏହି ସମୟରେ ଚାରି ରଜାପୁଅ ଖୁବ୍ ପାଟିତୁଣ୍ଡ କରି ସାନ ପୁଅକୁ ଏହା ଦେଖାଇବାରେ ବାଧା ଦେଉଥାନ୍ତି । ଏହା ଦେଖି ଶୁଆଟିର ମନ ଖରାପ ହେବାରୁ ରୁହୁଁ ରୁହୁଁ ସପନ ଗଛଟି ଝାଉଁଳି ପଡ଼ିଲା । ଏଇ ଆଶ୍ଚର୍ଯ୍ୟ ଦୃଶ୍ୟ ସମସ୍ତେ କାବା । ରାଜକୁମାରଙ୍କୁ ସମସ୍ତେ ଧନ୍ୟ ଧନ୍ୟ କହୁଥାନ୍ତି । ରାଜା ସମସ୍ତଙ୍କ ଆଗରେ ଘୋଷଣା କଲେ— "ମୋର ପୁଅମାନଙ୍କ ମଧ୍ୟରେ ସାନ ହିଁ ସବୁଠାରୁ ଯୋଗ୍ୟ । ମୋ ପରେ ସେ ରାଜ-ଗାଦିରେ ବସିବ । ବଡ଼ ଚାରିପୁଅ କେବଳ ଖୋରାକ ପୋଷାକ ପାଇବେ ।"

( ବାହାର )

# ଓଟ ଓ ବଲୁଆ

ଓଟ ଓ ବଲୁଆ ଦୁହେଁ ସାଙ୍ଗ । ବଣରେ ଗୋଟିଏ ପଟେ ଦୁହେଁଯାକ ନିତି ଦେଖା ହୁଅନ୍ତି ଦୁହିଁଙ୍କ ମଧ୍ୟରେ ଖୁବ୍ ବନ୍ଧୁତା ହେଲା । ବଲୁଆ ଯେମିତି ଚତୁର, ଧାଇଁ ପଳାଇବାରେ ସେହିପରି ଧୂରନ୍ଧର; ମାତ୍ର ଓଟର ଥିଲା ଖୁବ୍ ବଡ଼ର ବୁଦ୍ଧି ଓ ସେ ସହଜରେ ବିଚଳିତ ହେଉ ନ ଥିଲା । ବଲୁଆ ବେଶୀ ଚଳାକ ହୋଇଥିବାରୁ ଓଟର ଭଲ ପଣିଆର ସୁଯୋଗ ନେଉଥିଲା । ବେଳେ ବେଳେ ସେ ଓଟ ପିଠିରେ ବସିଯାଏ ଓ ଓଟକୁ ଏଣେତେଣେ ଧାଇଁବାକୁ କହେ । ଓଟ ସରଳ ବିଶ୍ୱାସରେ ବନ୍ଧୁର କଥା ମାନେ ।

ଦିନେ ବଲୁଆ କହିଲା— "ସଙ୍ଗାତ, ଏହି ନଈ ଆରପଟେ ଗୋଟିଏ କିଆରୀରେ ଖୁବ୍ ବଢ଼ିଆ ଆଖୁ ହୋଇଛି । ମତେ ପିଠିରେ ବସାଅ । ଚାଲ ଆମେ ନଈ ପାରହୋଇ ସେ ପଟକୁ ଯିବା, ଆଖୁ ଖାଇବା ।" ବଲୁଆ କଥାରେ ଓଟ ରାଜି ହୋଇଗଲା ।

ଦୁହେଁ ଯାଇ ଆଖୁ କିଆରୀରେ ପହଞ୍ଚି ମନଇଚ୍ଛା ଆଖୁ ଖାଇଲେ । ବଲୁଆ ତ ଛୋଟ ପ୍ରାଣୀଟାଏ । କେତେ ବା ଆଖୁ ଖାଇ ପାରିବ ? ଦୁଇ ଚାରିଖଣ୍ଡ ଆଖୁ ଖାଇଲା ପରେ ତା'ର ପେଟ ପୂରିଗଲା । ସେ ଦେଖିଲା ଓଟର ସେ ପର୍ଯ୍ୟନ୍ତ ଖାଇବା ଶେଷ ହୋଇନାହିଁ । ଓଟଲାଗି ବେଶୀ ସମୟ ଅପେକ୍ଷା କରିବାକୁ ହେବ । ମାତ୍ର ଅପେକ୍ଷା କରିବାପାଇଁ ତା'ର ଆଦୌ ଇଚ୍ଛା ନଥାଏ । ସେ କହିଲା— "ସଙ୍ଗାତ, ଚାଲ ଆମେ ଏଠୁ ପଳାଇବା ।"

ଓଟ କହିଲା— "ସଙ୍ଗାତ, ମୋ ଖିଆ ସରିବାଯାଏ ଟିକିଏ ଅପେକ୍ଷା କର ।" ମାତ୍ର ଧୂର୍ତ୍ତ ବଲୁଆ ମଜା ଦେଖିବା ଲାଗି ହଠାତ୍ ବୋବାଇବାକୁ ଆରମ୍ଭ କରିଦେଲା । କିଆରୀରେ ବଲୁଆ ରଡ଼ିଦେବା ଶୁଣି ଚାଷୀ ଗୋଟାଏ ବାଡ଼ି ଧରି ଧାଇଁ ଆସିଲା । ଚାଷୀକୁ ଦେଖି ବଲୁଆ ସହଜରେ ଖସି ଲୁଚିଗଲା ଓ ମାଡ଼ରୁ ରକ୍ଷା ପାଇଗଲା । ବିଚରା ଓଟ ଯାଏ କୁଆଡ଼େ ? କେଉଁଠି ଲୁଚିବା

ତା ପକ୍ଷେ ସମ୍ଭବ ନୁହେଁ । ଫଳରେ ଗ୍ଭଷୀଠାରୁ ଖ୍ୟାପଣ ମାଡ଼ ଖାଇବା ହିଁ ତା' ପକ୍ଷେ ସାର ହେଲା । ଧୈର୍ଯ୍ୟର ସହିତ ତାକୁ ସବୁ ସହିବାକୁ ପଡ଼ିଲା ।

ବିଲୁଆ ମୁହଁରେ ଆଖୁ ଖାଇବାର ମଜା ଲାଗିଛି । ତା' ପରଦିନ ସେ ପୁଣି ଆସି ଓଟକୁ କହିଲା— "ସଙ୍ଗାତ ! ଆଜି ବି ଗ୍ଭଲ ନଈ ପାରହୋଇ ଆରପଟକୁ ଯିବା, ଆଖୁ ଖାଇବା "

ଓଟ ରାଜିହୋଇ ବିଲୁଆକୁ ପିଠିରେ ବସାଇ ଚୁପ୍ ଚୁପ୍ ଗ୍ଭଲିଲା । ନଈରେ ପଶି ସେ ପହଁରିବାକୁ ଆରମ୍ଭ କରିଦେଲା । ଠିକ୍ ନଈ ମଝିରେ ପହଞ୍ଚି ସେ ଝୁଲିବାକୁ ଆରମ୍ଭ କଲା । ବିଲୁଆ ପାଟିକରି କହିଲା— "ସଙ୍ଗାତ, ଏପରି କରନାହିଁ, ମୁଁ ତଳକୁ ପଡ଼ିଯିବି ।"

ଓଟ କହିଲା— "ସଙ୍ଗାତ, କାଲି ଆଖୁ ଖାଇଲା ବେଳେ ତୁମର ଯେମିତି ବୋବେଇବାକୁ ଇଚ୍ଛା ହେଉଥିଲା, ସେମିତି ମୋର ଏବେ ଝୁଲିବାକୁ ଇଚ୍ଛା ହେଉଛି ।" ଏହା କହି ଓଟ ତାକୁ ପିଠି ଉପରୁ ପାଣିକୁ ଗଡ଼ାଇ ଦେଲା । ବିଲୁଆ ନଈ ପାଣିରେ ବୁଡ଼ି ମଲା ।

( ବିହାର )



# ପ୍ରତିଶୋଧ

ବାବନଗଡ଼ ରାଜ୍ୟର ରାଜା ଯଶୋରଙ୍କ ଦୁଇପୁଅ ଅଲହା ଓ ରୁଦଲ । ରାଜାଙ୍କ ସାନଭାଇ ତୋରରଙ୍କର ମଧ୍ୟ ଦୁଇପୁଅ ଝଗରୁ ଓ ଯାସନ । ରାଜା ଓ ତାଙ୍କ ସାନଭାଇ ମଧ୍ୟରେ ବିବାଦ ହେଲା । ସ୍ଥିର ହେଲା ରାଜ୍ୟଟିକୁ ଦୁହେଁ ସମାନ ଦୁଇଭାଗରେ ବାଣ୍ଟିନେବେ ।

ସବୁ ବଣ୍ଟା ହୋଇଗଲା, ମାତ୍ର ଗଣ୍ଡକ ନଦୀକୂଳରେ ଥିବା ପାଞ୍ଚଗୋଟି ଆମ୍ବଗଛର ବଗିଚାଟି ବଣ୍ଟା ହୋଇପାରିଲା ନାହିଁ । ସେହି ବଣ୍ଟା ଆଗରୁ କଳିହୋଇ ଶେଷରେ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯଶୋର ଓ ତୋରରଙ୍କ ଲଢ଼େଇରେ ତୋରର ମଲା । ତୋରରଙ୍କ ପୁଅ ଥିଲା ଗୋଟାଏ ଦୁଷ୍ଟ । ସେ ଏହାର ପ୍ରତିଶୋଧ ନେବାକୁ ଯାଇ ଯଶୋରଙ୍କୁ ମାରିଦେଲା । ଯଶୋରଙ୍କ ସ୍ତ୍ରୀ ଓ ଦୁଇପୁଅଙ୍କୁ ମଧ୍ୟ ମାରିଦେଇଥାନ୍ତା, ମାତ୍ର ଯୋଗକୁ ସେମାନେ ଉଆସରୁ ପଳାଇଯିବାରୁ ବର୍ତ୍ତିଗଲେ ।

ବିଧବା ରାଣୀ ପିଲାଦୁହିଁଙ୍କ ସହ ଲୁଚିକରି ଯାଇ ଗୋଟିଏ ଗାଁରେ ପହଞ୍ଚିଲେ । ସେଠି ଜଣେ ବିଧବାଙ୍କ ଘରେ ଆଶ୍ରୟ ନେଲେ । ଝଗରୁ ତାହା ଜାଣିପାରିଲା । ସେଇ ବିଧବା ଘରକୁ ପୋଡ଼ିଦେବାକୁ ଗୁପ୍ତରେ ତା ଲୋକଙ୍କୁ ପଠାଇଲା । ଏ କଥା ପଡ଼ିଗଲା । ବିଧବାଟି ଭୟରେ ରାଣୀ ଓ ତାଙ୍କ ପିଲାଙ୍କୁ ଘରୁ ତଡ଼ିଦେଲା । ରାଣୀ ଆଶ୍ରୟ ନେବାକୁ ଆପଣା ବନ୍ଧୁମାନଙ୍କ ଘରକୁ ଗଲେ, ମାତ୍ର ସେ ଯେଉଁ ବନ୍ଧୁ ଘରକୁ ଯାଆନ୍ତି, ଝଗରୁର ଲୋକଯାଇ ସେଠି ପହଞ୍ଚିଯାଆନ୍ତି । ରାଣୀ ପିଲାମାନଙ୍କୁ ନେଇ ସେଠାରୁ ଅନ୍ୟସ୍ଥାନକୁ ପଳାନ୍ତି । ଏହିପରି ଭାବେ ରାଣୀ ଆଉ କେଉଁ ବନ୍ଧୁଘରେ ରହିପାରିଲେ ନାହିଁ । ଶେଷକୁ ଦୁଇପିଲାଙ୍କୁ ନେଇ ସେ ଜଙ୍ଗଲରେ ପହଞ୍ଚିଲେ । ଭାବିଲେ, ଅରଣ୍ୟରେ ବୋଧହୁଏ ବଣ-ପଶୁଙ୍କ କବଳରେ ପଡ଼ି ତାଙ୍କ ଜୀବନ ଦୀପ ଲିଭିଯିବ ।

ମାତ୍ର ଭାଗ୍ୟର ଗତି ବିଚିତ୍ର । ବାରାଣସୀର ରାଜା ସେହି ବଣକୁ ଶିକାର କରିବାକୁ ଆସିଥିଲେ । ଯୋଗକୁ ସେ ରାଣୀ ଓ ତାଙ୍କ ପୁଅମାନଙ୍କୁ ଦେଖିବାକୁ ପାଇଲେ । ପରିଚୟ ଜାଣିଲାପରେ ସେମାନଙ୍କୁ ସଙ୍ଗେ ସଙ୍ଗେ ନିଜ ରାଜ୍ୟକୁ ନେଇଗଲେ । ସେଇଠି ଦୁଇବର୍ଷ ସେମାନେ ଶାନ୍ତିରେ ରହିଲେ ।

ରାଣୀ ଦୁଇପୁଅଙ୍କ ସହିତ ବାରାଣସୀରେ ରହୁଥିବା ବିଷୟ ଝଗରୁ ଜାଣିପାରିଲା । ସେ ରାଜାଙ୍କ ପାଖକୁ ଖବର ପଠାଇଲା—"ରାଣୀ ଓ ତାଙ୍କ ପୁଅଙ୍କୁ ରାଜ୍ୟରୁ ବାହାର କରିଦିଅ । ନଚେତ୍ ଏହାର ଫଳ ଭୟଙ୍କର ହେବ ।" ଆଶ୍ରୟ ଦେଇଥିବା ରାଜାଙ୍କର କୌଣସି ବିପଦ ନପଡୁ ଏଥିପାଇଁ ରାଣୀ ନିଜେ

ବାରାଣସୀ ଛାଡ଼ି ଅନ୍ୟ ଏକ ଦେଶକୁ ଚାଲିଗଲେ ।

ତାଙ୍କ ପୁଅ ଅଲହା ସେତେବେଳକୁ ବେଶ୍ ବଡ଼ ହୋଇ ଯାଇଥାଏ । ବଳୁଆ ସାହସୀ ଭାବେ ତା'ର ଖୁବ୍ ନାଁ ଡାକ । କେତେଦିନପରେ ସେ ନିଜ ଦଳବଳ ନେଇ ମୁକୁନ୍ଦଙ୍କ ମହୁଆଗଡ଼ ଅଧିକାର କଲା । ସେଇଠି ସେ ମା' ଓ ସାନ ଭାଇ ସହ ରହିଲା । ମା'ଠାରୁ ବାପାଙ୍କ ଅତ୍ୟାଚାରର କାହାଣୀ ଶୁଣି ସେ ସେଥିର ପ୍ରତିଶୋଧ ନେବାକୁ ମନେ ମନେ ପ୍ରତିଜ୍ଞା କଲା । ଦିନେ ଫକୀର ବେଶରେ ସେ ଯାଇ ବାବନ ଗଡ଼ରେ ପହଞ୍ଚିଲା । ସେଇଠି ଗୋଟାଏ ପୋଖରୀ ପାଖେ ପହଞ୍ଚି ଦେଖିଲା ପୋଖରୀ କୂଳରେ ଥିବା ଗୋଟାଏ ଗଛରେ ମଣିଷ କଙ୍କାଳଟିଏ ଝୁଲୁଛି । ଏହା କାହିଁକି ଝୁଲୁଛି ବୋଲି ପଚାରିବାରୁ ଜଣେ କହିଲା —"ଏଇଟା ହେଉଛି, ରାଜା ଯଶୋରଙ୍କ କଙ୍କାଳ । ରାଜାଙ୍କୁ ତାଙ୍କ ସାନଭାଇର ପୁଅ ଝଗରୁ ହାଣି ଦେଇଥିଲା । ଏବେ ବି ତା ରାଗ ଶାନ୍ତ ହୋଇନି । ପ୍ରତି ସପ୍ତାହରେ ଦିନେ ଏଠାକୁ ଆସି କଙ୍କାଳକୁ ଚାବୁକ ନ ମାରିଲେ ତା ମନବୋଧ ହୁଏ ନାହିଁ । ଆଜି ତା'ର ଏଠାକୁ ଆସିବା ପାଳି ।"

ଅଲହା କଙ୍କାଳ ବନ୍ଧା ହୋଇଥିବା ସେହି ଗଛ ପାଖରେ ପହଞ୍ଚିଲା । ବାପାଙ୍କ କଙ୍କାଳକୁ ଚାହିଁ ନିଜ ଆଖିରୁ ତା'ର ଦୁଇଧାର ଲୁହ ବୋହିପଡ଼ିଲା । ଭାବିଲା, ଏଠୁ ଏହି କଙ୍କାଳଟା ନେଇଯିବ । ମାତ୍ର ସେହି କଙ୍କାଳ ଭିତରୁ ତା ବାପାଙ୍କ ଆତ୍ମା କହିଲା— "ଆରେ ପୁଅ, ଏଠୁ କେହି ନ ଥିବାବେଳେ ମୋ କଙ୍କାଳ ନେଇଗଲେ ତୋର କି ଗୌରବ ? ଲୋକେ ତୋତେ ଚୋର କହିବେ । ବାହୁବଳରେ କଙ୍କାଳକୁ ନେଲେ ସିନା ତୋ ମାନ ବଢ଼ିବ ।"

ଏଣେ ଝଗରୁ ଶୁଣିଲା, କିଏ ଜଣେ ବିଦେଶୀ ଆସି ପୋଖରୀ କୂଳ କଙ୍କାଳ ପାଖରେ ଠିଆହୋଇଛି । ସଙ୍ଗେ ସଙ୍ଗେ ସେ ସେହି ପୋଖରୀ କୂଳକୁ ଆସିଲା । ଫକୀର ବେଶ ହୋଇଥିଲେ ବି ସେ ଅଲହାକୁ ଚିହ୍ନିପାରିଲା । ସାମାନ୍ୟ ବିଳମ୍ବ ହୋଇଥିଲେ ସେ ଅଲହାକୁ ମାରି ଦେଇଥାନ୍ତା; ମାତ୍ର ଅଲହାକୁ ଏତିକିବେଳେ ଗୋଟିଏ ଘୋଡ଼ା ମିଳିଗଲା । ସେ ସେହି ଘୋଡ଼ାରେ ବସିପଡ଼ି ଘୋଡ଼ାକୁ ଛୁଟେଇ ଦେଲା । ମହୁଆ ଗଡ଼ରେ ଆସି ପହଞ୍ଚି ସେ ଘୋଡ଼ାଟାର

ଲାଗିଗଲା । ବହୁ ସୈନ୍ୟ ସଂଗ୍ରହ କରି ସେ ଦିନେ ଯାଇ ବାବନ ଗଡ଼ ଆକ୍ରମଣ କଲା । ଅଲହା ଓ ଝଗରୁ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ପ୍ରଥମେ ଅଲହା ହାରିଗଲା, ମାତ୍ର ପରେ ସେ ଜିତିଲା, ଝଗରୁ ଯୁଦ୍ଧରେ ମଲା ।

ଅଲହା ପିତୃରାଜ୍ୟ ଫେରି ପାଇଲା । ଭାଇ ଓ ମାଆକୁ ନେଇ ଖୁସିରେ ରହିଲା ।

( ବିହାର )



# ପୁଅ ହେଲା ମାଙ୍କଡ଼

ସୁରେନ୍ଦ୍ର, ବ୍ରହ୍ମାନନ୍ଦ ଦୁହିଁଙ୍କ ଘର ଗୋଟିଏ ଗାଆଁରେ । ଦୁହିଁଙ୍କର ଜମିବାଡ଼ି ଅଳ୍ପ; କଷ୍ଟେ ମଷ୍ଟେ ଚଳନ୍ତି । ଦିନେ ସୁରେନ୍ଦ୍ର ବ୍ରହ୍ମାନନ୍ଦଙ୍କୁ କହିଲା— "ଆରେ ଭାଇ, ଆମେ ତ ଦୁଃଖରେ ଚଳୁଛେ । ଆଉ କେତେଦିନ ଏପରି ମାଗି ଯାଚି ଚଳିବା ? ଚାଲ, ସହରକୁ ଚାଲିଯିବା, ସେଠି ଚାକିରି ବାକିରି କରିବା । କିଛି ପଇସା ଜମେଇଲା ପରେ ଗାଆଁକୁ ଫେରି ଆସିବା ।'

ବ୍ରହ୍ମାନନ୍ଦ କହିଲା— 'ହଉ' । ବିଦେଶକୁ ଯିବେ ବୋଲି ଦୁହେଁ ପ୍ରସ୍ତୁତ ହେଲେ । ଦିନ ସ୍ଥିର ହୋଇଗଲା । ବ୍ରହ୍ମାନନ୍ଦ ଘରେ କେବଳ ତା'ର ବୁଢ଼ୀ ମାଆଟିଏ । ବ୍ରହ୍ମାନନ୍ଦ ମାଆକୁ କହିଲା— "ଆଲୋ, ମାଆ, ମୁଁ ବିଦେଶ ଯାଉଛି; କିଛିଦିନ ବାଦ ତୋ ପାଖକୁ ଟଙ୍କା ପଠାଇବି— ଏବେ ତୁ ମାଗିଯାଚି କଷ୍ଟେ ମଷ୍ଟେ ଚଳୁଥା ।"

ସୁରେନ୍ଦ୍ର ଘରେ ତା'ର ସ୍ତ୍ରୀ ଓ ଗୋଟିଏ ପୁଅଟିଏ । ସେ ମଧ୍ୟ ସେହିପରି ତା' ସ୍ତ୍ରୀକୁ କହି ଘରୁ ବାହାରିଲା । ସୁରେନ୍ଦ୍ର ବ୍ରହ୍ମାନନ୍ଦ ଦୁହେଁ ବିଦେଶକୁ ଗଲେ । ଯୋଗକୁ ସେମାନଙ୍କୁ ସେଠି ଚାକିରି ମିଳିଗଲା । ଅଳ୍ପ କେତେଦିନ ଭିତରେ ଦୁହେଁ କିଛି ପଇସା ପତ୍ର ବି ଜମେଇ ପାରିଲେ ।

ସୁରେନ୍ଦ୍ର ଘରେ ସ୍ତ୍ରୀ ପୁଅକୁ ଛାଡି ଆସିଥାଏ । ବିଦେଶରେ ରହି କାମ କରିବାରେ ତା'ର ମନ ଲଗିଲା ନାହିଁ । ସେ ଘରକୁ ଫେରିଯିବ ବୋଲି ସ୍ଥିର କଲା । ବ୍ରହ୍ମାନନ୍ଦକୁ କହିଲା— "ଭାଇ, ମୁଁ ଆଉ ଏଠି ଚାକିରି କରିବି ନାହିଁ; କାଲି ଗାଆଁକୁ ଯିବି ବୋଲି ଠିକ୍ କରିଛି । ମାଲିକଙ୍କଠାରୁ ମୋର ପାଉଣା ସବୁ ନେଇ ଆସିଛି । ତୋର ଯଦି ମାଆ ପାଖକୁ କିଛି ଦେବାର ଥାଏ ମୋ ହାତରେ ଦେଇପାରୁ ।"

ବ୍ରହ୍ମାନନ୍ଦ ତାକୁ ଦୁଇଟି ସୁନା ମୋହର ଦେଇ କହିଲା— "ଏଇ ସୁନା ମୋହର ଦୁଇଟି ନେ, ମାଆକୁ ଦେବୁ । କହିବୁ, ମୁଁ ଛଅ ମାସ ପୂରିଲେ ଗାଆଁକୁ ଯିବି । ସେ'ତ ପଢି ଜାଣେନା, ଚିଠି କ'ଣ ଦେବି ? ତାକୁ ମୋ କଥା ସବୁ କହିବୁ ।

ସୁରେନ୍ଦ୍ର ଗାଆଁକୁ ଗଲା । ଗାଆଁରେ ପହଞ୍ଚି ଯାହା ଟଙ୍କା ପଇସା ନେଇଥିଲା ସେଥିରେ ଦୋକାନଟିଏ କଲା । ସେ ଗାଆଁରେ ପହଞ୍ଚିବା ଖବର ବ୍ରହ୍ମାନନ୍ଦର ମାଆ ଶୁଣିଲା । ବ୍ରହ୍ମାନନ୍ଦ ଘରକୁ ଆସି ସେ ପଚାରିଲା—"ହଇରେ ପୁଅ, ତୁ ତ ଫେରିଲୁ, ମୋ ପୁଅ କେବେ ଫେରିବ ? ତା' ଦେହ ଭଲ ଅଛି ?"

ସୁରେନ୍ଦ୍ର କହିଲା— "ହଁ, ସେ ଖୁବ୍ ଭଲରେ ଅଛି । ଖାଇପିଇ ବେଶ୍ ଟଙ୍କା ଜମାଉଛି । ଛଅ ମାସ ପୂରିଲେ ସେ ଫେରିବ ବୋଲି କହିଛି ।"

ମାଆ ପୁଣି କହିଲା— "ହଉ, ଭଗବାନ ତାକୁ ଭଲରେ ରଖିଥାଆନ୍ତୁ । କେତେଦିନରୁ ଗଲଣି, ମୋପାଇଁ କିଛି ଟଙ୍କା ପଇସା ତୋ ହାତେ ପଠାଇଲା ନାହିଁ ?"

ସୁରେନ୍ଦ୍ର କହିଲା— "ଆରେ ହଁ, ମୁଁ ତ ଭୁଲି ଯାଇଥିଲି । ମୋ ପୁଅ ମୋତେ ଦୁଇଟା ଟଙ୍କା ଦେଇଥିଲା ତୋତେ ଦେବାକୁ । ହେଇ, ନେଇଯା ।" ଏହା କହି ସେ ଘର ଭିତରୁ ଦୁଇଟି ଟଙ୍କା ଆଣି ବୁଢ଼ୀକୁ ଦେଲା ।

ବୁଢ଼ୀ ବିଚରା ବଡ଼ ଦୁଃଖରେ ଚଳୁଥିଲା । ପୁଅ ମୋଟେ ଦୁଇଟା ଟଙ୍କା ପଠେଇଛି ଦେଖି ବହୁତ ଦୁଃଖ କଲା । ଟଙ୍କା ଦୁଇଟି ଧରି ମନ ଦୁଃଖରେ ଘରକୁ ଫେରିଗଲା ।

ଛଅ ମାସ ବିତିଗଲା । ବ୍ରହ୍ମାନନ୍ଦ ସେତେବେଳେକୁ ବେଶ ପଇସା ପତ୍ର ଜମାଇ ସାରିଥାଏ । ସେ ଗୃହକୁ ଫେରି ଗାଆଁକୁ ବାହାରିଲା । ଗାଆଁରେ ପହଞ୍ଚି ମାଆକୁ ଦେଖି ତା'ର ବହୁତ ଦୁଃଖ ହେଲା । ଖାଇବାକୁ ନ ପାଇ ମାଆ କଣ୍ଟା ପକ୍ଷୀ ହୋଇ ଯାଇଥାଏ । ଚାଲିବାକୁ ବଳ ନ ଥାଏ । ମାଆର ଏପରି ଅବସ୍ଥା ଦେଖି ବ୍ରହ୍ମାନନ୍ଦ ପଚାରିଲା— "ମାଆ, ତୁ କାହିଁକି ଏତେ ଦୁର୍ବଳ ହୋଇ ଯାଇଛୁ ?"

ମାଆ କହିଲା— "ତୁ ଛଅମାସ ହେଲା ଗଲୁଣି । ଘରେ କ'ଣ ଖାଇବାକୁ ରଖି ଯାଇଥିଲୁ ଯେ ଖାଇଥାନ୍ତି ? ମାଗି ଆଣିଲା ଟିଅଣ ତ ଯୋଉକାରେ । ଏଥିରେ ଦୁର୍ବଳ ହେବି ନାହିଁ ତ ଆଉ କ'ଣ ?"

ପୁଅ ପଚାରିଲା— ସଙ୍ଗାତ ସୁରେନ୍ଦ୍ର ତତେ କିଛି ଦେଇ ନାହିଁ ?

ମାଆ କହିଲା— "ଆରେ ତୁ' ତ ତା' ହାତରେ ଦୁଇଟା ଟଙ୍କା ପଠେଇଥିଲୁ । ସେଥିରେ କ'ଣ ମୁଁ କ୍ଷୀରି ପୁରି ଖାଇ ଛଅମାସ ଚଳିଥାନ୍ତି ? ତୁ ପଠେଇଥିବା ଟଙ୍କାକୁ ମୁଁ ସେହି ଠଣାରେ ରଖି ଦେଇଛି ।"

ବ୍ରହ୍ମାନନ୍ଦ ସୁରେନ୍ଦ୍ରର ବଦ୍‌ମାସ ବୁଝିପାରିଲା । ମାଆ ଝଡ଼ିଯିବାର କାରଣ ଜାଣିପାରିଲା । ସ୍ଥିର କଲା, ସେ ଏହାର ପ୍ରତିଶୋଧ ନେବ । ମାଆକୁ କହିଲା— "ହଉ, ମାଆ, ମୋର ଭୁଲ ହୋଇଯାଇଛି । ଏଥର ତୋର କିଛି ଅଭାବ ରହିବ ନାହିଁ ।

କେତେଦିନ ପରେ ସୁରେନ୍ଦ୍ର ନିଜ ଘରକୁ ଲଗାଇ ଘରଟିଏ ତିଆରି କଲା । ଯାହା ଟଙ୍କା ପଇସା ଆଣିଥିଲା ସେଥିରେ ଚାଟଶାଳୀଟିଏ ଖୋଲିଲା । ଭଲ ପଢ଼ାଉଥିବାରୁ ଆଖପାଖରୁ ଅନେକ ପିଲା ଆସି ତା' ଘରେ ନିତି ପାଠ ପଢ଼ିଲେ । ଏମିତି ସୁରେନ୍ଦ୍ର ଚଳି ଯାଉଥାଏ ।

ଦିନେ ସୁରେନ୍ଦ୍ର ବ୍ରହ୍ମାନନ୍ଦ ଘରକୁ ଆସିଲା । କହିଲା— 'ହଇଓ ସଙ୍ଗାତେ ! ତମେ ତ ବେଶ୍ ଭଲରେ ଅଛ । ପିଲଙ୍କୁ ପାଠ ଶିଖାଇ ମଣିଷ କରୁଛ । ଏହାଠୁଁ ଆଉ ଭଲ କଥା କ'ଣ ଅଛି ? ହଉ, ଏବେ ମୋ ପୁଅଟି କଥା ଟିକିଏ ବୁଝ । ତାକୁ ତମ ଘରେ ରଖି ପଢ଼ାଅ । ପିଲାଟିର କିଛି ଜ୍ଞାନ ହଉ ।"

ବ୍ରହ୍ମାନନ୍ଦ କହିଲା— "ସଙ୍ଗାତ ! ପିଲଙ୍କ ଲାଗି ତ ମୁଁ ଏଇ ପାଠଶାଳା କରିଛି । ପାଠ ପଢ଼ାଇବା ତ ମୋର ଜୀବିକା । କାହାକୁ ପଢ଼େଇବାକୁ ବା ମୁଁ ମନା କରିବି କାହିଁକି ?"

ସୁରେନ୍ଦ୍ର ଖୁସିହୋଇ କେତେଦିନ ପରେ ତା' ପୁଅକୁ ଆଣି ବ୍ରହ୍ମାନନ୍ଦ ପାଠଶାଳାରେ ଛାଡ଼ି ଦେଇଗଲା । ବ୍ରହ୍ମାନନ୍ଦ ଭାବିଲା, ଏଥର ସୁରେନ୍ଦ୍ରକୁ ଠିକଣା ପାଠ ଦେବ । ତା' ପୁଅ ତ କିଛି ଦୋଷ କରିନାହିଁ, ତା'ର ଅନିଷ୍ଟ କରିବ କାହିଁକି ? ସୁରେନ୍ଦ୍ରକୁ ଏପରି ଶିକ୍ଷାଦେବ ଯେ ସେ ଯାବଜ୍ଜୀବନ ମନେ ରଖିଥିବ । ଏହା ଭାବି ସେ ଦିନେ ସନ୍ଧ୍ୟାବେଳେ ସୁରେନ୍ଦ୍ରର ପୁଅକୁ ହାତରେ ନେଇ ଚୁପ୍‌ଚାପ ଘରୁ ବାହାରିପଡ଼ିଲା । ପାଖ ଗାଆଁରେ ଥିବା ଜଣେ ବନ୍ଧୁଙ୍କ ଘରେ ପହଞ୍ଚି ପିଲାଟିକୁ ବନ୍ଧୁଙ୍କ ଜିମାରେ ରଖି କହିଲା— "ଏହି ପିଲାଟି ତୁମ ଘରେ କେତେଦିନ ପାଇଁ ରହିବ । ଏକଥା ଯେପରି କେହି ନ ଜାଣିବେ । ଠିକ୍ ସମୟରେ ଆସି ମୁଁ ତାକୁ ନେଇଯିବି ।"

କେତେଦିନ ଗଲାଗଲା । ଦିନେ ସୁରେନ୍ଦ୍ର ତା' ପୁଅକୁ ଦେଖିବାଲାଗି ବ୍ରହ୍ମାନନ୍ଦ ଘରକୁ ଆସିଲା । ବ୍ରହ୍ମାନନ୍ଦ ପୁଅକୁ ଆଣିବା ଲାଗି ଘର ଭିତରକୁ ଗଲା । ଘରୁ ଦଉଡ଼ିରେ ବନ୍ଧା ହୋଇଥିବା ମାଙ୍କଡ଼ ଛୁଆଟିଏ ଆଣି ସୁରେନ୍ଦ୍ର ଆଗରେ ବସାଇ ଦେଲା । ମାଙ୍କଡ଼କୁ ଦେଖି ସୁରେନ୍ଦ୍ର କହିଲା— "ସଙ୍ଗାତେ,

ଏଇ ମାଙ୍କଡ଼ଟା କ'ଣ ଆଣିଲ ? ମୋ ପୁଅ କାହିଁ ?"

ବ୍ରହ୍ମାନନ୍ଦ କହିଲ—"କ'ଣ ଦେଖିପାରୁନ ? ଏଇ ପରା ତୁମର ପୁଅ । ପ୍ରଥମେ ସେ ଠିକ୍ ଥିଲ; ହେଲେ ଏଇ କେତେଦିନ ହେବ ସେ ମୋ ପାଖେ ରହି ମାଙ୍କଡ଼ ହୋଇଯାଇଛି । ମୁଁ କ'ଣ କରିବ ?"

ସୁରେନ୍ଦ୍ର ରାଗି ନିଆଁମେର ହୋଇ ଉଠିଗଲ । ଗାଆଁର ମୁଖିଆଙ୍କ ପାଖରେ ପହଞ୍ଚି କାନ୍ଦ କାନ୍ଦ କହିଲ—"ଆଜ୍ଞା ! ମୋ କଥା ବୁଝନ୍ତୁ । ପାଠ ପଢ଼ିଇବ ବୋଲ ବ୍ରହ୍ମାନନ୍ଦ ପାଖରେ ମୁଁ ମୋ ପୁଅକୁ ଛାଡ଼ିଥିଲ । ପୁଅ ବଦଳରେ ସେ ମୋତେ ଗୋଟାଏ ମାଙ୍କଡ ଦେଉଛି ।"

ମୁଖିଆ ବ୍ରହ୍ମାନନ୍ଦକୁ ଡକାଇଲେ । ତାଙ୍କୁ ଏ ବିଷୟ ପଚାରିବାରୁ ସେ କହିଲ—"ହଁ ଏହି ମାଙ୍କଡ଼ ହେଉଛି ତା' ପୁଅ । ସେ ପୁଅଟା ମୋ ପାଖରେ ରହି ମାଙ୍କଡ ହୋଇଗଲ ।"

ସୁରେନ୍ଦ୍ର କହିଲ—"ଏ କଥା କେବେ ହୋଇପାରିବ ନାହିଁ । ତୁମେ ନିଶ୍ଚେ ମୋ ପୁଅକୁ କେଉଁଠି ଲୁଚେଇଛ । ମୋ ପୁଅ ମାଙ୍କଡ଼ ହେବ କେମିତି ?"

ବ୍ରହ୍ମାନନ୍ଦ କହିଲ—"ଯଦି ସୁନା ମୋହର ରୂପା ଟଙ୍କା ହୋଇ ଯାଇ ପାରେ, ତେବେ ମୋ ପୁଅ ମାଙ୍କଡ଼ ହୋଇ ନ ଯିବ କାହିଁକ ?"

ବ୍ରହ୍ମାନନ୍ଦ ଠାରୁ ଏପରି ଶୁଣି ମୁଖିଆ କହିଲେ—"ପଣ୍ଡିତେ ! ତୁମ କଥା ତ ମୁଁ କିଛି ବୁଝିପାରୁ ନାହିଁ । ପ୍ରକୃତ କଥା କ'ଣ ଖୋଲାକରି କୁହନ୍ତୁ ।"

ବ୍ରହ୍ମାନନ୍ଦ କହିଲ—"ଆଜ୍ଞା ! ପ୍ରାୟ ବର୍ଷକ ପୂର୍ବେ ମୁଁ ଓ ସୁରେନ୍ଦ୍ର ଚାକିରି କରିବାଲାଗି ବିଦେଶକୁ ଯାଇଥିଲୁ । ସେଠାରୁ ସୁରେନ୍ଦ୍ର ଆଗେ ଗାଁକୁ ଆସିଲ । ମୁଁ ତା' ହାତରେ ଦୁଇଟି ସୁନା ମୋହର ଦେଇଥିଲି, ମୋ ମାଆକୁ ଦେବାକୁ । କିନ୍ତୁ ସେ ସୁନା ମୋହରକୁ ରଖି ମୋ ମାଆକୁ ରୂପା ଟଙ୍କା ଯୋଡ଼ାଏ ଦେଲ । ଏବେ ଏହାର ପୁଅ ମୋ ପାଠଶାଳାକୁ ଆସି ଯଦି ମାଙ୍କଡ଼ ହୋଇଯାଏ, ତେବେ ମୁଁ କ'ଣ କରିବ ?"

ଏହାପୂର୍ଣି ମୁଖିଆ ସବୁକଥା ବୁଝିପାରିଲେ । ରାଗିଯାଇ ସୁରେନ୍ଦ୍ରକୁ ପଚାରିଲେ— "କଓ ସୁରେନ୍ଦ୍ର ! ଏ କଥା କ'ଣ ସତ ?"

ବିଚରା ସୁରେନ୍ଦ୍ର ଗୁଣ୍ଡୁ ଗୁଣ୍ଡୁ ହୋଇ କହିଲା— "ଆଜ୍ଞା ! ମୋର ଭୁଲ ହୋଇଯାଇଛି । ସେ ଯାହା କହିଲେ ତାହା ଠିକ୍ । ମୁଁ ସଙ୍ଗେ ସଙ୍ଗେ ତାଙ୍କ ସୁନା ମୋହର ଆଣି ଦେଉଛି । ଦୟାକରି ତାଙ୍କୁ କହି ମୋ ପୁଅକୁ ଅଣେଇ ଦିଅନ୍ତୁ ।" ଏହା କହି ସେ ଘରକୁ ଯାଇ ମୋହର ଦୁଇଟି ଆଣି ବ୍ରହ୍ମାନନ୍ଦ ହାତରେ ଦେଲା ।

ବ୍ରହ୍ମାନନ୍ଦ ଖୁସି ହୋଇ କହିଲେ— "ଦେଖ, ବଣ୍ଟାଦରେ ଏମିତି ବିଷ ମିଶାଇବାଟା ଅତି ଖରାପ । ଆଉ କେବେ ଏପରି କରିବ ନାହିଁ । ତୁମ ଯୋଗୁଁ ମୋ ମାଆ ଖାଇବାକୁ ନ ପାଇ ଦରମରା ହୋଇ ରହିଥିଲା । ଏଣୁ ତୁମପାଇଁ ଏମିତି ବ୍ୟବସ୍ଥା ହୋଇଥିଲା । ମୋ ସଙ୍ଗେ ଚାଲ, ମୁଁ ତୁମ ପୁଅକୁ ଦେଇଦେବି ।

ଭେଜପୁର ( ବିହାର )



# ମନ୍ତ୍ରୀଙ୍କ ବୁଦ୍ଧି ପରୀକ୍ଷା

ରାଜା କୃଷ୍ଣଦେବ ରାୟଙ୍କ ନାମ ଅପ୍ରାଜ୍ଞ । ସେ ଥିଲେ ଖୁବ୍ ବୁଦ୍ଧିମାନ । ଏକଥା ଦିଲ୍ଲୀର ସୁଲତାନଙ୍କ କାନକୁ ଗଲା । ଥରେ ମନ୍ତ୍ରୀଙ୍କର ବୁଦ୍ଧି ପରୀକ୍ଷା କରିବାପାଇଁ ଏକ ଉପାୟ ପାଞ୍ଚିଲେ । ଜଣେ ଭଲ କାରିଗର ଦ୍ୱାରା ତମ୍ବାରେ ଠିକ୍ ଏହାଭଳି ତିନୋଟି ମୂର୍ତ୍ତି ଗଢାଇଲେ । ସେଇ ମୂର୍ତ୍ତି ତିନୋଟି ମଧ୍ୟରୁ କେଉଁଟି ଉତ୍ତମ, କେଉଁଟି ମଧ୍ୟମ ଓ କେଉଁଟି ସବୁଠାରୁ ଖରାପ ତାହା ପରୀକ୍ଷା କରି ଜଣାଇବା ଲାଗି ସେ କୃଷ୍ଣଦେବ ରାୟଙ୍କ ଦରବାରକୁ ସେଗୁଡ଼ିକୁ ଜଗୁଆଲୀଙ୍କ ମାର୍ଫତରେ ପଠାଇଦେଲେ ।

କୃଷ୍ଣଦେବ ରାୟଙ୍କ ଦରବାରରେ ମୂର୍ତ୍ତିଗୁଡ଼ିକ ପହଞ୍ଚିଲା । ରାଜା ନିଜେ ମୂର୍ତ୍ତିଗୁଡ଼ିକ ବାରମ୍ବାର ପରୀକ୍ଷା କରି ଦେଖିଲେ । ମାତ୍ର ତିନୋଟିଯାକ ଏକା ଭଳି, ଟିକିଏ ହେଲେ କୌଣସି ପାର୍ଥକ୍ୟ ଜଣାଗଲା ନାହିଁ । ଜଣା ପଡୁଥିଲା, ଯେପରି ଜଣେ କାରିଗର ଗୋଟିଏ ଛାଞ୍ଚରେ ମୂର୍ତ୍ତିଗୁଡ଼ିକ ତିଆରି କରିଛି । ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ଦରବାରର ଅନ୍ୟମାନେ ମଧ୍ୟ ପାର୍ଥକ୍ୟ ଜାଣିବାଲାଗି ଅନ୍ୟମାନେ ମଧ୍ୟ ପାର୍ଥକ୍ୟ ଜାଣିବାଲାଗି ଚେଷ୍ଟା କଲେ; ମାତ୍ର କେଉଁଟି ଉତ୍ତମ, କେଉଁଟି ମଧ୍ୟମ ଓ କେଉଁଟି ଅଧମ ତାହା ଠିକ୍ କରିପାରିଲେ ନାହିଁ ।

ତା'ପରେ ରାଜା ମନ୍ତ୍ରୀ ଅପ୍ପାଜୀଙ୍କୁ ଡକାଇଲେ । ଦିଲ୍ଲୀ ସୁଲତାନ ପଠାଇଥିବା ମୂର୍ତ୍ତିମାନଙ୍କ ବିଷୟ ତାଙ୍କୁ କହିଲେ । ମନ୍ତ୍ରୀ ମୂର୍ତ୍ତିଗୁଡ଼ିକ କିଛି ସମୟ ଦେଖି କହିଲେ— "ଆଜ୍ଞା, ମୋତେ ଆଜି ମୂର୍ତ୍ତିଗୁଡ଼ିକ ଘରକୁ ନେବାକୁ ଅନୁମତି ମିଳୁ । ଏଗୁଡ଼ିକ ମୁଁ ଭଲ ଭାବରେ ପରୀକ୍ଷା କରି କାଲି ଆପଣଙ୍କୁ ଏହାର ଫଳ ଶୁଣାଇ ଦେବି ।

ପରଦିନ ମନ୍ତ୍ରୀ ଏହି ମୂର୍ତ୍ତିଗୁଡ଼ିକ ହାତରେ ଧରି ଦରବାରକୁ ଆସିଲେ । ମନ୍ତ୍ରୀ କହିଲେ— "ମହାରାଜ ! ମୁଁ ଏହି ତିନୋଟି ମୂର୍ତ୍ତିକୁ ପରୀକ୍ଷା କଲି । ସେଥିରୁ ଏହିପରି ଭାବେ ତିନୋଟି ମୂର୍ତ୍ତିକୁ ଉତ୍ତମ ମଧ୍ୟମ ଓ ଅଧମ ଭାବେ ବାଛି ଦେଇଛି— ଏହା କହି ତିନୋଟି ମୂର୍ତ୍ତିକୁ ଆଗପଛ କରି ରାଜାଙ୍କ ସାମନାରେ ରଖିଦେଲେ । ରାଜା ମଧ୍ୟ ସେଗୁଡ଼ିକ ଦେଖି ଏହାର ପାର୍ଥକ୍ୟ ବୁଝି ନ ପାରି ପଚାରିଲେ— 'କିପରି ଏହା ତୁମେ କରିଛ ମୋତେ ବୁଝାଇ ଦିଅ ।'

ମନ୍ତ୍ରୀ କହିଲେ— "ମହିମା ! ଖୁବ୍ ଭଲ ଭାବରେ ମୂର୍ତ୍ତିଗୁଡ଼ିକ ପରୀକ୍ଷା କରି ମୁଁ ପ୍ରତ୍ୟେକଟି ମୂର୍ତ୍ତିରୁ କାନରେ ଛିଦ୍ର ହୋଇଥିବା ଦେଖିଲି । ଗୋଟିଏ ମୂର୍ତ୍ତିର କାନରେ ତାରଟିଏ ଭର୍ତ୍ତି କରି ଦେଖିଲି ତାହା ମୂର୍ତ୍ତିଟିର ମୁହଁବାଟେ ବାହାରି ଆସିଲା । ଅନ୍ୟ ଗୋଟାଏ ମୂର୍ତ୍ତିର କାନରେ ତାର ଭର୍ତ୍ତିକରି ଦେଖିଲି ତାହା ମୂର୍ତ୍ତିଟିର ଅନ୍ୟ କାନବାଟେ ବାହାରି ଆସିଲା । ତୃତୀୟ ମୂର୍ତ୍ତିଟିର କାନରେ ତାର ପୂରାଇବାରୁ ତାହା କୌଣସି ବାଟେ ବାହାରିଲା ନାହିଁ ।

ଏଥିରୁ ହିଁ କେଉଁ ମୂର୍ତ୍ତିଟି ସବୁଠାରୁ ଭଲ, କେଉଁଟି ମଧ୍ୟମ ଓ କେଉଁଟି ନିକୃଷ୍ଟ ତାହା ଠିକ୍ କରିପାରିଛି ।

ରାଜା ପଚାରିଲେ— "ଏଥିରୁ କିପରି ଉତ୍ତମ, ମଧ୍ୟମ, ଓ ଅଧମ ଜାଣିଲ ତାହା ମଧ୍ୟ ଆମେ ଠିକ୍ କରି ପାରୁନାହୁଁ ।"

ମନ୍ତ୍ରୀ କହିଲେ— "ମହାରାଜା ଯେଉଁ ମୂର୍ତ୍ତିର ମୁହଁବାଟେ ତାରଟି ବାହାରି ଆସିଲା, ସେଥିରୁ ସେହି ମୂର୍ତ୍ତିଟି ଯାହାର ତାହାର ଚରିତ୍ର ଜଣାପଡ଼ିଲା । ତାର ଅଭ୍ୟାସ ହେଉଛି, ସେ ଯାହା ଶୁଣିବ ତାହା ମନରେ ନରଖି ଗୁରିଆଡ଼େ କହିବ । ଯେଉଁ ଲୋକ ପେଟରେ କୌଣସି କଥା ରଖିପାରେନା ତାକୁ ମନ୍ଦ ଲୋକ ଭାବରେ ଗଣାଯାଏ । ଏଣୁ ସେହି ମୂର୍ତ୍ତିଟିକୁ ମୁଁ ସବୁଠାରୁ ଖରାପ ବୋଲି ବିବେଚନା କଲି ।

ଦ୍ୱିତୀୟ ମୂର୍ତ୍ତିଟିର ଗୋଟିଏ କାନରେ ତାର ଦେଲେ ଅନ୍ୟ କାନରେ ତାହା ବାହାରି ଆସେ । ଏହାର ଅର୍ଥ ହେଉଛି, ଏହି ଲୋକଟି ଗୋଟିଏ କାନରେ ଯାହା ଶୁଣେ ତାହା ଅନ୍ୟ କାନରେ ବାହାର କରିଦିଏ । କିଛି ମନରେ ରଖେନାହିଁ । ଏଣୁ ସେ ଗୋଟିଏ ଉତ୍ତମ ଧରଣର ଲୋକ । ତୃତୀୟ ମୂର୍ତ୍ତିର କାନରେ ତାର ପୂରାଇଲେ ତାହା କୌଣସି କଥା ଶୁଣିଲେ, ତାହା ମନରେ ରଖିନିଏ । ଲୋକଙ୍କୁ ଉତ୍ତମ ଶ୍ରେଣୀର ଲୋକ ଭାବରେ ଗଣାଯାଇଥାଏ । ଏହି ଧରଣର ଲୋକ କଥାରୁ ସାରତତ୍ତ୍ୱ ଗ୍ରହଣ କରନ୍ତି । ବାହାରେ ସବୁ ମନୁଷ୍ୟ ସମାନ ଦେଖାଯାଇ ପାରନ୍ତି । ମାତ୍ର ମନୁଷ୍ୟର ପାର୍ଥକ୍ୟ ତାର ଆତ୍ମା ଓ ମନରେ ରହିଛି ।"

ରାଜା କୃଷ୍ଣଦେବ ରାୟ ଓ ତାହାଙ୍କ ଦରବାରର ଲୋକମାନେ ଏହାଶୁଣି ଓ ମୂର୍ତ୍ତିଗୁଡ଼ିକୁ ପରୀକ୍ଷା କରି ଦେଖି ଆନନ୍ଦିତ ହେଲେ । ମନ୍ତ୍ରୀଙ୍କୁ ବହୁତ ପୁରସ୍କାର ଦିଆଗଲା । ସଙ୍ଗେ ସଙ୍ଗେ ମୂର୍ତ୍ତିର ନିମ୍ନରେ କିଏ ଉତ୍ତମ କିଏ ମଧ୍ୟମ ଓ କିଏ ଖରାପ ତାହା ଲେଖି ରାଜା କୃଷ୍ଣଦେବ ଏଗୁଡ଼ିକ ଦିଲ୍ଲୀର ସୁଲତାନଙ୍କ ପାଖକୁ ପଠାଇଦେଲେ ।

ସୁଲତାନ ଏଗୁଡ଼ିକ ଦେଖି ମନ୍ତ୍ରୀଙ୍କ ବୁଦ୍ଧି କିପରି ସରସ ତାହା ବୁଝି ପାରିଲେ ।

( ଆନ୍ଧ୍ର )

# ଚତୁର ତେନାଲି ରାମ

ବିଜୟ ନଗରର ରାଜା କୃଷ୍ଣଦେବ ରାୟଙ୍କ ଦରବାରରେ ଜଣେ ଚତୁର ଓ ବୁଦ୍ଧିମାନ ବ୍ୟକ୍ତିଥିଲେ । ତାଙ୍କ ନାଁ ତେନାଲି ରାମ । କଥା କହି ସମସ୍ତଙ୍କୁ ହସାଇବାରେ ସେ ଥିଲେ ଧୁରନ୍ଧର ।

ଥରେ ରାଜା ତେନାଲି ରାମଙ୍କ ଉପରେ ଖୁବ୍ ରାଗିଗଲେ । କହିଲେ— "ଯାଅ, ମୋତେ ଆଉ ତୁମେ ମୁହଁ ଦେଖାଇବ ନାହିଁ ।"

ତା'ପରଦିନ ତେନାଲି ରାମ ଆପଣା ମୁହଁକୁ ଗୋଟିଏ ମୁଖାରେ ଘୋଡ଼ାଇ ରାଜାଙ୍କ ଦରବାରରେ ଆସି ପହଞ୍ଚିଲେ । ତାଙ୍କୁ ଏପରି ଦେଖି ଦରବାରରେ ଲୋକମାନେ ହସିବାକୁ ଲାଗିଲେ । ରାଜା ମଧ୍ୟ ତେନାଲି ରାମଙ୍କ ଏପରି ବେଶ ଦେଖି ଆହୁରି ରାଗିଗଲେ । ଦୁଆରୀଙ୍କୁ ଆଦେଶ ଦେଲେ— ଏହାକୁ ବନ୍ଦୀକରି ହାଜତରେ ପକାଇ ଦିଅ ।"

ତେନାଲି ରାମ ଅତି ବିନୟରେ ପଚାରିଲେ — "ମହାରାଜ୍ ମୋର ଅପରାଧ ?"

ରାଜା କହିଲେ—"ମୁଁ ପରା ତୁମକୁ କହିଥିଲି ମୋତେ ଆଉ ମୁହଁ ଦେଖାଇବ ନାହିଁ । କେଉଁ ସାହସରେ ତୁମେ ପୁଣି ଏଠାକୁ ଆସିଲ ?"

ତେନାଲି ରାମ ପୂର୍ବ ଅପେକ୍ଷା ଆହୁରି ନମ୍ର ଭାବରେ କହିଲେ— "ମହାରାଜ୍ , ମୋର ଅପରାଧ କ୍ଷମା କରନ୍ତୁ । ମୁଁ ଆପଣଙ୍କ ଆଦେଶକୁ ହିଁ ପାଳନ କରିଛି । ଆପଣ କାଳେ ମୋ ମୁହଁକୁ ଦେଖି ପାରିବେ ସେଥିପାଇଁ ମୁଁ ମୁହଁକୁ ମୁଖାରେ ଢ଼ାଙ୍କି କରି ଆସିଛି ।"

ରାମଙ୍କ କଥା ଶୁଣି ସବୁଏ ହସି ଉଠିଲେ ରାଜାଙ୍କର ରାଗ ମଧ୍ୟ ଉଣା ହୋଇଗଲା ।

ରାମ ଏଥର ରାଜାଙ୍କ ଦରବାରରେ ବେଶ୍ ଆରାମରେ ରହିଲେ । ରାଜାଙ୍କ ଅନୁଗ୍ରହରୁ ବେଶ୍ ଟଙ୍କା ପଇସା ବି ପାଇଲେ ବିଜୟ ନଗରର ହିଜର ଘର ଦୁଆର ବାଡ଼ ବଗିଚ୍ଚ କରିଥାଆନ୍ତି । ଦିନେ ରାତିରେ ରାମ ସ୍ତ୍ରୀଙ୍କ ସହିତ କଥାବାର୍ତ୍ତା ହେଉଥାନ୍ତି । ଜାଣିପାରିଲେ ପଞ୍ଚାଏ ଚୋର ତାଙ୍କ ଘରେ ଚୋରି କରିବାକୁ ଛକିଛନ୍ତି । ପାଚେରି ଆରପଟେ ଲୁଚି ଫୁସ୍ ଫୁସ୍ ହେଉଛନ୍ତି ।

ସେ ସ୍ତ୍ରୀଙ୍କୁ ପାଖକୁ ଡାକିଲେ । ଚୋରଙ୍କୁ ଶୁଣାଗଲା ଭଳି ଉଚ୍ଚ ସ୍ୱରରେ କହିଲେ—"ହେଇ ଦେଖ ଆଜି କାଲି ସହରରେ ବହୁତ ଚୋର ମାଡ଼ିଛନ୍ତି । ସେମାନଙ୍କ ଯୋଗୁ ଘରଭିତରେ ଜିନିଷପତ୍ର ରଖିବାକୁ ବି ଲୋକେ ଡରିଲେଣି । ଯାହାର ଯାହା ମାଲମତା ଅଛି ସେମାନେ ପୋତାପୋତି କରି ଦେଇଛନ୍ତି । ଚାଲ ଆମେ ବି ସେମିତି ଗୋଟାଏ କାମ କରିବା । ଆମର ଯାହା କିଛି ସୁନା ରୂପା ଦାମିକା ଜିନିଷ ଅଛି ତାକୁ ଗୋଟାଏ ବଡ଼ବାକ୍ସରେ ପୂରାଇ ବଗିଚ୍ଚରେ ଥିବା କୂଅ ଭିତରକୁ ପକାଇ ଦେବା । ଏକଥା ଯେମିତି ଆଉ କେହି ନ ଜାଣନ୍ତି ।"

ଚୋରମାନେ ଏହା ଶୁଣି ଖୁବ୍ ଖୁସି ହୋଇଗଲେ । ରାମ ଗୋଟାଏ ବଡ଼ ବାକ୍ସ ଆଣି ସେଥିରେ ଇଟା, ପଥର ପ୍ରଭୃତି ଏଣୁ ତେଣୁ ବାଜେ ଜିନିଷ-ଗୁଡ଼ାଏ ଭର୍ତ୍ତିକରି ଦେଲେ । ତା'ପରେ ସେ ସେଇ ବାକ୍ସଟି ନେଇ କୂଅରେ ପକାଇଦେଲେ କୂଅରେ ବାକ୍ସଟି ପଡ଼ିବାରୁ ଶବ୍ଦ ହେଲା । ଚୋରମାନେ ଜାଣିଲେ ତେନାଲିରାମ ତାଙ୍କ ଦାମିକା ଜିନିଷଥିବା ବାକ୍ସଟିକୁ କୂଅରେ ପକାଇଦେଲେ ବୋଲି । ଏଣେ ତେନାଲି ରାମ ବାକ୍ସଟି କୂଅରେ ପକାଇ-ଦେଇ ଘରକୁ ଫେରିଆସି ସବୁଦିନ ଭଳି ଆରାମରେ ଶୋଇଲେ ।

ରାତି ବେଶି ହେଲା । ଚୋରମାନେ ଲୁଚିଥିବା ଜାଗାରୁ ବାହାରି ସେଇ କୂଅ ନିକଟକୁ ଆସିଲେ । କୂଅଟି ଖୁବ୍ ଗହୀରିଆ । ଭାବିଲେ କୂଅରୁ କିପରି ବାକ୍ସଟି କାଢ଼ିବା । ରାତିରେ କୂଅ ଭିତରକୁ ପଶି ଓହ୍ଲାଇବାକୁ କାହାରି ସାହାସ ହେଲାନାହିଁ । ସ୍ଥିରହେଲା କୂଅପାଣି ଶୁଖାଇ ବାକ୍ସଟି କାଢ଼ିବେ । ତେଣୁ ସେମାନେ ଗରା, ବାଲଟି, ଦଉଡ଼ି ଆଣି କୂଅରୁ ପାଣି

ବୁହାଇବାକୁ ଆରମ୍ଭକଲେ; ମାତ୍ର ସେଇ କୂଅଟାରେ ବହୁତ ପାଣି । ଯେତେ ପାଣି କାଢିଲେ ବି କୂଅରୁ ପାଣି ଶୁଖିଲାନାହିଁ । ଚୋରମାନେ ପାଣି ବୁହାଇ ବୁହାଇ ଥକିଗଲେ । ପାଣି ବୁହାଉ ବୁହାଉ ପାହାନ୍ତା ହୋଇଆସିଲା । ହଠାତ୍ ଏତିକି ବେଳେ ରାମଙ୍କ ବାଡ଼ି ଦୁଆର ଫିଟିଲା । ଭିତରୁ ରାମଙ୍କ ପାଟି ଶୁଭିଲା— "ଆରେ ଭାଇ ! ମୋ ବଗିଚା ଗଛଗୁଡ଼ାକ ଯଥେଷ୍ଟ ପାଣି ପାଇଗଲେଣି । ଆଉ କାହିଁକି ପାଣି ଦେଉଛ ?"

ଚୋରମାନେ ରାମଙ୍କ ପାଟି ଶୁଣି ଯେ ଯୁଆଡ଼େ ପଳାଇଗଲେ ।

ଆଉ ଥରେ ରାଜା ତେନାଲି ରାମଙ୍କ ଉପରେ ଭୀଷଣ ରାଗିଯାଇ କହିଲେ- "ଏଇ ଲୋକଟାକୁ ନଣ୍ଡକୂଳକୁ ନେଇ ମାଟିରେ ପୋତି ତା ମୁଣ୍ଡକୁ ହାତୀ- ହାତୀ ଦଳାଦିଅ ।"

ସଙ୍ଗେ ସଙ୍ଗେ ରାଜାଙ୍କ ପାଇକ, କଣ୍ଟିଆଳ ରାମଙ୍କୁ ନଣ୍ଡ କୂଳକୁ ଧରି- ନେଲେ । ସେଠାରେ ଗାତ ଖୋଳି ତାଙ୍କୁ ବେକ ପର୍ଯ୍ୟନ୍ତ ପୋତିଦେଲେ । ତାଙ୍କ ବେକଠାରୁ ମୁଣ୍ଡ ପର୍ଯ୍ୟନ୍ତ କେବଳ ବାହାରକୁ ଦିଶୁଥାଏ । ବିପଦରେ ଧୈର୍ଯ୍ୟଧରିବା କଥା । ଏତେ ବିପଦରେ ପଡ଼ି ମଧ୍ୟ ରାମ ମନରୁ ଦମ୍ଭ ଓ ସାହସ ଛାଡ଼ିନଥାନ୍ତି ।

ପାଇକମାନେ ରାମଙ୍କୁ ପୋତିଦେଇ ହାତୀଟିଏ ଆଣିବା ଲାଗି ହାତୀଶାଳକୁ ବାହାରିଲେ । ଏହା ଦେଖି ରାମ କହିଲେ—"ଭାଇମାନେ, ମୋତେ ପ୍ରବଳ ଶୋଷହେଉଛି, ମୁନ୍ଦାଏ ପାଣି ଦିଅ ।"

ରାମଙ୍କ କଥାରେ ପାଇକମାନଙ୍କର ବିଶ୍ୱାସ ହେଲାନାହିଁ । ରାମଙ୍କ ଭଳି ଲୋକକୁ ବା କେଉଁ ବିଶ୍ୱାସ ! ଜଣେ କହିଲା—"ଶୋଷହେବା କଥା ମିଛ— ଡରରେ ମରିବା ଲାଗି ତୁମର ଏଇଟା ଗୋଟାଏ ଫିକର । ଯା'ହେଉ, ଆମେ ଫେରିଲାବେଳେ ତୁମ ପାଇଁ ପାଣି ଆଣିବୁ । ତମେ ପାଣି ପିଇସାରିଲା ପରେ ତୁମ ମୁଣ୍ଡକୁ ହାତୀ ପାଦରେ ଦଳାଦିଆଯିବ ।"

ରାମ କହିଲେ—"ନାଇଁ ଭାଇ, ଏବେ ଶୋଷରେ ମୋ ଛାତି ଫାଟି-

ଯାଉଛି । ତୁମେ ଫେରିଲ୍‌ବେଳକୁ ଡେରି ହେବ—ସେତେବେଳକୁ ମୁଁ ହୁଏତ ମରିଯାଇଥିବି । ଏଣୁ ତମେ ରାଜାଙ୍କ ଆଦେଶକୁ ଠିକ୍‌ଭାବରେ ପାଳିବା ସମ୍ଭବ ହେବନାହିଁ । ଓଲଟି ରାଜା ତୁମକୁ ଦଣ୍ଡିବେ । ଏଣୁ ମୋତେ ଆଗ ପାଣି ଦେଇଯାଅ ।”

ତେନାଲିରାମ କଥାରେ ପାଇକମାନଙ୍କର ବିଶ୍ୱାସ ଜନ୍ମିଲା । ସେମାନେ ପାଖ ରେ ଥିବା ନଈଘାଟକୁ ଗଲେ । ଦେଖିଲେ, ସେଠାରେ ଜଣେ କୁଜା ଧୋବା ଲୁଗା କାଚୁଛି । ସେମାନେ ତାକୁ କହିଲେ-“ଆରେ ଏଇ ପଡ଼ିଆରେ ପୋତା ହୋଇଥିବା ଲୋକଟାକୁ ଯାଇ ଢ଼ାଳେ ପାଣି ପିଇବାକୁ ଦେଇ ଆ ।” ଏହା କହିଦେଇ ସେମାନେ ହାଣ୍ଡି ଆଣିବାକୁ ଚାଲିଗଲେ ।

ରଜାଘର ପାଇକଙ୍କ କଥା ଅନୁଯାୟୀ ଧୋବାଟି ସଙ୍ଗେ ସଙ୍ଗେ ଢ଼ାଳେ ପାଣିନେଇ ତେନାଲିରାମଙ୍କ ପାଖକୁ ଗଲା । ରାମପାଣିତକ ପିଇଦେଇ ଆଖି ମୁଦି 'ଦୁର୍ଗା', 'ଦୁର୍ଗା' ଜପିବାକୁ ଲାଗିଲେ । ଧୋବା ଭାବିଲା ଇଏ ଜଣେ ସାଧୁ ପୁରୁଷ । ସେ ପଚାରିଲା—'ମାହାପ୍ରଭୁ ! ଆପଣ ଏପରି ବେକପର୍ଯ୍ୟନ୍ତ ପୋତା ହୋଇ କି ସାଧନା କରୁଛନ୍ତି ?'

ରାମ ଅଖି ଖୋଲି କହିଲେ— “ଆରେ ମୂର୍ଖ ! ତୋ ପିଠିରେ ଯେପରି ଗୋଟାଏ କୁଜ ହୋଇଛି, ମୋ ପିଠିରେ ମଧ୍ୟ ସେହିପରି ଗୋଟିଏ କୁଜ ହୋଇଥିଲା । ଜଣେ ବୈଦ ଏହିପରି ଭୂମିରେ ପୋତାହୋଇ ଦୁର୍ଗାମନ୍ତ୍ର ଜପିବା ଲାଗି ମୋତେ ପରାମର୍ଶ ଦେଲେ । ତାହା ପାଳିବାରୁ ଏବେ ମୋର କୁଜଟି ଭଲ ହୋଇଯାଇଛି । ଏଣୁ ମୁଁ ଦୁର୍ଗାମନ୍ତ୍ର ଜପକରୁଛି ।”

କୁଜା ଧୋବା ମୁଣ୍ଡ ହଲାଇ କହିଲା—“ଆଜ୍ଞା, ଏହା ବଡ଼ ଆଶ୍ଚର୍ଯ୍ୟର କଥା । ତଥାପି ମୋର ସମ୍ପୂର୍ଣ୍ଣ ବିଶ୍ୱାସ ହେଉନାହିଁ ।”

ତେନାଲି ରାମ କହିଲେ—'ଏଥିରେ ଅବିଶ୍ୱାସ କରିବାର କ'ଣ ଅଛି ?' ମା' ଦୁର୍ଗା ଦେବୀ ଯାହା ଚାହିଁବେ, ତାହା କରିପାରିବେ । ଯଦି ତୋର ପରୀକ୍ଷା କରିବାକୁ ଇଚ୍ଛା, ତେବେ ମୋତେ ଏଠାରୁ ଉଠାଇ ପରୀକ୍ଷାକରି ଦେଖ । ତା'ହେଲେ ମୋ କଥା ସତ କି ମିଛ ବୁଝିପାରିବୁ ।”

ଏହା ପରୀକ୍ଷା କରିବା ଉଦ୍ଦେଶ୍ୟରେ ଧୋବା ମାଟି ଖୋଳି ତେନାଲୀ-ରାମଙ୍କୁ ବାହାରକୁ ଆଣିଲା । ତାହା ପିଠିରେ କୁଜ ନ ଥିବା ଓ ସେ ସମ୍ପୂର୍ଣ୍ଣ ସୁସ୍ଥ ଦେଖି ତେନାଲୀରାମଙ୍କ କଥାରେ ତାହାର ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମିଲା । ତହୁଁ ଆପଣାର କୁଜଟି ଭଲହେବା ଲାଗି ସେ ତେନାଲିରାମଙ୍କୁ ଅନୁରୋଧ କରି କହିଲା—"ଭାଇ, ମୁଁ ଏ କୁଜଯୋଗୁଁ ବଡ଼ କଷ୍ଟ ପାଉଛି । ମୋତେ ଦୟାକରି ମାଟିରେ ପୋତି ମନ୍ତ୍ରଟି ଶିଖାଇଦିଅ ।"

ଧୋବାର ବହୁ କାକୁତି ମିନତି ଫଳରେ ତେନାଲିରାମ ତାହାକୁ ସେହି ସ୍ଥାନରେ ପୂର୍ବପରି ପୋତିଦେଲେ ଓ ସତର୍କ କରାଇ କହିଲେ—"ଦେଖ୍, ଯଦି ରାଜାଙ୍କର ପାଇକମାନେ ଏଠାକୁ ଆସି ତୋତେ କିଛି କହନ୍ତି, ତେବେ ତୁ କେବଳ ଏତିକ କହିବୁ—"ପ୍ରଥମେ ରାଜାଙ୍କୁ ଯାଇ ପଚାରି ଆସ ।"

ଏହାପରେ ତେନାଲିରାମ ଯାଇ ରାଜାଙ୍କ ଦରବାରରେ ପହଞ୍ଚିଲେ । ରାଜା ତେନାଲିରାମଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ରାଗିଯାଇ ପଚାରିଲେ—"ତୁମେ ଏଠାକୁ କିପରି ଆସିଲ ? ତୁମକୁ ମାଟିରେ ପୋତି ତୁମ ମୁଣ୍ଡକୁ ଦଳି ଦେବାଲାଗି ପରା ମୁଁ ଆଦେଶ ଦେଇଛି ।"

ତେନାଲିରାମ ଉତ୍ତର ଦେଲା—"ମହାରାଜ ! ଜଣେ ଧୋବା ନିର୍ବୁଦ୍ଧି ଯୋଗୁ ମୋତେ ଗାତରୁ ଉଦ୍ଧାରକରି ନିଜେ ସେହି ଗାତରେ ପୋତା ହୋଇ-ଅଛି ।"

ରାଜା ଏହି ରହସ୍ୟର ମର୍ମ ବୁଝି ନ ପାରିବାରୁ ତେନାଲିରାମ ତାହାଙ୍କୁ ପ୍ରକୃତ ଘଟଣାଟି ଜଣାଇଦେଲେ । ରାଜା ଏହା ଶୁଣି ହସିବା ସଙ୍ଗେ ସଙ୍ଗେ ତେନାଲିରାମଙ୍କୁ କ୍ଷମାକଲେ ଓ ପାଇକମାନେ ପଠାଇ ଧୋବାକୁ ବିପଦରୁ ରକ୍ଷାକଲେ ।

( ଆନ୍ଧ୍ର )



# କଙ୍କଡ଼ାବିଛାର ବିଷ

ପ୍ରାଣୀମାନଙ୍କ ମଧ୍ୟରେ ସବୁଠାରୁ ଦୁର୍ବଳିଆ ହୋଇଥିବାରୁ ପିମ୍ପୁଡ଼ି, ମାଟିହିରଡ଼ ସାପ ଓ ବିଛୁଙ୍କର ବହୁତ ଦୁଃଖ । ଦେବତାମାନଙ୍କ ମଧ୍ୟରେ ମହାଦେବ ସବୁଠାରୁ ବଡ଼, ତାଙ୍କୁ ଡ଼ାକିଲେ ସହଜରେ ବର ମିଳେ । ଏଣୁ ତିନିହେଁ ମହାଦେବଙ୍କ ପାଖରେ କଠୋର ତପସ୍ୟା କଲେ । ସେମାନଙ୍କ ତପସ୍ୟାରେ ମହାଦେବ ଖୁବ୍ ପ୍ରସନ୍ନ ହୋଇଗଲେ । ସେମାନଙ୍କ ଆଗରେ ଉଭାହୋଇ କହିଲେ—"ମୁଁ ତୁମ ତପସ୍ୟାରେ ସନ୍ତୁଷ୍ଟ ହୋଇଛି । ତୁମେ ଏବେ କି ବର ମାଗୁଛ ମାଗ ।"

ପ୍ରଥମେ ପିମ୍ପୁଡ଼ି ବର ମାଗିଲା— "ହେ ଭଗବାନ, ମୁଁ ଗୋଟିଏ ଛୋଟିଆ ଜୀବ । ଦୁର୍ବଳିଆ ହୋଇଥିବାରୁ ମୋତେ ସମସ୍ତେ କଷ୍ଟ ଦେଉଛନ୍ତି । ନିଜକୁ ରକ୍ଷା କରିବାକୁ ମୋର ଶକ୍ତି ନାହିଁ । ମୋର ସବୁଠାରୁ ପ୍ରଧାନ ଶତ୍ରୁ ହେଲେ ମଣିଷ । ମୋତେ ଏଇ ବର ଦିଅନ୍ତୁ, ଯେପରି ମୁଁ କାମୁଡ଼ିଲେ ମଣିଷ-ମାନେ ମରିଯିବେ । ତା'ହେଲେ ସେମାନଙ୍କ କବଳରୁ ମୁଁ ରକ୍ଷା ପାଇଯିବି ।"

ଛୋଟ ପିମ୍ପୁଡ଼ି କାମୁଡ଼ିଲେ ମଣିଷମାନେ ମରିଯିବେ । ମହାଦେବ ଭାବ-ନାରେ ପଡ଼ିଗଲେ । ଯା'ହେଉ କଥାତ ଦେଇଛନ୍ତି, ଶେଷରେ କିଛିଏ ଭାବି ସେ କହିଲେ—"ଆଚ୍ଛା ହେଉ, ତୁ କାମୁଡ଼ିଲେ ମଣିଷମାନେ ମରିଯିବେ; ମାତ୍ର ସେମାନଙ୍କୁ କାମୁଡ଼ିବା ମାତ୍ରେ ତୁ ମଧ୍ୟ ମରିବୁ ।"

ଏହା ଶୁଣି ପିମ୍ପୁଡ଼ି ମହା ଭାବନାରେ ପଡ଼ିଲା । ଏପରି ବର ପାଇ ତା'ର ବା କେଉଁ ଲାଭ ? ଏପରି ବର ପାଇ ତାର କିଛି ଉପକାର ହେବ-ନାହିଁ । ଏଣୁ ସେ ମୁଣ୍ଡ ଆଉଁସି ରହିଲା ।

ଏହାପରେ ମାଟି ହିରଡ଼ ସାପର ପାଳି ପଡ଼ିଲା । ସେ ବର ପ୍ରାର୍ଥନା କଲା—'ହେ ମହାଦେବ ! ମୁଁ ଗୋଟିଏ ଛୋଟିଆ ସାପ । ମୋ ଦେହରେ ଥିବା

ବଙ୍କା ଦାଗ ଓ ମୋର ନାଳିଆ ଲାଙ୍ଗୁଡ଼କୁ ଦେଖି ବଡ଼ ମଣିଷଙ୍କ କଥା ଛାଡ଼, ଛୋଟ ପିଲାମାନେ ମଧ୍ୟ ମୋତେ ମାରଦେଉଛନ୍ତି । ମୋତେ ରକ୍ଷା କରିବା-ଲାଗି ଆପଣ କିଛି ଉପାୟ କରିଦିଅନ୍ତୁ ।”

ମହାଦେବ ତା'ର ପ୍ରାର୍ଥନା ଶୁଣି କହିଲେ—“ଆଚ୍ଛା, କୌଣସି ଦାଗ ହୋଇ ନ ଥିବ ଏପରି ଦିନରେ ତୁ ଯଦି ମଣିଷକୁ ଦଂଶିବୁ ତେବେ ସେମାନେ ନିଶ୍ଚୟ ମରିଯିବେ ।”

ମାଟି ବିରାଡ଼ି ସାପ ଏହା ଶୁଣି ଖୁବ୍ ଖୁସି ହେଲା, ମାତ୍ର ସେ ବୁଝିପାରିଲା ନାହିଁ ଏମିତି ଦିନ ନାହିଁ ।

ଶେଷରେ ବିଛା ମହାଦେବଙ୍କୁ ପ୍ରାର୍ଥନା କଲା—‘ସେଇ ମନୁଷ୍ୟମାନେବି ମତେ ସାମାନ୍ୟ ପ୍ରାଣୀଟିଏ ଭାବି ବହୁତ କଷ୍ଟ ଦେଉଛନ୍ତି । ଏଣୁ ମୋତେ ବର ଦିଅନ୍ତୁ ମୁଁ ନାହୁଡ଼ ମାରଦେଲେ ଯେପରି ସେମାନେ ସଂଗେସଙ୍ଗେ ମରିଯିବେ ।”

ମହାଦେବ ତ ଭୋଳା । ଭୋଳାନାଥ ବାଉଳାରେ ବିଚ୍ଛାକୁ ବିଷର ପୋଟଳାଟିଏ ଦେଇଦେଲେ । ବିଛା ଖୁବ୍ ଖୁସି ହୋଇ ସେଇ ପୋଟଳାଟି ନେଇ ଚାଲିଗଲା । ମହାଦେବ ବିଚାରି ବିବେଚନା ନ କରି ଏପରି ବର ଦେଇ ଦେଇଛନ୍ତି ଏକଥା ଭଗବାନ ବିଷ୍ଣୁ ଜାଣିପାରିଲେ । ସେ ଚାହୁଁଥିଲେ ମନୁଷ୍ୟ-ମାନେ ଭଲରେ ରହନ୍ତୁ, ମାତ୍ର ବିଚ୍ଛାହାତରେ ବିଷ ପୋଟଳା ପଡ଼ିଛି । ଏହା ମଣିଷମାନଙ୍କ ପକ୍ଷେ ମହାବିପଦ । ସେ ବିଚ୍ଛାକୁ ଅଟକାଇ ଦେଲେ । ତା' ଉପରେ ମାଠିଆଏ ପାଣି ଢ଼ାଳିଦେଲେ । ବିଷ ପୋଟଳାଟି ପାଣିରେ ଭିଜି ଓଦାହୋଇଗଲା, ସେଥିରୁ ଥୋଡ଼ାଏ ବିଷ ପାଣି ସଙ୍ଗେ ବୋହିଗଲା । ତଥାପି କିଛି ବିଷ ବୋହି ନଯାଇ ବିଛା ପାଖେ ରହିଗଲା । ସେଥିପାଇଁ ବିଚ୍ଛାକାମୁଡ଼ାର ଏତେ ପ୍ରକୋପ ।

( ଆନ୍ଧ୍ର )

# ହାତୀବଣ୍ଟା

ଜଣେ ଧନୀ ଲୋକର ଚାରୋଟି ପୁଅ । ବାପ ମରିଯିବା ପରେ ପୁଅମାନେ ପୈତୃକ ସମ୍ପତ୍ତିର ବଣ୍ଟାବଣ୍ଟି ଆରମ୍ଭ କଲେ । ଜମିବାଡ଼ି ଓ ଘରଦ୍ୱାର ସମାନ ସମାନ ଭାବରେ ବଣ୍ଟା ହୋଇଗଲା । ମାତ୍ର ସେମାନଙ୍କର ହାତୀକୁ ବାଣ୍ଟିବା-ବେଳେ ମତାନ୍ତର ସୃଷ୍ଟି ହେଲା । ଧନୀଲୋକଟିର ୧୭ଟି ହାତୀ ଥିଲା । ହାତୀ-ଗୁଡ଼ିକୁ ଚାରିଭାଇଙ୍କ ମଧ୍ୟରେ ବାଣ୍ଟିବାରୁ ପ୍ରତ୍ୟେକେ ଚାରୋଟି ଲେଖାଏଁ ହାତୀ ପାଇଲେ । ଶେଷକୁ ଗୋଟିଏ ହାତୀ ବଳି ପଡ଼ିଲା । ସେଇଟିକୁ କିଏ ନେବ ତାହା ଠିକ୍ ହୋଇପାରିଲା ନାହିଁ । ସେଇ କାରଣରୁ ଭାଇମାନଙ୍କ ମଧ୍ୟରେ କଳି ଲାଗିଗଲା ।

ବଡ଼ପୁଅ କହିଲା, "ମୁଁ ସବୁଠାରୁ ବଡ଼ । ଏଣୁ ମୁଁ ଗୋଟିଏ ଅଧିକା ପାଇବା କଥା ।"

ସବୁଠାରୁ ସାନପୁଅ କହିଲା, "ସମସ୍ତଙ୍କ ପଛରେ ମୁଁ ଜନ୍ମ ହୋଇଛି । ସେଥିପାଇଁ ତ ମୁଁ ସମସ୍ତଙ୍କ ଠାରୁ କମ୍ ଭାଗ ପାଇଲି । ତେଣୁ ନ୍ୟାୟତଃ ମୋତେ ବଳକା ହାତୀଟି ମିଳିବା ଉଚିତ ।"

ମଝିଆଁ ପୁଅ ଦୁହେଁ ମଧ୍ୟ ସେହିପରି କାରଣ ଦେଖାଇ ସେମାନଙ୍କୁ ହାତୀ ମିଳୁ ବୋଲି ଦାବି କଲେ । ଏହିପରି ବହୁ ଯୁକ୍ତିତର୍କ କଲେ ବି ସେମାନେ ଅପେକ୍ଷାରେ ଏ ବିଷୟରେ କୌଣସି ମୀମାଂସା କରିପାରିଲେ ନାହିଁ । ତହୁଁ ଚାରିଭାଇଯାକ ଅପ୍ପାଜିରାଓଙ୍କୁ ମଧ୍ୟସ୍ଥ ମାନିଲେ ।

ଅପ୍ପାଜିରାଓ ଘଟଣା ସ୍ଥଳରେ ଆସି ଉପସ୍ଥିତ ହେଲେ । ବିବାଦର ସମସ୍ତ ବିଷୟ ଶୁଣି ସେ ନିଜେ ଯାଇ ହାତୀମାନଙ୍କୁ ଦେଖିଲେ । ତା'ପରେ ସବୁ ହାତୀଙ୍କୁ ଭଲ ଭାବେ ସଜାଇ ସେମାନଙ୍କୁ ଗୋଟାଏ ଧାଡ଼ିରେ କରିବାକୁ ସେ ଭାଇମାନଙ୍କୁ ନିର୍ଦ୍ଦେଶ ଦେଲେ ।

ତାଙ୍କ କହିବା ଅନୁଯାୟୀ ସବୁ ବ୍ୟବସ୍ଥା କରାଗଲା । ଏହାପରେ ଅପ୍ରାଜୀ ସବୁଠୁ ବଡ଼ ହାତୀଟି ଉପରେ ନିଜେ ବସିଲେ । ଗୁରୁଭାଇଙ୍କୁ କହିଲେ, "ତୁମେମାନେ ଅବଶିଷ୍ଟ ହାତୀଗୁଡ଼ିକୁ ନିଜ ନିଜ ଭିତରେ ବାଣ୍ଟିନିଅ ।" ଜଣେ ଜଣେ ଆପଣାର ପ୍ରାପ୍ୟ ଭାବରେ ଗୋଟିଏ ଲେଖାଏଁ କରି ହାତୀ ବାଣ୍ଟିନେଲେ ।

ଅପ୍ରାଜି ପଚାରିଲେ, "ଏଟିକି ନେବାରେ ତମମାନଙ୍କର କାହାର ଆପତ୍ତି ନାହିଁ ?" ଗୁରୁପୁଅମାନେ କହିଲେ, "ଗୋଟିଏ ହାତୀ ନେବା ବିଷୟରେ ଆମର ଅସନ୍ତୋଷ ନାହିଁ ।"

ଅପ୍ରାଜି କହିଲେ, "ଦେଖ ତୁମ ବାପାଙ୍କର ବିଶାଳ ସମ୍ପତ୍ତି ଥିଲା । ସେ ସବୁ ତୁମେମାନେ ବିନା ବିବାଦରେ ନିଜ ନିଜ ଭିତରେ ବାଣ୍ଟିନେଇ ସାରିଛ । ଏବେ ଏଇ ସାମାନ୍ୟ ହାତୀ ଯୋଗୁଁ ତୁମମାନଙ୍କ ମଧ୍ୟରେ ବିବାଦ, ମନୋମାଳିନ୍ୟ ସୃଷ୍ଟି ହେବାଟା ଠିକ୍ ନୁହେଁ । ଯେଉଁ ପଶୁଟି ଲାଗି ଭାଇ ଭାଇ ଭିତରେ କଳି ଲାଗିଯାଏ ସେ ଭଳି ପଶୁକୁ ପାଳିବା ମଧ୍ୟ ଉଚିତ ନୁହେଁ । ହୁଏତ ଏହାଲାଗି ଭବିଷ୍ୟତରେ ବହୁ ଅନର୍ଥ ବି ଘଟିପାରେ । ଏଣୁ ଏଇ ଅଶୁଭ, ଅମଙ୍ଗଳ ହାତୀଟାକୁ ମୁଁ ତୁମ ଗୁରୁଜଣଙ୍କ ତରଫରୁ ମନ୍ଦିରକୁ ଦାନ କରି ଦେଉଛି । ଏଥିରେ ତୁମର ବି ନାଁ ଡାକ ହେବ, କଳିଗୋଳ ବି ତୁଟିଯିବ । ତା'ଛଡ଼ା ଏଥିପାଇଁ ଯେଉଁ ପୁଣ୍ୟଲାଭ ହେବ ସେ'ତ ଅଲଗା କଥା ।"

ପୁଅମାନେ ଖୁସିରେ ତାଙ୍କ କଥା ମାନିଗଲେ । ଅପ୍ରାଜି ହାତୀଟିକୁ ନେଇ ଚାଲିଗଲେ ପରେ ସେମାନେ ଆପଣା ଆପଣା ଭିତରେ କଥାଭାଷା ହେଲେ— "ଭାଇ, ଆମମାନଙ୍କୁ କାହିଁକି ଏପରି ବୁଦ୍ଧି ଦିଶୁ ନ ଥିଲା ?"

( ତାମିଲନାଡୁ )



# ରାମମୂର୍ତ୍ତିର ଚତୁରତା

ଥରେ ରାତିରେ ରାମମୂର୍ତ୍ତିର ଘର ପାଖରେ କେତେଜଣେ ଚୋର ଆସି ଲୁଚିଥାନ୍ତି । ରାମମୂର୍ତ୍ତିର ଘର ଲୋକ ଶୋଇ ପଡ଼ିଲେ କେମିତି ତା' ଘରୁ ଚୋରି କରିବେ ସେଇ ଓର ସେମାନେ ଉଣ୍ଡୁଥାଆନ୍ତି । ଦୈବାତ୍ ରାମମୂର୍ତ୍ତି ସେ କଥା ଜାଣିପାରିଲା । ତହୁଁ ଚୋରମାନେ ଶୁଣିପାରିଲା ଭଳି ବଡ଼ ପାଟିରେ ସ୍ତ୍ରୀକୁ ଡ଼ାକି ସେ କହିଲା— "ହଇ ହୋ, ଗାଁରେ ଏବେ ଚୋରଗୁଣ୍ଡା ମାତିଛନ୍ତି, ଜାଣିଛଟି କି ? ଆମ ଲୁଗାପଟ , ଟଙ୍କା ପଇସା, ଗହଣାପତ୍ର, ଏସବୁ କେମିତି ରଖିବା ? ମୁଁ ଗୋଟାଏ ଉପାୟ ପାଉଛି— ଘରେ ଆମର ଯେଉଁ ବଡ଼ ପେଟରାଟା ଅଛି ସେଇଟା ଆଣ, ସେଥିରେ ଆମର ସବୁ ଦାମିକା ଚିଜ ପୂରାଇ ତାକୁ ତାଲା ପକାଇ ଆମ ବାରିଆଡ଼ କୂଅ ଭିତରେ ପକାଇଦେବା । ତା' ହେଲେ ଆଉ କୌଣସି ଭାବନା ନ ଥିବ । ଚୋର କ'ଣ ସେ କଥା ଜାଣିପାରିବ ଯେ ଆମ ଧନ ସମ୍ପତ୍ତି ଚୋରି କରିପାରିବ ?"

ଚୋରମାନେ ଲୁଚିରହି ଏକଥା ଶୁଣୁଥାଆନ୍ତି । ଭାବିଲେ, ଏଥର ଏଇ ଲୋକଟାର ଘର ଭିତରକୁ କିଆଁ ଯିବା ? ସମସ୍ତେ ଖାଇ ପିଇ ସାରିଲା ପରେ ରାମମୂର୍ତ୍ତି ପେଟରାଟିଏ ଆଣି କୂଅ ଭିତରେ ପକାଇଦେଲା । ତା'ପରେ ଘରେ କବାଟ ଦେଇ ସମସ୍ତେ ଶୋଇଲେ । ତହୁଁ ଚୋରମାନେ ଲୁଚିଥିବା ଯାଗାରୁ ଗୋଟିଏ ଗୋଟିଏ ବାହାରି କୂଅ ପାଖରେ ଆସି ପହଞ୍ଚିଗଲେ । ସେମାନଙ୍କ ଭିତରୁ ଜଣେ କୂଅ ଭିତରକୁ ପଶିଲା । କିଛି ସମୟ ପରେ ଉପରକୁ ଉଠି ଆସି କହିଲା— "ଭାଇମାନେ, ପେଡ଼ିଟା ତ ବହୁତ ଓଜନ, ତାକୁ କ'ଣ ଜଣେ ଜଣେ ଗାଧୋର ପାଣି ଭିତରୁ ଉଠାଇ ପାରିବ ? ବରଂ ଚାଲ ବାଗରେ ପାଣି କାଢି କାଢି କୂଅକୁ ଶୁଖାଇ ଦେବା । ତା'ହେଲେ ସହଜରେ ପେଟରାଟି ମିଳିଯିବ ।"

ଚୋରମାନେ ସମସ୍ତେ ଲାଗିପଡ଼ି ଆଗରୁ ଚୋରିକରି ଆଣିଥିବା ବାଗରେ କୂଅରୁ ପାଣି କାଢିଲେ । ରାମମୂର୍ତ୍ତି ବାରିରେ ବହୁତ ନଡ଼ିଆ, ଗୁଆ, କଦଳୀଗଛ

ଲଗାଇଥାଏ । ଚୋରମାନେ ପାଣି କାଢୁଥିବା ବେଳେ ସେ ଲୁଚି ଦାଣ୍ଡପଟ ବାଟେ ଆସି ବୋହି ଯାଉଥିବା ପାଣିକୁ ସିଆରି କାଟି ବଗିଚ୍ଚ ଭିତରକୁ ଛଡ଼ାଇ ଦେଇ ଘରକୁ ଫେରିଗଲା ।

ପାଣି କାଢି କୂଅ ଶୁଖାଉ ଶୁଖାଉ ରାତି ବହୁତ ହୋଇଗଲା । ଚୋରମାନେ ସେତେବେଳକୁ ଥକି ଗଲେଣି । ରାତି ପାହିଁ ଆସୁଛି, ପେଟରାଟି କୂଅରୁ ବାହାରିଲା । ସକାଳ ହୋଇଯିବ ଏଇ ଭୟରେ ଜଣେ ଚୋର ଚଞ୍ଚଳ ତାଲା ଭାଙ୍ଗି ପେଟରାଟି ଖୋଲି ପକାଇଲା । ସମସ୍ତେ ଦେଖନ୍ତି ତ, ପେଟରା ଭିତରେ କେବଳ ଗୁଡ଼ାଏ ଓଜନିଆ ପଥର, ଭଙ୍ଗାଇଟା ରହିଛି ।

ଚୋରମାନେ ହତାଶ ହୋଇ ମୁଣ୍ଡରେ ହାତ ଦେଇ ବସି ଦୀର୍ଘନିଶ୍ୱାସ ପକାଉ ଥାଆନ୍ତି । ଏତକବେଳେ ରାମମୂର୍ତ୍ତି କଥା ଶୁଣାଗଲା । କବାଟ ଖୋଲି ରାମମୂର୍ତ୍ତି ଚୋରମାନଙ୍କୁ କହିଲା— "ଭାଇମାନେ ବଗିଚ୍ଚରେ ପାଣି ଦେଇ ସାରିଲଣି ତ । ଏଥର ରାଗ ଦୁଇଟା ରଖିଦେଇ ବାହାରିଯାଅ ।"

ଚୋରମାନେ କାନମୁଣ୍ଡ ଆଉଁସି ପକାଇ ଗଲେ । ଚୋରମାନଙ୍କ ଗରା ଦୁଇଟି ରାମମୂର୍ତ୍ତି ପାଇଲା ।

( ଦ: ଭାରତ )



# ସେଠ୍ ଓ ଡକାୟତ

ବହୁକାଳର କଥା । ସେତେବେଳେ ଦକ୍ଷିଣ ଭାରତର ରାଜ୍ୟମାନଙ୍କରେ ଡକାୟତମାନଙ୍କର ବଡ଼ ବଡ଼ ଆଡ୍ଡା ସବୁ ଥାଏ । ସେଇମାନଙ୍କ ଯୋଗୁ ଯାତ୍ରୀମାନେ ବହୁ କଷ୍ଟ ଭୋଗୁଥାନ୍ତି ।

ଥରେ କୁମୁଟି ଜାତିର ଜଣେ ସେଠ୍ ତିରୁପତି ଠାକୁରଙ୍କ ଦର୍ଶନ ସାରି ନିଜ ଗାଁକୁ ବଳଦ ଗାଡ଼ିରେ ଫେରୁଥାନ୍ତି । ତିରୁପତିଙ୍କ ମନ୍ଦିରଠାରୁ ତାଙ୍କ ଗାଁ ସତୁରି ମାଇଲ ଦୂର । ଗାଁ ଆଉ ଅଳ୍ପ କେତେ ମାଇଲ ଥାଏ । ବଳଦମାନଙ୍କ ବେକରେ ପଡ଼ିଥିବା ଘାଗୁଡ଼ି ଝଣ ଝଣ ବାଜୁଥାଏ । ବାଟରେ ଦଳେ ଚୋରର ସେଇ ଘଣ୍ଟି ଶବ୍ଦରୁ ଅନୁମାନ କଲେ, ବୋଧହୁଏ ଏହି ଗାଡ଼ିରେ ତହସିଲଦାର ଯାଉଛନ୍ତି ।

ତହୁଁ ସେମାନେ ଦଳର ଜଣଙ୍କୁ ବାଟରେ ଜଗାଇ ଗୋଟାଏ ତେନ୍ତୁଳି ଗଛ ପଛଆଡ଼େ ଲୁଚି ଉଣ୍ଡିବାକୁ ଲାଗିଲେ । ଗାଡ଼ିଟି ତହସିଲଦାରଙ୍କର ନୁହେଁ ଜାଣିପାରି ସେମାନେ ଖୁସି ହୋଇଗଲେ । ଏଣୁ ନିର୍ଭୟରେ ସେମାନେ ଆସି ଗାଡ଼ି ଆଗରେ ଠିଆ ହୋଇଯାଇ ଗାଡ଼ିକୁ ଅଟକେଇ ଦେଲେ । କହିଲେ, "ମାଲିକେ, ଯଦି ଭଲରେ ଅଛି, ତୁମପାଖେ ଯାହା ମାଲମତା, ଟଙ୍କା ପଇସା ଅଛି ଆମକୁ ଦେଇ ପକାଅ ।"

ସେଠ୍‌ଜୀ ବିଚଳିତ ନ ହୋଇ ସେମାନଙ୍କୁ ସ୍ୱାଗତ କଲାଭଳି ବେଶ୍ ମଧୁର କଣ୍ଠରେ କହିଲେ, "ଭାଇମାନେ, ଯାହାହେଉ ତୁମକୁ ଦେଖି ମୁଁ ବହୁତ ଖୁସି ହେଲି । ତୁମମାନଙ୍କର ସବୁ କୁଶଳ ତ ? ତମେ କେତେଜଣ ଆସିଛ ?"

ଡକାୟତମାନେ ଏପରି ବ୍ୟବହାର ଆଦୌ ଆଶା କରି ନ ଥିଲେ । କହିଲେ, "ହଁ, ଆମର ସବୁ କୁଶଳ । ଆମେ ମୋଟରେ ନଅଜଣ ଅଛୁ । ସେ ସବୁରୁ କ'ଣ ମିଳିବ । ଆମର ଟଙ୍କା ପଇସା ଦରକାର । ଆମକୁ ଶୀଘ୍ର ତା' ଦେଇ ପକାଅ ।"

ସେଠ୍‌ଜୀ ହସି ହସି କହିଲେ— "ଏଇଆଉ ! କିଛି ପରବାୟ ନାହିଁ । ତା' ତୁମକୁ ନିଶ୍ଚୟ ମିଳିବ । ମାତ୍ର ତୁମେ ତ ଏଠି ମୋଟେ ପାଞ୍ଚଜଣ ଅଛ । ଆଉ ତେରଜଣଙ୍କୁ ତ କିଛି ମିଳିବା ଦରକାର ।"

ଡକାଇତମାନେ କହିଲେ, "ତୁମର ସେ ବିଷୟ ଭାବିବା ଦରକାର ନାହିଁ । ଯାହା ତୁମ ପାଖେ ଅଛି ତା' ଆଗେ ଆମକୁ ଦେଇପକାଅ । ଆମେ ଆମକଥା ବୁଝିବୁ ।

ସେଠ୍‌ଜୀ କହିଲେ, "ଭାଇମାନେ ତମେ ଯାହା କହୁଛ ତା ଠିକ୍, ମାତ୍ର ମୋ ପାଖେ ବର୍ତ୍ତମାନ ମୋଟେ ସତୁରି ଟଙ୍କା ଅଛି । ସେଥିରୁ ଏବେ ତମେ ତୁମମାନଙ୍କ ଭାଗ ବାଣ୍ଟି ନିଅ । ଆଉ ତୁମ ବନ୍ଧୁମାନଙ୍କୁ ମୋ ଦୋକାନକୁ କାଲି ସକାଳେ ପଠାଇ ଦେବ । ମୁଁ ସେଇଠି ସେମାନଙ୍କୁ ସେମାନଙ୍କ ଭାଗ ଟଙ୍କା ଦେଇଦେବି ।"

ଡକାଇତମାନେ ସେଠ୍‌ଜୀଙ୍କଠାରୁ ଟଙ୍କା ନେଇ ଓ ତାଙ୍କ ଦୋକାନ ଠିକଣା ବୁଝି ଖୁସିରେ ଚାଲିଗଲେ । ସେମାନଙ୍କ ସର୍ଦ୍ଦାର ପାଖେ ପହଞ୍ଚି ତାକୁ ସବୁ ବିଷୟ ଜଣାଇ କହିଲେ,— "ସେଠ୍‌ଜୀ ପ୍ରକୃତରେ ଖୁବ୍ ଭଲ ଲୋକ । ଯାହା କହୁଛନ୍ତି ତା' ନିଶ୍ଚୟ ପାଳିବେ । କାଲି ସକାଳୁ ତେରଜଣଙ୍କୁ ତାଙ୍କ ଦୋକାନକୁ ପଠାଇବେ ।"

ତା' ପରଦିନ ତେରଜଣ ଚୋର ସେଠ୍‌ଙ୍କ ଦୋକାନ ଠିକଣାରେ ଯାଇ ପହଞ୍ଚିଲେ । ସେଠ୍‌ଜୀ ସେମାନଙ୍କୁ ଗିରଫ କରିବାଲାଗି ଆଗରୁ ଗୁଡ଼ାଏ କନ୍‌ଷ୍ଟେବଳ ଆଣି ଦୋକାନରେ ରଖିଥାଆନ୍ତି । ଡକାଇତମାନେ ଦୋକାନରେ ପହଞ୍ଚିବା ମାତ୍ରେ ଯା' ହବାର କଥା ସେଇଆ ହେଲା । ଅନ୍ୟଠୁ ଠକିବାର ଫଳ ଡକା-ୟତମାନେ ହାତେ ହାତେ ପାଇଲେ ।

( ଦକ୍ଷିଣ ଭାରତ )



# ପିଲାଆରୁ ଠକ

ଜଙ୍ଗଲି ଭଲ ଚୋର ସେ ଖଣ୍ଡ ମଣ୍ଡଳରେ ନ ଥିଲେ । ତା' କଥା କିଏ ବା ନ ଜାଣେ ? ମାତ୍ର ଏବେ ସେ ବୁଢ଼ା ହୋଇଗଲାଣି । ଚୋରି କରିବାକୁ ଆଉ ତା'ର ବଳ ବୟସ ନାହିଁ । ଖାଲି ଘରେ ବସିଥାଏ । ଦଶବର୍ଷର ଗୋଟିଏ ବୋଲି ପୁଅ । ତା'ରି ପାଇଁ ଯାହା ଜେଙ୍ଗୁଲିର ଭାବନା । ଚୋରି ବିଦ୍ୟାର କଳା କୌଶଳ ସେ ତାକୁ ଶିଖାଇ ପାରିନ । ଏଇ ଟିକି ପିଲାଟି ମଧ୍ୟ ତାହା ଶିଖିପାରିବା ସମ୍ଭବ ନୁହେଁ; ମାତ୍ର ସେଇ ଟିକି ପିଲାଟା କହେ— "ବାପା ତୁମେ ମୋ ଲାଗି କାହିଁକି ଭାବୁଛ ? ଚୋରି କରିଯିବାରେ ମୁଁ ଜମା ହାରିଯିବି ନାହିଁ ।" ହେଲେ ବି ଜେଙ୍ଗୁଲିର ତା' କଥାରେ ଆଦୌ ବିଶ୍ୱାସ ହେଉ ନ ଥାଏ ।

ଦିନେ ସକାଳେ ସେଇ ସାନ ପିଲାଟି ଗାଁ ମୁଣ୍ଡ କୂଅ ପାଖକୁ ବୁଲିବାକୁ ଯାଇଥିଲା । ଲୋକେ ଆସି ସେଇ କୂଅରୁ ପାଣି ନେଉଥାନ୍ତି । ପିଲାଟି କୂଅ ପାଖେ ବସି ତା' ଦେଖୁଥାଏ । ଦେଖୁଁ ଦେଖୁଁ ଦି'ପ୍ରହର ବେଳ ହେଲା । ଆଉ କେହି କୂଅ ପାଖକୁ ପାଣି ନେବାକୁ ଆସିଲେ ନାହିଁ । ଏଇ ସମୟରେ ଦେଖା-ଗଲା ଦୂରରୁ ଜଣେ ପଗଡ଼ିପିନ୍ଧା ଲୋକ ଗୋଟିଏ ବଡ଼ ବୋଝଟିଏ ମୁଣ୍ଡାଇ ସେଇ ଆଡ଼କୁ ଆସୁଛି । ପିଲାଟିକୁ ମନେହେଲା, ଲୋକଟାର ଗଢଣ ଠିକ୍ ତା'ର ବାପା ଭଳି । ସେ ସଙ୍ଗେ ସଙ୍ଗେ ବୁଝିନେଲା—ଏଇ ଲୋକଟା ଚୋର । ପ୍ରକୃତରେ ସେଇ ଲୋକଟି ଗୁଡ଼ାଏ ଚୋରିମାଲ ନେଇ ପାଖ ସହରକୁ ବିକି-ବାକୁ ଯାଉଥିଲା । ପିଲାଟି ତାକୁ ଠକିବା ଲାଗି ଗୋଟିଏ ଫିକର ପାଞ୍ଚିଲା ।

ଚୋରଟା ତା ଆଡ଼କୁ ଆସୁଥିବା ଦେଖି ପିଲାଟି କାନ୍ଦିବାକୁ ଆରମ୍ଭ କରିଦେଲା । ପିଲାଟି ପାଖରେ ପହଞ୍ଚି ଚୋର ଦେଖିଲା, ସେ କହିଁ କହିଁ ହୋଇ କାନ୍ଦୁଛି । କାନରେ ତାହାର ଦୁଇଟି ସୁନା ଫାଶିଆ । ସେଇ ଫାଶିଆ ଦୁଇଟିକୁ କୌଶଳରେ ମାରିନେବା ଲାଗି ଚୋରର ଲୋଭ ହେଲା । ପିଲାଟିକୁ ସେ କଅଁ ଳେଇ ପଚାରିଲା, "ଆରେ ପୁଅ, ତୁ କାହିଁକି କାନ୍ଦୁଛୁ କହିଲୁ ?"

ମାତ୍ର ପିଲାଟି କୌଣସି ଉତ୍ତର ନଦେଇ ଆହୁରି ବଡ଼ ପାଟିକରି କାନ୍ଦି-ବାକୁ ଲାଗିଲା । ଶେରର ଭାବିଲା ପିଲାଟା ବୋଧହୁଏ ତାକୁ ଡ଼ରିଯାଇ ଏପରି କାନ୍ଦୁଛି । ସେ ଆପଣା ଥଳିରୁ ଗୋଟିଏ ମିଠାଇ କାଢ଼ିଲା । ପିଲାଟିର ପିଠି ଆଉଁସି ତା ହାତରେ ଦୁଇଟି ମିଠେଇ ଧରାଇ ଦେଲା । ପିଲାଟି ମିଠେଇ ଖାଉ ଖାଉ କହିଲା—"ଏଇଠି ମୁଁ ସାଙ୍ଗ ପିଲାଙ୍କ ସାଥିରେ ଏଇ କୂଅକୁ ପଥର ପକେଇ ଖେଳୁଥିଲି । ଏତିକିବେଳେ ମୋ ବେକରେ ଯେଉଁ ଲମ୍ବା ସୁନା ହାରଟା ଥିଲା ତାହା କୂଅ ଭିତରକୁ ଖସିପଡ଼ିଲା । ସାଙ୍ଗ ପିଲାଏ କେହି କୂଅରେ ପଶି ହାରଟିକୁ ବାହାର କରିଦେଲେ ନାହିଁ । ସମସ୍ତେ ମୋତେ ଛାଡ଼ି ଘରକୁ ଦୌଡ଼ି ପଳାଇଲେ । ମୁଁ କେମିତି ବା କୂଅରେ ପଶିବି ? ହାର ହଜେଇ ଘରକୁ ଗଲେ ବାପା ପିଟି ପିଟି ମୋ ପିଠିରୁ ଛାଲ ଉତ୍ତାରି ଦେବେ । ମୁଁ କ'ଣ କରିବି ?" ଏହା କହି ସେ ପାଟିକରି ପୁଣି କାନ୍ଦିବାକୁ ଲାଗିଲା ।

ଏତିକି ଶୁଣି ଶେରରର ମନ ଖୁସି ହୋଇଗଲା । ସେ ଭାବିଲା, ଆଜି ନିଶ୍ଚୟ ଗୋଟିଏ ଶୁଭ ଦିନ । ମୋଟାଏ ଜାଗାରୁ ତ କିଛି ମିଳିଯାଇଛି । ଏବେ କୂଅରେ ପଶି ସେ ହାରଟା ନେଇଆସିବି । ତା'ପରେ ପିଲାଟା କାନରୁ ଫାଶିଆ ଦୁଇଟାକୁ ମାରି ନେବାଟା ତାକୁ ବଳେଇ ଦିବନାହିଁ । ଏମିତି ସୁଯୋଗ ମିଳିବା ସହଜ କଥା ନୁହେଁ । କୂଅରେ ପଶିବା ଲାଗି ପ୍ରସ୍ତୁତ ହୋଇ ସେ କହିଲା—"ମୋ ସୁନାଟା ପରି, ତୁ କାନ୍ଦନା ! ଏଇଠି ମୋ ଗଣ୍ଠିଲିଟା ରହିଲା; ତୁ ଏହାକୁ ଜଗିଥା ! ମୁଁ ଏଇ ସାଙ୍ଗେ ସାଙ୍ଗେ ତୋ ହାରଟି ବାହାର କରିଦେବି ।" ଏହା କହି ସେ କୂଅ ଭିତରକୁ ପଶିଲା ।

କୂଅ ଭିତରକୁ ପଶିବା ସଙ୍ଗେ ସଙ୍ଗେ ପିଲାଟି ଶେରରର ଗଣ୍ଠିଲିକୁ ଧରି ଏକମୁହାଁ ଘର ଆଡ଼କୁ ଛୁଟିଲା । ଏକା ନିଶ୍ୱାସକେ ଯାଇ ବାପା ପାଖେ ଗଣ୍ଠି-ଲିଟି ଥୋଇଦେଇ ନିଶ୍ୱାସ ମାରିଲା । ବାପପୁଅ ଦୁହେଁ ଗଣ୍ଠିଲିଟି ଖୋଲିଲେ । ଦେଖିଲେ ସେଥିରେ ବହୁତ ଟଙ୍କା, ସୁନା, ରୁପା, ଅଳଙ୍କାର ରହିଛି । ଟେଙ୍ଗୁଲୁ ଆଶ୍ଚର୍ଯ୍ୟରେ ପଚାରିଲା— "ଆରେ ତୁ ଏଗୁଡ଼ାକ କେଉଁଠୁ ଆଣିଲୁ ?"

କପଟ ଶେରରକୁ ଠକେଇ ପୁଅ ତା'ର ଗଣ୍ଠିଲିକୁ ନେଇ ଆସିଲା, ତାହା

ବାପା ଆଗେ ମୂଲରୁ କହିଗଲା ।

ରେଙ୍ଗୁଲା ହସି ହସି କହିଲା— "ବାଃ ବାଃ ରେ ପୁଅ ! ଯା ଦେଖ, ତୋତେ ଆଜି ମୋତେ କିଛି ଶିଖାଇବାକୁ ପଡ଼ିବ ନାହିଁ । ତୁ ମୋଠାରୁ ଆହୁରି ବୁଦ୍ଧିଆ ।"

ସେଇଦିନୁ ପୁଅ ବିଷୟରେ ରେଙ୍ଗୁଲାଙ୍କ ମନରେ ଆଉ କୌଣସି ଦୁଃଖ ରହିଲା ନାହିଁ ।

( ଦକ୍ଷିଣ ଭାରତ )



# ଅନେଶୋତର ମାୟା

ରାମୁ ଓ ଦାମୁ ଦୁଇ ବନ୍ଧୁ । କେରଳର ଗୋଟିଏ ଗାଁରେ ସେମାନଙ୍କ ଘର । ଦୁହିଁଙ୍କ ଘର ପାଖାପାଖି । ରାମୁ ବେପାର ବଣିଜ କରି ଆନନ୍ଦରେ ଥାଏ । ଦାମୁ ପ୍ରତିଦିନ ମୂଲ ଲାଗି ଚଳେ ।

ରାମୁର ବହୁତ ଟଙ୍କା ପଇସା । ତଥାପି ନିଜର ଖର୍ଚ୍ଚ ବିଷୟରେ ସେ ସବୁବେଳେ ନଜର ରଖିଥାଏ । କୃପଣ ଭଳି ଚଳେ । ତା' ସ୍ତ୍ରୀର ନାଁ ଶୋଭା । ସେ କୌଣସି ପ୍ରକାରେ ଗୋଟାଏ ତରକାରି ହେଲେ ଦୁହିଁଙ୍କର ଖାଇବା ଚଳି-ଯାଏ । ଖର୍ଚ୍ଚ ଭୟରେ କେବେ କାହାକୁ ଖାଇବାଲାଗି ଘରକୁ ନିମନ୍ତ୍ରଣ କରନ୍ତି ନାହିଁ ।

ଦାମୁ ଗରିବ ହେଲେ ବି ବେଶ୍ ଖୁସିରେ ଥାଏ । ତା' ସ୍ତ୍ରୀ ନାଁ ଚେନ୍ନୁ । ସ୍ୱାମୀ ସ୍ତ୍ରୀ ଦୁହେଁ ଯାକ ମୂଲଲାଗି ଯାହା ରୋଜଗାର କରନ୍ତି, ସବୁ ଦିନ ଖର୍ଚ୍ଚ

କରନ୍ତିଅନ୍ତି । ଭଲ ଖାଇବା ଓ ପିନ୍ଧିବା ବିଷୟରେ ସେମାନଙ୍କର ଖୁବ୍ ନଜର । ଅତିଥି ଅଭ୍ୟାଗତ ସେବାରେ ମଧ୍ୟ ଖୁବ୍ ଶରଧା । ରାତି ହେଲେ ସେମାନେ ଢୋଲ ବା ଘାସକାଠିଆ ବଜାଇ ଗାଉଁଲି ଗୀତ ସବୁ ବୋଲନ୍ତି ବେଳେ ବେଳେ ନାଚ ଗୀତରେ ସେମାନଙ୍କ ରାତି କଟିଯାଏ ।

ରାମୁର ସ୍ତ୍ରୀ ଶୋଭା, ଦାମୁ ଓ ତା' ସ୍ତ୍ରୀଙ୍କର ଚଳଣି ଦେଖି ଆଶ୍ଚର୍ଯ୍ୟ ହୋଇଯାଏ । ସେ ଦୁହେଁ କପରି ଏପରି ଆନନ୍ଦରେ ରହିପାରୁଛନ୍ତି ଓ ଯାହା କମେଇଲେ ସବୁତକ କପରି ବେପରୁଆ ଭାବେ ମଉଜ ମଜଲିସ୍‌ରେ ଖର୍ଚ୍ଚ କରି ଦେଉଛନ୍ତି, ତାହା ବୁଝିପାରେ ନାହିଁ । ସେମାନଙ୍କର ଏତେ ଧନ ସମ୍ପତ୍ତି; ଦାମୁ ଭଳି ସେମାନେ ଏତେ ଶାନ୍ତିରେ ରହିପାରୁ ନାହାନ୍ତି ବରଂ ଅଶାନ୍ତିରେ ସେମାନଙ୍କର କାଳ କଟୁଛି । ଭଲ ଜିନିଷଟିଏ ଇଚ୍ଛାକଲେ ବି କିଣିପାରୁ ନାହାନ୍ତି । କ୍ରମେ ଶୋଭା ସବୁବେଳେ ଦାମୁ ଓ ତା' ସ୍ତ୍ରୀ ଚେରରୁ ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲା । ସେ ଦୁହେଁ କପରି ଆନନ୍ଦରେ ରହୁଛନ୍ତି, ତାହାର ଜାଣିବାକୁ ସେ ଚେଷ୍ଟା କରୁଥାଏ; ଯେତେ ଚେଷ୍ଟା କଲେ ବି ସେ ଏହାର କୂଳ-କିନାରା ପାଉ ନ ଥାଏ ।

ରାମୁ ଓ ଦାମୁଙ୍କ ଘର ସୀମାରେ ଗୋଟିଏ ବୋଲ ବାଡ଼ । ଉପରବେଳା ଚେରୁ ଓ ଶୋଭା ନିଜ ନିଜ ବାଡ଼ ପାଖକୁ ଆସି କଥାବାର୍ତ୍ତା ହୁଅନ୍ତି । ଦିନେ ସେମାନେ କଥାବାର୍ତ୍ତା ହେଉଥିଲେ । ଶୋଭା ପଚାରିଲା— "ହଇ ହୋ, ତମେ କେମିତି ଏତେ ମଜାରେ ରହୁଛ ? ମନଇଚ୍ଛା ଖର୍ଚ୍ଚ କରୁଛ ? ସେଥିପାଇଁ ତମର ତ ନମାଟେ ଖାତର ନାହିଁ ।"

ଚେରୁ ଟିକିଏ ହସିଲା, ତା'ପରେ କହିଲା—"ମୁଁ ଜାଣେନା ! ବୋଧ-ହୁଏ ମୋ ସ୍ୱାମୀ ବି ଏ କଥାର ଉତ୍ତର ଦେଇପାରିବେ ନାହିଁ । ମୁଁ ଭାବୁଛି, ତୁମ ସ୍ୱାମୀ ଖୁବ୍ ବୁଦ୍ଧିମାନ୍ । ତାଙ୍କୁ ଏକଥା ପଚାର । ସେ ଏହାର ଉତ୍ତର ହୁଏତ ଜାଣିଥିବେ ।"

ଶୋଭା ଗୋଳମାଳରେ ପଡ଼ିଗଲା । ସେ ଆସି ତା' ସ୍ୱାମୀଙ୍କୁ ଏହିକଥା ପଚାରିଲା । ଦାମୁର ଖୁସିରେ ରହିବା ସମ୍ପର୍କରେ ରାମୁ ହସି ହସି କହିଲେ—

"ହଇଓ ! ଦାମୁ ଓ ତା ସ୍ତ୍ରୀ କାହିଁକି କେମିତିଆ ଭାବେ ଚଳୁଛନ୍ତି, ଖୁସିରେ ରହୁଛନ୍ତି, ଏହାର ରହସ୍ୟଟି ତୁମେ ବୁଝିପାରୁନ ! ଏହାର କାରଣ ଦାମୁ ଏ ଅନେଶୋତର ମାୟାରେ ପଡ଼ିନ ।"

ସ୍ତ୍ରୀ କହିଲା— "ଅନେଶୋତର ମାୟାରେ ପଡ଼ିନ ! ଏହାର ଅର୍ଥ କ'ଣ ? ମୁଁ ଏ କଥାରୁ କିଛି ବୁଝିପାରୁନ ।"

"ତୁମକୁ ବୁଝାଇଲେ ବି ତୁମେ ଏହା ବୁଝିପାରିବ ନାହିଁ । ଏ ବିଷୟରେ ତମକୁ ଆଉ କିଛି କହି ଲାଭ ନାହିଁ । ମୁଁ ଏକଥା ତୁମକୁ କାମରେ ଦେଖାଇ ଦେବି । ତା' ହେଲେ ତମେ ବୁଝିପାରିବ ।" ସାମୁ କହିଲା ।

ଶୋଭା ଆଉ କିଛି କହିଲାନି । ସେ ଜାଣେ ତା' ସ୍ୱାମୀ ବଡ଼ ହିସାବି; ଅଧିକ କଥା ବି ସେ କହନ୍ତିନି ।

ଟିକିଏ ରହି ସାମୁ କହିଲା— "ଆଚ୍ଛା ହେଉ । କିଛିଦିନ ଗଲାପରେ ତମେ ନିଜେ ସବୁ ବୁଝିପାରିବ ।"

କିଛିଦିନ ପରେ ଶୋଭାର ମନେ ହେଲା, ଦାମୁ ଓ ଚେରୁଙ୍କ ଚଳଣି ବଦଳି ଯାଇଛି । ନିଶ୍ଚୟ କିଛି ଗୋଟାଏ ସେମାନଙ୍କ ଘରେ ଘଟିଛି । ସେମାନଙ୍କ ଘରୁ ମାଛ ମାଂସର ଗନ୍ଧ ଆସୁନାହିଁ । ଆଗରୁ ଯେମିତି ଦାମୁ ଘରେ ମିଲିକି ଭାତ ହୋଇ କୁଣିଆ ସବୁ ଖାଉଥିଲେ, ଆଉ ସେପରି ହେଉନାହିଁ । ରାତିରେ ଦୁହେଁ ଆଉ ସେପରି ଗାଇଁଲି ଗୀତ ବୋଲୁନାହାନ୍ତି । ଚେରୁ ଦିନ ତମାମ ଖାଲି ନଡ଼ିଆ ପତ୍ର ଚେଞ୍ଚେଇ ବୁଣିବାରେ ବ୍ୟସ୍ତ । ସନ୍ଧ୍ୟା ବେଳେ ସେଗୁଡ଼ିକୁ ନେଇ ସେ ବଜାରକୁ ଯାଉଛି । ରାତିରେ ମଧ୍ୟ ଦାମୁ ଓ ଚେରୁ ଗୁଣ୍ଡିଆ ବୁଣିବାରେ ଲାଗିଛନ୍ତି ।

ଶୋଭା ଭାବିଲା, ଇଏତ ସତରେ ଆଶ୍ଚର୍ଯ୍ୟ କଥା ! ଦାମୁ ଓ ଚେରୁଙ୍କର କ'ଣ ହେଲା ? ଏବେ ସେମାନେ ଦିନ ତମାମ ଖଟୁଛନ୍ତି । ଆଉ ପୂର୍ବପରି ଖୁସି-ବାସରେ ଥିଲାଭଳି ମନେ ହେଉନାହିଁ । ଅଧିକ ଟଙ୍କା ରୋଜଗାର ପାଇଁ ଧାଇଁଛନ୍ତି । ଶୋଭା ସେମାନଙ୍କର ଏଇ ପରିବର୍ତ୍ତନ ବିଷୟ ସ୍ୱାମୀଙ୍କୁ କହିଲା—

"ହେଉଛି ଦେଖିଲୁ ! ଏବେ ସେ ଦୁହେଁ ଆଉ ବେଶି ଖର୍ଚ୍ଚ କରୁନାହାନ୍ତି । ଚଟେଇ ବିକ୍ରିକରି ପଇସା ପାଇବେ ବୋଲି ଅଧିକ ଚଟେଇ ବୁଣିବାରେ ଧନସାର ଲଗିଛନ୍ତି । କାହିଁକି ସେମାନଙ୍କର ଏପରି ହେଲା କହିଲ ?"

ରାମୁ କହିଲା— "ସେମାନେ କାହିଁକି ଚଟେଇ ବୁଣି ବିକିବାରେ ଲଗିଛନ୍ତି ତା' ମୁଁ କେମିତି ଜାଣିବି ? ମୋତେ ଏ କଥା ନ ପଚାରି ତମ ସାଙ୍ଗୋ ଚେରୁକୁ ପଚାରିଲେ ଭଲ ହେବ ।"

ଶୋଭା ଏହି ବିଷୟ ଚେରୁକୁ ପଚାରିବାକୁ ବ୍ୟସ୍ତ । ମାତ୍ର ତାକୁ ସୁଯୋଗ ମିଳୁ ନ ଥାଏ । ଆଗେ ସିନା ସେ ଆସି ବାଡ଼ ପାଖରେ ଠିଆ ହେଉଥିବାରୁ ଗପ ଜମୁଥିଲା; ମାତ୍ର ଏବେ ତ ସେ ସବୁବେଳେ କାର୍ଯ୍ୟବ୍ୟସ୍ତ । ଏଣୁ ସେ ତାକୁ କିପରି ବା ପଚାରିବ ?

ଶୋଭା ଆଉ ଅପେକ୍ଷା କରିପାରିଲା ନାହିଁ । ଦିନେ ସେ ଏ ବିଷୟ ପଚାରିବାକୁ ସେ ଚେରୁ ଘରକୁ ଗଲା । ଚେରୁ ଚଟେଇ ବୁଣିବାରେ ବ୍ୟସ୍ତ । ଶୋଭାକୁ ଦେଖି ସେ ବସିବାକୁ ଗୁଞ୍ଜଟିଏ ପକାଇଦେଲା । ତା'ପରେ ଶୋଭା ସଙ୍ଗେ କଥା କହୁ କହୁ ଚଟେଇ ବୁଣାରେ ଲଗିଗଲା ।

ଶୋଭା ଚେରୁଙ୍କ ମଧ୍ୟରେ ବନ୍ଧୁବାନ୍ଧବ, ସାଇ ପଡ଼ଶାଙ୍କ କଥା ପଡ଼ିଲା । ହଠାତ୍ ଶୋଭା ମନରେ ଯେଉଁ ପ୍ରଶ୍ନଟି ବହୁଦିନୁ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା; ସେହି ପ୍ରଶ୍ନ ସେ ପଚାରି ଦେଲା କହିଲା— "କ'ଣ ହେଲା ଚେରୁ, ତମର ଏବେ ସବୁବେଳେ କାମ । ଦେଖା ପାଇବା କଷ୍ଟ । କ'ଣ ବାମୁଙ୍କୁ ବେଶି ମୂଲ୍ୟପାଉ ମିଳୁନାହିଁ ?"

ଚେରୁ କହିଲା— "ନାଇଁମ ! ଈଶ୍ୱରଙ୍କ ଦୟାରୁ ତାଙ୍କୁ ବହୁତ କାମ ମିଳୁଛି ।"

ଶୋଭା କହିଲା— "ତା ହେଲେ କାହିଁକି ତମେ ଏବେ ମାଛ ମାଂସ ଖାଇବା ବନ୍ଦ କରିଦେଇଛ ? ଆଉ କାହିଁକି ଗୀତ ବୋଲୁନା ? କାହିଁକି ସବୁବେଳେ ଖାଲି ଗୁଞ୍ଜ ଚଟେଇ ବୁଣିବାରେ ଲାଗିଛ ?"

'ଚେରୁ କହିଲା— "ଏବେ ଆମେ ଗୋଟାଏ ପ୍ରକାରରେ ଚଳୁଛୁ ବୋଲି ତୁମକୁ ସେପରି ମନେ ହେଉଛି ।"

ଶୋଭା କହିଲା— "ମନେ ହେଉଛି ଏହାର କିଛି କାରଣ ଅଛି । ତମେ ବୋଧହୁଏ ସେକଥା ମୋତେ କହିବାକୁ ଚାହୁଁନା । ହଉ ନ କୁହ, ମୁଁ ତୁମକୁ ସାହାଯ୍ୟ କରିବାକୁ ଚାହେଁ ବୋଲି ଏକଥା ଏଘରି ଦେଲି । ମୁଁ ଭାବୁଛି ତମର କିଛି ଟଙ୍କା ଦରକାର; ଯଦି ସେପରି କିଛି ଥାଏ, ତେବେ ମୁଁ ମୋ ସ୍ୱାମୀଙ୍କୁ—"

ଚେରୁ ସଙ୍ଗେ ସଙ୍ଗେ କହିଲା— "ନାହିଁ, ନାହିଁ । ଏବେ ଆମର ଟଙ୍କା ଲାଗି କିଛି ଅସୁବିଧା ନାହିଁ । ଆମେ ଏବେ କାହିଁକି ଏପରି ଚଳୁଛୁ ଏହା ଜାଣି-ବାକୁ ଯଦି ଚାହୁଁଛ, ତେବେ ମୁଁ ସେ କଥା କହିବି, ମାତ୍ର ଏ ବିଷୟ ତୁମେ କାହାକୁ କହିବନି । ତୁମ ସ୍ୱାମୀଙ୍କୁ ମଧ୍ୟ ନୁହେଁ । ମୁଁ ଏକଥା ତୁମକୁ କହୁଛି ବୋଲି ଯଦି ମୋ ସ୍ୱାମୀ ଶୁଣିବେ, ତେବେ ସେ ମୋ ଉପରେ ରାଗି ନିଆଁ ହୋଇଯିବେ ।"

ଶୋଭା କହିଲା— "ତମେ ତ ମୋତେ ଭଲକରି ଜାଣ, କୂଅରେ ବାଲି-ଗରଡା ପଡ଼ିଲା ଭଳି ମୋ ପେଟରେ କଥା ରହିଥାଏ ।"

ଚେରୁ କହିଲା— "ହଉ, ଶୁଣ ଦି' ତିନ ସପ୍ତାହ ପୂର୍ବେ ମୋ ସ୍ୱାମୀ ଦେଢ଼ଟି ଟଙ୍କା ମଜୁରି ନେଇ କାମରୁ ଫେରୁଥିଲେ । ଯେମିତି ସେ ଆମ ଘାଣ୍ଟି ପାହାଚ ଉପରେ ଗୋଡ଼ ଦେଇଛନ୍ତି, ଦେଖିଲେ ଗୋଟିଏ ନାଲିଆ ଥଳି ତଳେ ପଡ଼ିଛି । ସେଇଟାକୁ ସେ ଉଠାଇ ଆଣିଲେ । ଥଳିଟି ବେଶ୍ ଓଜନିଆ ଲାଗୁ-ଥାଏ । ତା' ଭିତରେ ଝଣ୍ ଝଣ୍ ହେବାରୁ ସେଗୁଡ଼ିକ ଟଙ୍କା ହୋଇଥିବ ବୋଲି ତାଙ୍କର ଅନୁମାନ ହେଲା ।"

ଶୋଭା କହିଲା—"ବଡ଼ ଆଶ୍ଚର୍ଯ୍ୟ କଥା ତ । ଥଳିଏ ଟଙ୍କା ସେ ହଠାତ୍ ପାଇଗଲେ ।" ଚେରୁ ପୁଣି କହିବାକୁ ଆରମ୍ଭ କଲା— "ଶୁଣ, ତା'ପରେ ସେ ତରବରରେ ଶୋଇବା ଘର ଭିତରକୁ ପଶିଗଲେ । ଘରେ ପଶି କବାଟଟିକୁ ବନ୍ଦ କରିଦେଲେ । ମୁଁ ସେତେବେଳେ ରୋଷେଇ କରୁଥିଲି । ସେ ଆସିବାରୁ

ମୁଁ ଯାଇ ଶୋଇବା ଘର ଭିତରକୁ ଆସିବାକୁ କହିଲେ । ମୁଁ ଘର ଭିତରକୁ ଗିବାପରେ ପୁଣି କବାଟ ବନ୍ଦ କରିଦେଲେ । ଘର ଭିତରକୁ ଯାଇ ମୁଁ ତାଙ୍କର ଏପରି ବିଚିତ୍ର ବ୍ୟବହାରର କାରଣ ଜାଣିପାରିଲି । ଖଟ ଉପରେ ଗଦାଏ ଟଙ୍କା ସେଇ ବ୍ୟାଗରୁ ଅଜାଡ଼ି ହୋଇ ପଡ଼ିଥାଏ । ଆମେ ଦୁହେଁ ସେଗୁଡ଼ିକୁ ଗଣିଲୁ । ଦେଖିଲୁ, ସେଥିରେ ସର୍ବମୋଟ ଅନେକଶୋଟି ଟଙ୍କା ଥିଲା ।"

ଶୋଭା କହିଲା— "ଶହେ ନୁହେଁ ! ଠିକ୍ ଅନେକଶୋଟ, ମୁଁ ଭାବୁଛି, ନିଶ୍ଚୟ ଶହେ ହୋଇଥିବ ।"

ଚେରୁ— 'ନା' ଠିକ୍ ଅନେକଶୋଟ ! ଆମେ ଗୋଟି ଗୋଟି କରି ଗଣିଲୁ । ଦେଖିଲୁ, ସେଥିରେ ଠିକ୍ ଅନେକଶୋଟି ଟଙ୍କା ଥିଲା । ଆମେ ଭାବିଲୁ, ଏଇଟା କିଛି ଭଲ ହେଲାନି । ଶହେ ଟଙ୍କା ହୋଇଥିଲେ ଭଲ ହୋଇଥାନ୍ତା । ଏଣୁ ସ୍ୱାମୀ କ'ଣ କଲେ ନା ସେଦିନ ଆଣିଥିବା ମଜୁରି ଟଙ୍କାରୁ ଗୋଟିଏ ଟଙ୍କା କାଢି ସେହି ଅନେକଶୋଟରେ ମିଶାଇ ରଖିଲେ । ତେଣୁ ବାଧ୍ୟ ହୋଇ ଆମେ ସେଦିନ ଆଠଅଣାରେ ଚଳିଲୁ । ତା' ପରଦିନ ସ୍ୱାମୀ କାମରୁ ଫେରି ମୋତେ କହିଲେ— 'ଏବେ ଆମର ତ ଶହେ ଟଙ୍କା ଅଛି; ଏହାକୁ ଆମେ ଦୁଇଶହ କରିବା ଉଚିତ୍ । ଏଣୁ ଆଜିଠୁ ଟଙ୍କାଏ ଲେଖାଏ ପ୍ରତିଦିନ ସେଥିରେ ରଖିବା ଓ ଆଠଅଣାରେ ଚଳିବା । ସେହିଦିନଠୁ ଏହିପରି ଚଳୁଛୁ । ଅଧିକ ପରିଶ୍ରମ କରୁଛୁ ।"

ଶୋଭା କହିଲା— "ତମେ କାହିଁକି ମାଛ ମାଂସ ଖାଉନା, ଗୀତ ବୋଲୁନା ଓ କାହିଁକି ସବୁବେଳେ ମନଦୁଃଖରେ ଅଛ, ତା'ର କାରଣ ମୁଁ ଏବେ ଜାଣିଲି । ଜାଣିପାରିଲି, ତୁମେ କାହିଁକି ଏବେ ସବୁବେଳେ ରୁକ୍ଷ, କେବଳ ଗୁଣିବାରେ ବ୍ୟସ୍ତ । ମୁଁ ଦେଖୁଛି ଅନେକଶୋଟର ମାୟା ତୁମ ଜୀବନକୁ ବନ୍ଧ- କରିଦେଇଛି ।"

( କେରଳ )

# ନାକକଟା ପଣ୍ଡିତ

କେରଳ ଦେଶରେ କଥା— ସେ ଦେଶରେ ମାକଣାବ୍ରହ୍ମମ୍ ନାମରେ ଜଣେ ରାଜା ଥିଲେ । ସେ ବଡ଼ ଧାର୍ମିକ ଓ ଦୟାଳୁ । ବିକ୍ରମାଦିତ୍ୟ ଓ ଭୋଜ ରାଜାଙ୍କ ପରିଭଳି ତାଙ୍କ ଦରବାରରେ ମଧ୍ୟ ଅନେକ ବଡ଼ ପଣ୍ଡିତ ଓ ଶିଳ୍ପୀ ଥାଆନ୍ତି । ସେମାନଙ୍କ ଛଡ଼ା ରାଜା ଅସ୍ତ୍ରଶସ୍ତ୍ର ପରୀକ୍ଷା କରବାପାଇଁ ଜଣେ ପଣ୍ଡିତଙ୍କୁ ରଖିଥିଲେ । ତରବାର ଲକ୍ଷଣ ବିଷୟରେ ସେ ରାଜାଙ୍କୁ ପରାମର୍ଶ ଦେଉଥିଲେ । କମାରମାନେ ତରବାର ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ତିଆରି କର ରାଜାଙ୍କ ନିକଟକୁ ଆଣିଲେ ରାଜା ତାହା ପ୍ରଥମେ ପଣ୍ଡିତଙ୍କୁ ଦିଅନ୍ତି । ପଣ୍ଡିତେ ପରୀକ୍ଷା କରି ଯେଉଁଟିକୁ ଭଲ ବୋଲି କହନ୍ତି, ରାଜା ତାହାକୁ କିଣନ୍ତି ।

ଏହିପରି ପଣ୍ଡିତେ ରାଜାଙ୍କୁ ତରବାର କିଣିବା ବିଷୟରେ ପରାମର୍ଶ ଦେଇ ଖୁସିରେ ଥାଆନ୍ତି । ମାତ୍ର ପଣ୍ଡିତେ ଥିଲେ ଅସଲ ଲୋଭୀ । ହମେଶ୍ରେ ଜାଣି-ବାକୁ ସେ ତରବାର ଲୁହାକୁ ଶୁଙ୍ଘିକର ତାହା ଭଲ କି ଖରାପ କହି ଦେଉ-ଥିଲେ । ପ୍ରକୃତରେ ଏହା ଥିଲା ତାଙ୍କର ଗୋଟିଏ ଫିକର । ଯେ ତାଙ୍କୁ କିଛି ଲାଞ୍ଚ ଦେଉଥିଲା ପଣ୍ଡିତେ ତାହାର ତରବାରକୁ ଭଲ ବୋଲି ମତ ଦେଉ-ଥିଲେ । ଫଳରେ ସେଇ ତରବାରଟି ରାଜା କିଣୁଥିଲେ; ମାତ୍ର ଯେଉଁ ଲୋକ ପଣ୍ଡିତଙ୍କୁ କିଛି ଅଣ୍ଟାଗୁଞ୍ଜା ଦେଉ ନ ଥିଲା, ପଣ୍ଡିତେ ନାକ ଛୁଆଁଇ ତାହାର ତରବାରକୁ ଖରାପ ବୋଲି ମତ ଦେଉଥିଲେ । ଏଣୁ ସେହି ତରବାର ଭଲ ହୋଇଥିଲେ ମଧ୍ୟ ତାହା ରାଜାଙ୍କଦ୍ୱାରା କିଣା ହେଉ ନ ଥିଲା ।

ଥରେ ଗରିବ କାରିଗରଟିଏ ଗୋଟିଏ ତରବାର ତିଆରି କର ରାଜାଙ୍କ ଦରବାରକୁ ବିକିବାକୁ ଆଣିଥିଲା । ତରବାରଟି ସେ ଭଲ ଲୁହାରେ ତିଆରି କରିଥାଏ; ଦେଖିବାକୁ ବି ତାହା ଖୁବ୍ ସୁନ୍ଦର ହୋଇଥାଏ । ବିଧି ଅନୁଯାୟୀ ତାକୁ କିଣିବା ପୂର୍ବରୁ ପରୀକ୍ଷା କରିବାଲାଗି ପଣ୍ଡିତଙ୍କ ଆଗରେ ରଖାଗଲା । ଗରିବ କାରିଗର ତ ପଣ୍ଡିତଙ୍କୁ କିଛି ଅଣ୍ଟାଗୁଞ୍ଜା ଦେଇନ । ପଣ୍ଡିତେ କିପରି ସେ ତରବାରଟି ଭଲ ବୋଲି ମତ ଦିଅନ୍ତେ ? ପଣ୍ଡିତେ ଶୁଙ୍ଘି କର ଧଙ୍ଗ

ସଙ୍ଗେ କହିଦେଲେ— "ମହାରାଜ ! ଏ ତରବାରୀଟି ଦୋଷଯୁକ୍ତ ଓ ଅଶୁଦ୍ଧ ।" ଏଣୁ ରାଜା ସେଇ ତରବାରୀଟି କିଣିଲେ ନାହିଁ ।

ଅତି ଅଭାବରେ ପଡ଼ି ବହୁତ ଆଶାକରି କାରିଗରଟି ଦରବାରକୁ ଆସିଥିଲା; ମାତ୍ର ରାଜା ତାର ତରବାରୀ ନ କିଣିବାରୁ ଲୋକଟିର ମନରେ ଖୁବ୍ ଦୁଃଖ ହେଲା । ପଣ୍ଡିତଙ୍କ ଠକାମି ସେ ବୁଝିପାରିଲା । ପଣ୍ଡିତଙ୍କୁ କିପରି ଅକଲ ଗୁଡୁମ୍ କରିବ, ସେଇଆ ଭାବି ଭାବି ସେ ଘରକୁ ଫେରିଲା ।

ଅଳ୍ପଦିନ ପରେ ସେ ଆଉ ଗୋଟିଏ ତରବାରୀ ତିଆରି କରି ପୁଣି ରାଜାଙ୍କ ଦରବାରରେ ଆସି ପହଞ୍ଚିଲା । ଏଥର ସେ ଆପଣା ତରବାରୀଟିକୁ ଲଙ୍କାମରିଚ ଗୁଣ୍ଡ ପୂର୍ଣ୍ଣ ହୋଇଥିବା ଗୋଟିଏ ଖୋଳ ଭିତରେ ପୂରାଇ କରି ଆଣିଥିଲା । ନିୟମାନୁସାରେ ତରବାରୀଟି ପ୍ରଥମେ ପଣ୍ଡିତଙ୍କ ସାମନାରେ ରଖାଗଲା । ପଣ୍ଡିତେ ତରବାରୀକୁ ଶୁଙ୍ଘିବା ଲାଗି ଖୋଳରୁ କାଢ଼ିଲେ । ଯେମିତି ସେ ତରବାରୀଟିକୁ ନାକ ପାଖକୁ ନେଇଛନ୍ତି, ଲଙ୍କାମରିଚ ଗୁଣ୍ଡ ଯୋଗୁଁ ସଙ୍ଗେ ସଙ୍ଗେ ତାଙ୍କୁ ଛିଙ୍କ ମାଡ଼ିଲା । ପଣ୍ଡିତେ ଅସ୍ତବ୍ୟସ୍ତ ହୋଇ ଛିଙ୍କିମା ମାତ୍ରେ ତରବାରୀରେ ତାଙ୍କ ନାକ ଖୁବ୍ ଜୋର୍‌ରେ ବାଜିଗଲା । ତରବାରୀଟି ଖୁବ୍ ଧାରୁଆ ହୋଇଥାଏ । ପଣ୍ଡିତଙ୍କ ନାକ ଖଣ୍ଡାଧାରରେ କଟି ଦୁଇଖଣ୍ଡ ହୋଇଗଲା । ନାକରୁ ଝର ଝର ରକ୍ତ ବହୁଛି; ଏଣେ ପଣ୍ଡିତେ ଛିଙ୍କରେ ନାଚକୁଦ ବେଦମ୍ । ରାଜସଭାର ଦେଖଣାହାରି ଓ ସବୁ ପଣ୍ଡିତମାନେ ଏହା ଦେଖି ନ ହସି ରହିପାରିଲେ ନାହିଁ ।

ରାଜା ଏହା ଦେଖି ଅବାକ୍ । ପଣ୍ଡିତଙ୍କ ନାକ କଟିଯିବାର କାରଣ ସେ ବୁଝିପାରିଲେ ନାହିଁ । କାରିଗରଟି ଚୁପ୍ ହୋଇ ଠିଆ ହୋଇଥାଏ । ରାଜାଙ୍କ ଦୃଷ୍ଟି ତା' ଉପରେ ପଡ଼ିଲା । ପଣ୍ଡିତଙ୍କ ନାକ କିପରି କଟିଗଲା ବୋଲି ସେ କାରିଗରକୁ ପଚାରିଲେ । କାରିଗର ହାତଯୋଡ଼ି କହିଲା— "ହଜୁର ! ଏଇ ପଣ୍ଡିତଙ୍କୁ ମୋଟେ ଅସ୍ତ୍ରଶସ୍ତ୍ର ଚିହ୍ନି ଆସେ ନାହିଁ । ସେ ନାକରେ ଶୁଙ୍ଘି ଅସ୍ତ୍ରଶସ୍ତ୍ରର ଭଲ ମନ୍ଦ ଜାଣୁଛନ୍ତି ବୋଲି ମିଛରେ କୁହନ୍ତି । ଯିଏ ତାଙ୍କୁ ହାତଗୁଞ୍ଜା ଦିଏ, ତାହାର ଅସ୍ତ୍ରକୁ ସେ ଭଲ ବୋଲି କୁହନ୍ତି । ଯିଏ ତାଙ୍କୁ ହାତଗୁଞ୍ଜା ଦିଏ,

ତାହାର ଅର୍ଥକୁ ସେ ଭଲ ବୋଲି ବୁଝନ୍ତି । ହୁମ୍ଭେ, ଆମେ କାରିଗର, ଲୁହାର ଭଲ ମନ୍ଦ ଜାଣୁ । ହତିଆର ଯୋଗୁଁ ମଙ୍ଗଳ ହେବ କି ଅମଙ୍ଗଳ ହେବ, ତାହା ମଧ୍ୟ ଜାଣୁ । ଏଇ ପଣ୍ଡିତଙ୍କ ଠକାମୀ ଧରି ପକାଇବା ପାଇଁ ମୁଁ ଗୋଟିଏ ନୂଆ ମସଲା ଦେଇ ତରବାରିଟି ତିଆରି କରିଥିଲି । ପଣ୍ଡିତେ ନିଜ ଅସାବଧାନତାରୁ ନାକଟି କାଟି ପକାଇଛନ୍ତି ।"

ରାଜା ଏତେଦିନ ପରେ ପଣ୍ଡିତଙ୍କ ଠକାମୀ ବିଷୟ ଜାଣିପାରିଲେ । ରାଜ୍ୟର ଲୋକଙ୍କ ମଧ୍ୟ ନାକକଟା ପଣ୍ଡିତଙ୍କ କଥା ଜାଣିଲେ । ପଣ୍ଡିତଙ୍କୁ ଯିଏ ଦେଖେ, ସିଏ ହସେ । ରାସ୍ତାରେ ଗଲେ ପିଲାଏ ଚିଡ଼ାନ୍ତି । ଏଣୁ ପଣ୍ଡିତେ ଦୁଃଖରେ କାଳ କାଟୁଥାନ୍ତି । ଏମିତି କିଛିଦିନ ଗଲା । ଦିନକର ପଣ୍ଡିତଙ୍କ ପ୍ରତି ରାଜାଙ୍କର ଦୟା ହେଲା । ସେ ରାଜ୍ୟର ପ୍ରଧାନ ବଇଦଙ୍କୁ ଡକାଇଲେ । ତାଙ୍କୁ ପଣ୍ଡିତଙ୍କ ନାକର ଚିକିତ୍ସା କରିବାକୁ କହିଲେ ।

( କେରଳ )



## ବାରଟି ବାଘ

ଚଷାଟିଏ । ସେ ତା'ର ବାଡ଼ିରେ କଖାରୁ ମକା, ଚିନାବାଦାମ ଲଗାଇଥିଲା । ଚିନାବାଦାମ ପାଚିଲାରୁ ଜଙ୍ଗଲି ଘୁଷୁରି ଆସି ତାକୁ ଖାଇଲେ । ତେଣୁ ଚଷାଟି ଫସଲକୁ ରକ୍ଷା କରିବା ଲାଗି କିଆରୀ ମଝିରେ ମଞ୍ଚା ବାନ୍ଧି ରାତିଯାକ ଘେଉଟି ଜଗିଲା । ଦିନେ ଗୋଟାଏ ବାଘ ମଣିଷର ଗନ୍ଧ ପାଇ ସେଇ ମଞ୍ଚା ପାଖକୁ ଆସିଲା । ଏଣେ ତେଣେ ଆଖି ବୁଲାଉ ବୁଲାଉ ମଞ୍ଚା ଉପରେ ବସିଥିବା ମଣିଷଟି ଉପରେ ତା'ର ନଜର ପଡ଼ିଗଲା । ବାଘ ଭାବିଲା — ଯା' ହେଉ ଭଲ

ଶିକାରଟାଏ ମିଳିଯାଇଛି । ଏଣୁ ସେ ମଞ୍ଚାଖମ୍ବକୁ ହଲାଇବାକୁ ଲାଗିଲା । ମଞ୍ଚା ଉପରୁ କୃଷକଟି ପଚାରିଲା, "କିଏରେ ?"

ବାଘ କହିଲା, "ମୁଁ ହେଉଛି ବାଘ, ଜଙ୍ଗଲର ରାଜା ।"

କୃଷୀ ପଚାରିଲା, "ତୋର କ'ଣ ଦରକାର ?"

ବାଘ କହିଲା, "ମୁଁ ତୋତେ ଖାଇବି ।"

କୃଷୀ କହିଲା, "ଭଲକଥା । ହଉ, ତାହେଲେ ଟିକିଏ ଅପେକ୍ଷା କର । ମୁଁ ତୋତେ ଉପରକୁ ଟେକି ଆଣିବି, ତା'ପରେ ତୁ ମୋତେ ଖାଇବୁ ।" ଏତିକି କହିଦେଇ କୃଷୀଟି ଚଞ୍ଚଳ ନିଆଁ ଜଳାଇ ଦେଲା । ନିଜ ଦାଆକୁ ସେଥିରେ ଭଲକରି ତତାଇ ତାହାକୁ ବାଘ ଉପରକୁ ଫକାଇ ଦେଲା । ବାଘ ମଣିଷକୁ ଖାଇବ ବୋଲି ଉପରକୁ ମୁହଁ ମେଲାକରି ବସିଥିଲା । ତାତିଲା ଦାଆଟି ତା'ର ମୁହଁ ଭିତରେ ପଡ଼ିବାରୁ ମୁହଁଟି ସିଝିଗଲା । ହଠାତ୍ ଏପରି ଆଘାତ ପାଇ ବାଘ ଭୟରେ ଲାଙ୍ଗୁଡ଼ ଜାକି ଦୌଡ଼ ଦୌଡ଼ ପଳାଇଗଲା ।

ବାଟରେ ଆଉ ଗୋଟାଏ ବାଘ ସଙ୍ଗେ ତା'ର ଦେଖାହେଲା । ଦ୍ୱିତୀୟ ବାଘ ପଚାରିଲା, "କିରେ ଭାଇ, ଏମିତି କାହିଁକି ଦୌଡ଼ି ପଳାଉଛୁ ?"

ପ୍ରଥମ ବାଘଟି କହିଲା, "ଭାଇ, ଆଉ କିଛି ପଚାର ନାହିଁ । କଳିଯୁଗ ହୋଇଗଲା । ଚୋର ଏବେ ପୁଲିସଙ୍କୁ ଧମକେଇଲେଣି ।"

ଅନ୍ୟ ବାଘଟି ପଚାରିଲା, "ଭାଇ କଥା କ'ଣ ହେଲା କୁହନା ?"

ପ୍ରଥମ ବାଘଟି କହିଲା, "ଆଉ କ'ଣ ହେବାକୁ ବାକି ଅଛି ! ଏଇ ଦେଖ, ଗୋଟାଏ ସାମାନ୍ୟ କୃଷୀ ମୋ ମୁହଁକୁ ପୋଡ଼ିଦେଲା ।"

ଅନ୍ୟ ବାଘଟି ପ୍ରଚଣ୍ଡ ଖପା ହୋଇ କହିଲା, "କ'ଣ ! ଏମିତି ପୃଥିବୀ କାଳ ଓଲଟି ଗଲା । ଚାଲ, ମୋତେ ସେ ମଣିଷଟାକୁ ଦେଖାଇ ଦେ, ମୁଁ ତାକୁ ଗୋଟାପଣେ ଖାଇଯିବି ।"

ପ୍ରଥମ ବାଘଟି କହିଲା, "ଆରେ ବାପରେ ବାପ, ମୁଁ ଆଉ ତେଣିକି ଜମାରୁ ଯିବ ନାହିଁ । ମୋର ମନେ ହେଉଛି, ସେ ତ ଗୋଟାଏ ରାକ୍ଷସ । ହେଉ, ଯଦି କହୁଛ ଚାଲ, ଦୂରରୁ ଠିଆହୋଇ ମୁଁ ତତେ ସେଇ ମଞ୍ଚାଟି ଦେଖାଇ ଦେବି । ସେଇ ମଞ୍ଚା ଉପରେ ସେ ରହୁଛି ।" ଏହା କହି ସେ ବାଘଟିକୁ ମଞ୍ଚା ପାଖକୁ ନେଇ ଦୂରରୁ ସେହି ଲୋକଟିକୁ ଦେଖାଇ ଦେଲା ।

ଦ୍ୱିତୀୟ ବାଘଟି ମଞ୍ଚା ତଳକୁ ଯାଇ ଖୁବ୍ ଜୋରରେ ମଞ୍ଚା ଖୁମ୍ବକୁ ହଲାଇଲା । ଉପରୁ ଚାଷୀ ପାଟିକଲା, "କିଏରେ ! ତୁ କିଏରେ ?"

ବାଘ କହିଲା, "ମୁଁ ହେଉଛି ବାଘ, ଜଙ୍ଗଲର ରଜା ।"

ଚାଷୀ ପଚାରିଲା, "ତୁ କାହିଁକି ଆସିଛୁ ?"

ବାଘ କହିଲା, "ତତେ ମାରି ଖାଇବାକୁ ।"

ଚାଷୀ କହିଲା, "ହଉ ଭଲକଥା, ପାଞ୍ଚ ମିନିଟ ଅପେକ୍ଷା କର । ମୁଁ ଯେତେବେଳେ ଡାକିବି, ତୁ ଉପରକୁ ଆସିବୁ । ବାଘ ଅପେକ୍ଷା କଲା । ଏହି ସମୟ ଭିତରେ ଚାଷୀ ନିଜର ଲମ୍ବା ବାଡ଼ିରେ ଦାଆକୁ ବାନ୍ଧି, ଦାଆକୁ ନିଆଁରେ ତତାଇଲା । ତା'ପରେ ସେ ବାଘକୁ ମଞ୍ଚା ଉପରକୁ ଆସିବାକୁ କହିଲା । ବାଘ ତା କଥା ମାନି ଯେମିତି ଖମ୍ବ ଉପରକୁ ଚଢ଼ିଲା ଚାଷୀଟି ସେଇ ତାତିଲା ଦାଆରେ ବାଘ ଅଣ୍ଟାକୁ ଚେଙ୍ଗିଦେଲା ।

ଏମିତି ହଠାତ୍ ଆକ୍ରମଣ ହେବ ବୋଲି ବାଘ କେବେହେଲେ କଳ୍ପନା କରିନଥିଲା । ପ୍ରଥମ ବାଘଟି ଭଳି ସେ ମଧ୍ୟ ଡ଼ରି ପଳାଇଗଲା । ତା'ର ଅବସ୍ଥା ଦେଖି ପ୍ରଥମ ବାଘଟି ମଧ୍ୟ ତା ପଛେ ପଛେ ଦୌଡ଼ିଲା । ଦୁହେଁ ଆସି ଜଙ୍ଗଲରେ ପହଞ୍ଚିଲାରୁ ତାଙ୍କ ସହିତ ଆହୁରି ଦଶଟି ବାଘର ଦେଖାହେଲା । ସେମାନେ ପଚାରିଲେ, "କିଓ ଭାଇ ! ତୁମେ ଦୁହେଁ କାହିଁକି ଏପରି ଦୌଡ଼ି ପଳାଉଛ ?"

ଦଶଟା ବାଘକୁ ଦେଖି ସେ ଦୁହିଁଙ୍କର ପିଣ୍ଡରେ ପ୍ରାଣ ପଶିଲା । ସେମାନେ

ଥରି ଥରି ହୋଇ ଯାହା ଘଟିଥିଲା ତାହା ସେମାନଙ୍କୁ କହିଲେ । ନିଜ ଜାତିର ଏପରି ଅପମାନ ଦେଖି ଅନ୍ୟ ଦଶଟି ବାଘ ଖୁବ୍ ରାଗିଗଲେ । କହିଲେ, "ଅଚ୍ଛା, ଆମକୁ ଦେଖାଇଦିଅ, ସେ ବେଦମାସ ମଣିଷଟା କେଉଁଠି ଅଛି ? ମୁହୂର୍ତ୍ତକ ମଧ୍ୟରେ ଆମେ ସେଇଟାକୁ କଞ୍ଚା ଖାଇଯିବୁ ।"

ଦୁଇ ବାଘଯାକ କହିଲେ, 'ରକ୍ଷାକର, ଆମେ ସେଠିକି କଦାପି ଯିବୁ ନାହିଁ । ସେତ ସାମାନ୍ୟ ବୁଢ଼ୀ ନୁହେଁ । ସେ ଗୋଟାଏ ରାକ୍ଷସ ।"

ଦଶଟାଯାକ ବାଘ କହିଲେ, "ତୁମେ ଦୁହେଁ ମହା ଡରୁଆ । ତୁମେ ତାକୁ ଦୂରରୁ ଦେଖାଇ ଦିଅ । ଆମେ ତାକୁ ଠିକ ଠିକ କରି ଚଲ ପକାଇ ଖାଇବୁ ।"

ତହୁଁ ସମସ୍ତେ ମିଳିଯାଇ ମଞ୍ଚାପାଖରେ ପହଞ୍ଚିଲେ । ବାଘ ଦୁହେଁ ଦୂରରୁ ଲୋକଟିର ମଞ୍ଚା ଦେଖାଇଦେଲେ । ଦଶଟାଯାକ ବାଘ ସେଇ ମଞ୍ଚା-ନିକଟକୁ ଗଲେ । ଗୋଟିକ ଉପରେ ଗୋଟିଏ ଠିଆ ହୋଇ ମଞ୍ଚା ଖୁମ୍ବକୁ ଖୁବ୍ ଜୋରରେ ହଲେଇଲେ ।

ଉପରୁ ଲୋକଟି ପଚାରିଲା, "କିଏ ସେ ? ତୁମର କ'ଣ ଦରକାର ?"

ବାଘମାନେ କହିଲେ, "ଆମେ ସବୁ ବାଘ, ଜଙ୍ଗଲର ରାଜା ।"

ବୁଢ଼ୀ ପଚାରିଲା, "ତମେ ଏଠିକି କାହିଁକି ଆସିଛ ?"

ବାଘମାନେ କହିଲେ— "ତୁ ଆମ ଭାଇଙ୍କୁ ବେଇଜ୍ଜତ କରିଛୁ । ଏଣୁ ଆମେ ତତେ ଖାଇବାକୁ ଆସିଛୁ ।"

ବୁଢ଼ୀ ହସି ହସି କହିଲା, "ମୁଁ ତ ତୁମମାନଙ୍କପାଇଁ ପ୍ରସ୍ତୁତ ହୋଇ ରହିଛି । ମାତ୍ର ତୁମେମାନେ ତ ଦଶଜଣ । ମୋ ଭଳି ପତଳା ଲୋକଟାକୁ ଖାଇ କ'ଣ ତୁମର ଭୋକ କମିବ ? ଅଚ୍ଛା, ଗୋଟାଏ କାମ କର । ତୁମେ ସମସ୍ତେ ମିଶି ମୋର ଏଇ ବିଲରୁ ଧାନ ତାକ କାଟି ପକାଅ । ସେଇ ଧାନର ଚୁଡ଼ା ଖାଇ ମୁଁ ବେଶ୍ ମୋଟାସୋଟା ହୋଇଗଲେ, ତୁମେ ମୋତେ ଖାଇବ । ତାହେଲେ ଯାଇ ମତେ ଖାଇବାର ମଜା ପାଇବ । ବାଘମାନଙ୍କ ମନକୁ

ବୃଢ଼ୀର କଥାଟା ଚାଲିଗଲା । ସେମାନେ କଅଁଳରୁ ପଅଡ଼ କାଟି ତା’ ଖଳାରେ ଗଦା ମାରିଦେଲେ । ତା’ପରେ ଆସି ବୃଢ଼ୀକୁ କହିଲେ, “ଆମକୁ ଏଥର ଗୋଟାଏ ଦୌଡ଼ ର ବାନ୍ଧିଦିଅ, ଆମେ ସବୁ ବେଙ୍ଗଲା ପକାଇବୁ ।”

ବୃଢ଼ୀ କହିଲା, “ତୁମେ ନିଜକୁ ପରସ୍ପର ସାଥିରେ ବାନ୍ଧି ହୋଇଯାଅ । ବୃଢ଼ୀର କଥା ମାନି ଦଶଟା ଯାକ ବାଘ ନିଜକୁ ଅନ୍ୟ ସାଥିରେ ଛନ୍ଦିଦେଲେ । ପ୍ରଥମରୁ ଆସିଥିବା ବାଘ ଦୁଇଟି ସେମାନଙ୍କୁ ଅଡ଼ାଇବା ଲାଗି ପ୍ରସ୍ତୁତ ହୋଇଗଲେ । ବାଘମାନେ ବେଙ୍ଗଲା ପକାଉଥାନ୍ତି । ଏତିକବେଳେ ବୃଢ଼ୀଟି ଲୁଚିକରି ଗାଁକୁ ପଳାଇ ଗାଁବାଲାଙ୍କୁ କହିଲା, “ଭାଇମାନେ ! ଧାଇଁ ଆସ, ମୋ ବାଡ଼ିରେ ଦଶେ ବାଘ ପଶିଛନ୍ତି ।”

ବାଘକଥା ଶୁଣି ଗ୍ରାମସାରା ଲୋକ ଆସି ବାଡ଼ିରେ ଜମା ହୋଇଗଲେ । ସମସ୍ତେ ଏକାବେଳେକେ ବାଘମାନଙ୍କୁ ଆକ୍ରମଣ କଲେ । ପ୍ରଥମ ବାଘ ଦୁଇଟା ବନ୍ଧାହୋଇ ନ ଥିବାରୁ ଦୌଡ଼ି ପଳାଇ ଗଲେ । ମାତ୍ର ବାକି ଦଶଟା ବାଘ ତ ବନ୍ଧା ହୋଇଥାନ୍ତି । ପଳାଇବେ ବା କିପରି ? ଗ୍ରାମବାଲେ ବାଘଗୁଡ଼ାକୁ କେଞ୍ଚି କେଞ୍ଚି ମାରି ପକାଇଲେ ।

ପଳାଇଥିବା ବାଘ ଦୁଇଟି ଜଙ୍ଗଲରେ ପହଞ୍ଚି, ଭାଇ ଦଶଟି ମରିଗଲେ ଭାବି ବହୁତ ଦୁଃଖ କଲେ । ଭାବିଲେ, ଯାହା ହେଉ, ଯେଉଁ ଦଶଟା ବାଘ ଭାଇ ମରିଗଲେ, ତାଙ୍କ ପାଇଁ ଶ୍ରାଦ୍ଧ କରିବା ଆମର କର୍ତ୍ତବ୍ୟ । ଶ୍ରାଦ୍ଧ-ଲାଗି ସେମାନେ ଯୋଗାଡ଼ଯନ୍ତ୍ର କଲେ ।

ବୃଢ଼ୀଟି ଏକଥା ଜାଣିପାରିଲା । ତହୁଁ ସେ ଜଙ୍ଗଲରୁ ଯାଇ ଯେଉଁଠି ଶ୍ରାଦ୍ଧ ହେବ ତାରି ପାଖରେ ଗୋଟାଏ ଗାତ ଖୋଳି ତାହା ଭିତରେ ଲୁଚି ରହିଲା । ବାଘମାନଙ୍କର ଗୋଟାଏ ଗୁରୁ ଥିଲା, ତା ନାଁ ଲାଙ୍ଗୁର । ତା ଲାଙ୍ଗୁଡ଼ଟା ବହୁତ ବଡ଼ । ସେ ଆସି ସେଇ ଗାତ ପାଖରେ ବସିଲା । ତା’ ଲାଙ୍ଗୁଡ଼ଟି ସେଇ ଗାତ ଭିତରକୁ ଓହଳି ପଡ଼ିଥାଏ । ବୃଢ଼ୀଟି ଏହା ଦେଖି ଲାଙ୍ଗୁରର ଲାଙ୍ଗୁଡ଼ଟାକୁ ଖୁବ୍ ଜୋରରେ ଟାଣି ଦୁଇଖଣ୍ଡ କରିଦେଲା । ବାଘକୁ ଖୁବ୍ କାଟିବାରୁ ସେ ଡେଇଁବାକୁ ଲାଗିଲା । ଅନ୍ୟ ବାଘ ଦୁଇଟି

ଯାଉଥିଲେ, ବୋଧହୁଏ ମଲା ବାଘମାନଙ୍କ ପ୍ରେତାତ୍ମା ଲଙ୍ଗୁର ଦେହରେ ଅନୁପ୍ରବେଶ କରିଛି ।

ଏଣେ ଲଙ୍ଗୁରର ଲାଙ୍ଗୁଡ଼ ଛିଣ୍ଡିଯିବାରୁ ସେ କାନ୍ଦ ବୋବାଇ କରି ସମସ୍ତ ପରେ ଦୌଡ଼ି ପଳାଇଲା । ବାଘ ଦୁହେଁ ଆଶ୍ଚର୍ଯ୍ୟ ହୋଇ ପରସ୍ପରକୁ ଚାହିଁ ରହିଲେ । ଏତିକିବେଳେ ବୃଢ଼ୀଟି ଗାତ ଭିତରୁ ବାହାରକୁ ଆସି କହିଲା, "ବଦମାସ୍, ମଲାବାଘଙ୍କ ଲାଗି ପୁଣି ଶ୍ରାଦ୍ଧ କରିବାକୁ ଯାଉଛ । ଶୀଘ୍ର ଏଠୁ ଦୂର୍ ପଳା, ଦୂର୍ ପଳା ।"

ବୃଢ଼ୀକୁ ଦେଖି ଦୁଇଟା ସେଠାରୁ ପଳାଇଗଲେ । ସେହି ଦିନଠୁଁ ଆଉ ସେମାନେ ସେଇ ଆଡ଼କୁ କେବେ ଆସିଲେ ନାହିଁ ।

( ମହାରାଷ୍ଟ୍ର )



## ଭାଇ ଭଉଣୀ

ଜଣେ ରାଜା ଥିଲେ । ତାଙ୍କର ଦୁଇଟି ପିଲା—ଝିଅଟିଏ, ପୁଅଟିଏ । ଭାଇ ଭଉଣୀ ଦୁହେଁ ପରସ୍ପରକୁ ଖୁବ୍ ଦେଖିପାରନ୍ତି । କେହି କାହାକୁ ଦଣ୍ଡେ ଛାଡ଼ି ରହିପାରନ୍ତି ନାହିଁ । ଦୁହିଁଙ୍କୁ ନଅ ଦଶବର୍ଷ ହୋଇଥାଏ, ସେମାନଙ୍କ ମାଆ ମରିଗଲେ । ଭାଇ ଭଉଣୀ ଦୁହେଁ ଯାକ ମାଆକୁ ଝୁରି ଝୁରି ବହୁତ କାନ୍ଦିଲେ । ଯେତେ କାନ୍ଦିଲେ ବା କ'ଣ ହେବ, ମାଆ ତ ଆଉ ଫେରିଆସିବ ନାହିଁ । କେତେଦିନ ପରେ ମାଆ ଛେଉଣ୍ଡ ପିଲା ଦୁଇଟିଙ୍କ କଥା ବୁଝିବା ଲାଗି ରାଜା ଆଉ ଜଣଙ୍କୁ ବିବାହ କଲେ ।

ନୂଆ ରାଣୀ ଖୁବ୍ ଆଡ଼ମ୍ବରରେ ନଅରକୁ ଆସିଲେ । ମାତ୍ର ନୂଆ ରାଣୀଙ୍କ ପ୍ରକୃତି ଖରାପ । ସଉତୁଣୀର ପିଲା ଦୁଇଟିଙ୍କୁ ସେ ଭଲ ଆଖିରେ ଦେଖିପାରିଲେ ନାହିଁ । ପିଲା ଦୁଇଟିଙ୍କୁ ଯତ୍ନ ନେବାକୁ ସେ ଆଦୌ ଚାହିଁଲେ ନାହିଁ । ସେମାନଙ୍କୁ ପେଟପୂରା ଖାଇବାକୁ ମଧ୍ୟ ଦେଲେ ନାହିଁ । ତାଙ୍କ ଯୋଗୁ ରଜାଝିଅ, ରଜାପୁଅଙ୍କୁ ଭଲ ପୋଷାକ ମଧ୍ୟ ପିନ୍ଧିବାକୁ ମିଳିଲା ନାହିଁ । ସବୁବେଳେ ନୂଆ ରାଣୀ ପିଲା ଦୁଇଟାଙ୍କ ଉପରେ ଚିଡ଼ ଚିଡ଼ ହେଉଥାନ୍ତି, ବେଳେ ବେଳେ ବିନା କାରଣରେ ମାରନ୍ତି ।

ପିଲା ଦୁଇଟି କ୍ରମେ ବଡ଼ ହେଲେ । ଏଣେ ରାଣୀଙ୍କର ଦୁଇଟି ପିଲା ହୋଇଥାନ୍ତି । ରାଣୀ ଭାବିଲେ, ସଉତୁଣୀ ପିଲା ଦୁଇଟା ତ ବଡ଼ ହୋଇ-ଗଲେଣି; ମୋର ସାନ ପିଲା ଦୁଇଟାଙ୍କ ସଙ୍ଗେ ସେମାନେ ନିଶ୍ଚେ କଳି କରିବେ । ଏଣୁ ସେମାନଙ୍କୁ ମୂଳରୁ କୌଶଳରେ ମାରିଦେବା ଭଲ । ରାଜା କିନ୍ତୁ ମାଆ ନଥିବା ପିଲା ଦୁଇଟାଙ୍କୁ ଖୁବ୍ ଦେଖିପାରନ୍ତି । ରାଣୀ ସେଥିପାଇଁ ଗୋଟାଏ କୌଶଳ ପାଞ୍ଚିଲେ ।

ଦିନେ ସେ ଦୁଇଟି ସୁନ୍ଦର ଲଡ଼ୁ ତିଆରି କରି ସେଥିରେ କିଛି ବିଷ ମିଶାଇ ଦେଲେ । ଦୁଇ ପିଲାଙ୍କୁ ଡାକି ଦୁହିଁଙ୍କି ଦୁଇଟି ଲଡ଼ୁ ଦେଇ କହିଲେ— "ଆରେ ପିଲେ, ଏଇ ଲଡ଼ୁ ଦୁଇଟି ନେଇ ଖେଳିବାକୁ ଯାଅ । ଭୋକ ହେଲେ ଏହାକୁ ଖାଇବ । ଆଜି ଏତିକ ଛଡ଼ା ତୁମକୁ ଆଉ କିଛି ଖାଇବାକୁ ଦିଆଯିବ ନାହିଁ । ଏଣୁ ମନେ ରଖିଥାଅ, ଏଇ ଲଡ଼ୁ ତୁମେ ଆଉ କାହାକୁ ଖାଇବାକୁ ଦେବ ନାହିଁ । ଯଦି ମୋ କଥା ନ ମାନ, ତେବେ ତୁମ ପିଠିରୁ ଚମଡ଼ା ଉତାରି ଦେବ ।"

ପିଲା ଦୁହେଁ ଲଡ଼ୁ ନେଇ ଖେଳିବାକୁ ଚାଲିଗଲେ । ଦିନେ ନାହିଁ, କାଲି ନାହିଁ, ଆଜି ମାଆ ଲଡ଼ୁ ଖାଇବାକୁ ଦେଇଥିବାରୁ ସେମାନେ ଖୁବ୍ ଖୁସି । ମାଆ କଥା ମାନି ଦୁହେଁ ବଗିଚାରେ ଖେଳିଲେ; ମାତ୍ର କିଛି ସମୟ ଖେଳିଲା ପରେ ସେମାନଙ୍କୁ ଖୁବ୍ ଭୋକ ହେଲା । ଲଡ଼ୁଟି ଖାଇବା ଲାଗି ଦୁହିଁଙ୍କ ପାଟିରୁ ଲାଳ ବୋହିଲା । ଭାଇ ପ୍ରଥମେ ଲଡ଼ୁଟି ଖାଇଦେଲା; ମାତ୍ର ସେଇଟି ଖାଇବାରୁ

ତା'ର ଭୋକ ଆହୁରି ବଢ଼ିଗଲା । ସେ ଭଉଣୀକୁ କହିଲା— "ହଇରେ ଅପା ଗୋଟିଏ ଲଡୁ ଖାଇ ତ ମୋ ପେଟ ମୋଟେ ପୂରିଲା ନାହିଁ । ମୋତେ ତୋ ଲଡୁଟି ଦେ ।"

ଭଉଣୀ ଭାଇକୁ ତା' ଲଡୁଟି ଦେବା ମାତ୍ରେ ଭାଇ ସେଇଟିକୁ ପାଟିରେ ମଳାଇଦେଲା । ଲଡୁ ଦୁଇଟି ଖାଇବା ପରେ ପିଲାଟା ଭାଇର ପେଟ ଗୋଳେଇ ଧାଣ୍ଡି ହୋଇ ମୁଣ୍ଡ ବୁଲେଇ ହୋଇଗଲା, ପେଟକୁ ଚିପିଧରି ସେ ତଳେ ପଡ଼ିଗଲା । ଦେଖୁ ଦେଖୁ ତା' ଦେହ ନେଳା ପଡ଼ି ମୁହୂର୍ତ୍ତକ ମଧ୍ୟରେ ତା'ର ପ୍ରାଣବାୟୁ ଉଡ଼ିଗଲା ।

ଝିଅଟି ହଠାତ୍ କିଛି ବୁଝିପାରିଲା ନାହିଁ । ସେ କେବଳ ଜଳ ଜଳ ହୋଇ ଅନାଇଥାଏ । ଭାଇ ତଳେ ପଡ଼ିଯିବାରୁ ସେ କାନ୍ଦିବାକୁ ଲାଗିଲା । ତା' କାନ୍ଦଶୁଣି ବଗିଚାର ମାଳୀ ଧାଇଁ ଆସିଲା । ରାଜକୁମାରର ଏପରି ଅବସ୍ଥା ଦେଖି ସେ ସଙ୍ଗେ ସଙ୍ଗେ ରାଣୀଙ୍କ ପାଖକୁ ଧାଇଁଗଲା । ରାଣୀ ଏକଥା ଶୁଣି ପ୍ରଥମେ ଆଶ୍ଚର୍ଯ୍ୟ ହେଲେ । ଦୁଇଜଣଯାକ ନ ମରି କେବଳ ପୁଅଟି କପରି ମଲା, ଏହାର ରହସ୍ୟ ସେ ବୁଝିପାରିଲେ ନାହିଁ । ସେ ସ୍ଥିର କଲେ, ଏବେ ବଗିଚାକୁ ଧାଇଁ ଯାଇ ପୁଅ ପାଇଁ କାନ୍ଦିବେ ଓ ତାକୁ ସାପ କାମୁଡ଼ିଲା ବୋଲି ରାଜାଙ୍କୁ ମିଛରେ କହିବେ ।

ରାଣୀ ସଙ୍ଗେ ସଙ୍ଗେ ବଗିଚାକୁ ଧାଇଁ ଯାଇ ମରି ପଡ଼ିଥିବା ପୁଅ ପାଖେ ବସି କାନ୍ଦିଲେ । ରାଜା ମଧ୍ୟ ଏହା ଶୁଣି ଧାଇଁ ଆସିଲେ । ବିକଳ ଭାବେ କାନ୍ଦି ରାଣୀ କହିଲେ— "ପିଲାଏ ବଗିଚାରେ ଖେଳୁଥିଲେ ହଠାତ୍ ଗୋଟାଏ ବିଷାକ୍ତ ସାପ ଆସି ପୁଅକୁ କାମୁଡ଼ିଛି । ମୁଁ ନୋହିଲେ ପୁଅ ଦେହରେ ଏପରି ନେଳା ପଡ଼ିଯାଇ ନ ଥାନ୍ତା ।"

ରାଜା ପୁଅର ଶବକୁ କୋଳରେ ଧରି ବହୁତ କାନ୍ଦିଲେ । ଭଉଣୀଟି ତା' ଭାଇ ଲାଗି ବହୁତ କାନ୍ଦିଲା । ରାଣୀଙ୍କ ବିକଳ ଦେଖି ରାଜାଙ୍କ ଧାରଣା ହେଲା, ରାଣୀ ସାଉନ୍ତୁଣୀର ପିଲାଙ୍କୁ ମଧ୍ୟ ଖୁବ୍ ସ୍ନେହ କରନ୍ତି । ସେ ରାଣୀଙ୍କୁ ବୁଝାଇ ଉଆସକୁ ନେଲେ । ରାଣୀଙ୍କୁ କହିଲେ— "ଯା ହେବାର ତ ହେଲା ।

ତୁମେ ଏଣିକି ଝିଅଟି କଥା ଭଲ କରି ବୁଝ । ବଡ଼ଗ୍ଧ ଭାଇକୁ ହରାଇ ସେ ଖୁବ୍ ଏକୁଟିଆ ବୋଧକରୁଛି ।"

ରାଣୀ କହିଲେ— "ମୋତେ ଏକଥା କହିବା କ'ଣ ଦରକାର ? ମୁଁ କ'ଣ ତାହା ଜାଣେନା ? ଝିଅ ଏଥର ମୋ ପାଖେ ଥାଉ ।" ଏହା କହି ଝିଅକୁ କାଖେଇ ଘର ଭିତରକୁ ନେଇଗଲେ ।

ସାବତ ମାଆ ବଡ଼ ଝିଅକୁ କପଟରେ ଆଦର କରନ୍ତି । ମାତ୍ର ରଜାଝିଅ ସବୁ ବେଳେ ତା' ଭାଇକୁ ଝୁରୁଥାଏ । ତଥାପି ସେ ବେଳେ ବେଳେ ଭାବେ, ମାଆର ସ୍ୱଭାବ ବଦଳିବ, ତାକୁ ଆଉ ମାରଧର କରିବ ନାହିଁ, ଭଲ କରି ଗଣ୍ଡିଏ ଖାଇବାକୁ ଦେବ । ଦିନେ ରଜାଙ୍କୁ ଭୁଲାଇବା ଲାଗି ରାଣୀ କପଟରେ କହିଲେ— "ମହାରାଜ ! ଆପଣ ବୋଧହୁଏ ଭାବୁଛନ୍ତି, ସଉତୁଣୀର ଝିଅ ବୋଲି ମୁଁ ତାକୁ କଷ୍ଟ ଦେଉଥିବି; ମାତ୍ର ମୁଁ ତାକୁ ଆପଣା ଝିଅ ଭଳି ପାଳିଛି ଓ ପାଳିବି । ମୋ ଉପରେ ତା'ର ସବୁ ଦାୟିତ୍ୱ ଛାଡ଼ିଦେଇ ଆପଣ ନିଶ୍ଚିନ୍ତ ରହନ୍ତୁ । ତା'ର କୌଣସି ଅସୁବିଧା ହେବନାହିଁ ।"

ରଜାଙ୍କର ଧାରଣା ହେଲା, ରାଣୀ ଠିକ୍ କହୁଛନ୍ତି । ତାଙ୍କ ପାଖେ ଝିଅଟି ରହିଲେ ସେ ଘରର କାମଦାମ ଶିଖିପାରିବ । ଝିଅକୁ ସେ ରାଣୀଙ୍କ ଜିମା ଛାଡ଼ି ଦେଲେ । ସେଇଦିନୁ ଝିଅ ତା' ସାବତ ମା ପାଖରେ ରହିଲା ।

ରାଣୀକୁ ଏଥର ସୁଯୋଗ ମିଳିଗଲା । ରଜାଙ୍କ ସଙ୍ଗେ ଝିଅର ଯେପରି ଦେଖା ହୋଇ ନ ପାରିବ, ସେ ସେହିପରି ବ୍ୟବସ୍ଥା କଲେ । ଝିଅକୁ ଭଲରେ ରଖିବା ଦୂରରେ ଥାଉ, ଓଲଟି ତାକୁ ବହୁତ କଷ୍ଟ ଦେଲେ । ନାନା କାମରେ ସେ ତାକୁ ଖଟାଉଥାନ୍ତି; ଚିରା ଲୁଗା ପିନ୍ଧିବାକୁ ଦିଅନ୍ତି । ଦିନସାରା ତା' ଧଙ୍ଗ କଟର କଟର ହେଉଥାନ୍ତି । ଟିକିଏ କଥାରେ ଧୂର୍ ଧୂର୍ ମାର୍ ମାର୍ କରନ୍ତି ।

ରାଜକୁମାରୀ ବିଚରା କ'ଣ ବା କରିବ ? ସାବତ ମାଆର ସବୁ ଗାଳି ମାଡ଼ ବାଧହୋଇ ସହି ଯାଉଥାଏ । ଦୁଃଖକାଳେ ବା ତା' କଥା ଆଉ ଶୁଣିବାକୁ କିଏ ଅଛି ? ବାପାଙ୍କ ପାଖକୁ ସେ ଇଚ୍ଛାକଲେ ବି ଯାଇପାରେ ନାହିଁ । ମା'

ତାଙ୍କୁ ମାଖେ ପାଖେ ଅଟକାଇ ରଖିଥାନ୍ତି । ସେ ଯେପରି ବାହାରକୁ ଯାଇ ନ ପାରିବ, ସେଥିପାଇଁ ଖୁବ୍‌ବାଣୀମାନଙ୍କୁ ଜଗାଇ ଦେଇଥାନ୍ତି ।

ରଜାଝିଅ ଦିନସାରା କଠିନ କାମ କରେ । ଉପାସ ଭୋକରେ ବି ରାଣୀଙ୍କ ଗୋଡ ମୋଡ଼ି ଦିଏ । ରାଣୀ ଶୋଇଲେ ଯାଇ ଶୁଏ । ଏକୁଟିଆ ବେଳେ ଭାଇ କଥା ମନେ ପଡ଼ିଲେ ଆଖିରୁ ତା'ର ଧାର ଧାର ଲୁହ ବୋହିଯାଏ ।

ଦିନେ ରାତିରେ ରଜାଝିଅ ତା' ଭାଇକୁ ବହୁତ ମନେ ପକାଇଲା । ତା' କଥା ଭାବି କାନ୍ଦି କାନ୍ଦି ତାକୁ ନିଦ ହୋଇଗଲା । ସେ ସପନ ଦେଖିଲା— ଭାଇ ତା' ପାଖରେ ଛିଡ଼ା ହୋଇ କହୁଛି— "ଆଲୋ ଅପା, ମୁଁ ଆଉ ତୋ ଦୁଃଖ ଦେଖି ସହିପାରୁନି । ଠାକୁର ତତେ କେତେ ଦୁଃଖ ନ ଦେଲେ ! ତୁ ଭୋକିଲା ରହୁଛୁ । ଏହା ଦେଖି ମୋତେ ଭାରି କଷ୍ଟ ହେଉଛି । ଯାହେଉ, ମୁଁ ତୋପାଇଁ ଖାଇବାକୁ ଯୋଗାଡ କରିବି । ଉଆସ ପାଖ ବଗିଚାରେ ଗୋଟିଏ ପୋଖରୀ ଅଛି । ସେହି ପୋଖରୀରେ ବହୁତ ମାଛ । ମୁଁ ଏବେ ସେଠି ସୁନାର ମାଛଟିଏ ହୋଇ ରହୁଛି । ମାଳି ସବୁଦିନ ମାଛଙ୍କୁ ଭାତ ଖାଇବାକୁ ଦିଏ । ମୁଁ ତୋପାଇଁ ସେଠାରେ କାଳଠାରୁ ଭାତ ଯୋଗାଡ଼ କରି ରଖିଥିବି । ତୁ ରାତିରେ ଏକୁଟିଆ ସେଠାକୁ ଯାଇ ଭାତ ନେଇ ଆସି ଖାଇବୁ ।"

ରଜାଝିଅ ଭାଇକୁ ସ୍ୱପ୍ନରେ ଦେଖି ଭାରି ଖୁସି ହେଲା । ତା'ପରଦିନ ରାତିରେ ସେ ପୋଖରୀ କୂଳକୁ ଗଲା । ସତକୁ ସତ ତା'ର ଭାଇ ଗୋଟିଏ ସୁନାର ମାଛ ହୋଇ ସେଠାରେ ଖେଳୁଥାଏ । ସେ ଭଉଣୀକୁ ଚିହ୍ନିଲା । ରଜାଝିଅକୁ ଦେଖି ସୁନାର ମାଛଟି ଆସି କୂଳରେ ବହୁତ ଭାତ ରଖିଦେଲା । ରଜାଝିଅ ଭାତ ନେଇ ଚାଲି ଆସିଲା ।

ସେଦିନ ଯାହା ଝିଅଟି ଗଣ୍ଡିଏ ପେଟ ପୂରା ଖାଇବାକୁ ପାଇଲା । ସେହି ଦିନଠାରୁ ସେ ସବୁଦିନ ରାତିରେ ପୋଖରୀ କୂଳକୁ ଯାଇ ଭାତ ନେଇ ଆସେ । ଏକୁଟିଆ କୋଣରେ ବସି ଖାଏ । ବହୁଦିନ ପେଟପୂରା ଖାଇବାକୁ ନ ପାଇ ସେ ଦୁର୍ବଳ ହୋଇ ଯାଇଥିଲା । ତା' ଦେହରେ ପୁଣି ମାଂସ ଲାଗିଲା । ଧୀରେ ଧୀରେ ତା'ର ସ୍ୱାସ୍ଥ୍ୟ ବଦଳିଗଲା । ସେ କ୍ରମେ ସୁନ୍ଦର ଦିଶିଲା ।

ରାଣୀ ତାକୁ ଦେଖି ଆଶ୍ଚର୍ଯ୍ୟ ହେଲେ । ଝିଅଟା ଅଧା ଉପାସ ରହିଲେ ବି ଦୁର୍ବଳ ହେଉନାହିଁ କାହିଁକି ? ସେ ଲୁଚି ଲୁଚି ତା'ର ଗତିବିଧି ଲକ୍ଷ୍ୟ କଲେ । ଦିନେ ଗଛରେ ଦେଖିଲେ, ପୋଖରୀ କୂଳରେ ସୁନାର ମାଛଟିଏ ଆସି ତାକୁ ଭାତ ଖାଇବାକୁ ଦେଉଛି ।

ରାଣୀ ଏ କଥା ଯାଇ ରାଜାଙ୍କୁ କହିଲେ । ରାଜା କହିଲେ— "ଏଥିରେ ଭାବିବାର କ'ଣ ଅଛି ? ସେ ତାକୁ ଯଦି ଭଲ ଲାଗୁଛି ସେ ଖାଉ ।"

ରାଣୀ କହିଲେ— "ମହାରାଜ ! ରାଜାର ଝିଅ ହୋଇ ସେ ଯାଇ ଲୁଚି-କରି ମାଛଠାରୁ ଦାନା ଖାଇବ ? ଏଇଟା କ'ଣ ସୁନ୍ଦର କଥା ? ରାଜାଙ୍କୁ ମଧ୍ୟ ଏ କଥା ଭଲ ମନେହେଲା ନାହିଁ । ସେ ରାଗିଯାଇ କହିଲେ—"ସେ ସେଠାକୁ ଯାଉଛି କାହିଁକି ? କ'ଣ ଉଆସରେ ଖିରିପୁରି ଖାଇ ତା'ର ପେଟ ପୂରୁନାହିଁ ? ତାକୁ ଏଠାକୁ ଡାକ ।"

ରାଣୀ ତ ଝିଅକୁ ରାଜାଙ୍କ ସହିତ ଦେଖା କରିବାକୁ ଚାହୁଁ ନ ଥିଲେ । ସେ କହିଲେ— "ମହାରାଜ ! ଆପଣ ବୋଧହୁଏ ଝିଅକୁ କଠିନ ଦଣ୍ଡ ଦେବାକୁ ଚାହାନ୍ତି; ମାତ୍ର ପିଲାଟାକୁ ମାରିବା ଦରକାର ନାହିଁ । ଆପଣ ପୋଖରୀ କୂଳରେ ପ୍ରହରୀ ଜଗାଇ ଦିଅନ୍ତୁ । ତା'ହେଲେ ସବୁ ଝଞ୍ଜଟ ତୁଟିଯିବ ।"

ରାଜା ସଙ୍ଗେ ସଙ୍ଗେ ସେଇଆ କରିବାକୁ ଆଦେଶ ଦେଲେ । ପୋଖରୀ କୂଳରେ ପ୍ରହରୀ ଦେବାକୁ ଜଗୁଆଳୀ ରହିଲେ । ରାଣୀ ମାଛଗୁଡ଼ାକୁ ମଡ଼ାଇ ଦେଲେ । ସେହି ସୁନା ମାଛଟିକୁ ଯାଇ ନିଜେ ଧରି ଆଣିଲେ । ତାକୁ ଚୁଲିରେ ପକାଇ ଦେଲେ; ଭଲ ଭାବରେ ପୋଡ଼ିଯିବାରୁ ସେ ତାକୁ ଚାକଟି ଖାଇ ଦେଲେ ।

ରଜାଝିଅ ଉପରେ ରାଣୀର ଅତ୍ୟାଚାର ପୁଣି ଆରମ୍ଭ ହୋଇଗଲା । କ୍ରମେ ତା'ର ଅବସ୍ଥା ପୂର୍ବଭଳି ଖରାପ ହେଲା । ରାଣୀ ତାକୁ ଦିନସାରା ଗାଳି ଦିଅନ୍ତି । ମନଇଚ୍ଛା ମାରନ୍ତି । ଖାଇବାକୁ କମ୍ ଦିଅନ୍ତି । ଆପଣାର ଛିଣ୍ଡା ପୁରୁଣା ଲୁଗା ପିନ୍ଧିବାକୁ ଦିଅନ୍ତି ।

ଝିଅ ବଚରା ଆଉ କ'ଣ କରିବ ? ନୀରବରେ ସବୁ ସହି ସେଇଠି ପଡ଼ିଥାଏ । ଭଗବାନଙ୍କୁ ନିନ୍ଦେ । ଦିନେ ରାତିରେ ଭାଇ କଥା ପୁଣି ତା'ର ମନେ ପଡ଼ିଲା । ସେ ଏକୁଟିଆ ବସି କେତେ କାନ୍ଦିଲା । ସେଦିନ ସେ ସ୍ୱପ୍ନ ଦେଖିଲା । ଭାଇ କହୁଛି— "ଅହା, ତୋ ଦୁଃଖ ଦେଖି ମୁଁ ଆଉ ରହିପାରୁନି । ଏହି ରାଣୀ ତୋତେ ଶୁଖାଇ ଶୁଖାଇ ମାରିବାକୁ ଚାହେଁ । ମୁଁ ଏବେ ମୟୂର ରୂପରେ ପାଖ ଗଣେଶ ମନ୍ଦିରରେ ରହୁଛି । ସେଠାରେ ମୋ ପାଇଁ ଯାହା ଖାଇବାକୁ ମିଳିବ, ସେଥିରୁ ତୋପାଇଁ କିଛି ବଳାଇକରି ରଖିବି । ତୁ ସବୁଦିନେ ସେଠାକୁ ଯାଇ ଖାଇ ଆସିବୁ ।"

ତା'ପରଦିନ ରଜାଝିଅ ମନ୍ଦିରକୁ ଗଲା । ଦେଖିଲା, କେଉଁଆଡୁ ଗୋଟିଏ ମୟୂର ଆସି ଗଣେଶ ମନ୍ଦିରରେ ରହିଛି । ମୟୂର ରାଜକୁମାରୀଙ୍କୁ ଖାଇବାକୁ ଭାତ ଦେଲା ସେଦିନଠୁ ରାଜକୁମାରୀ ସବୁଦିନ ମନ୍ଦିରକୁ ଯାଏ । ପେଟପୂରା ଖାଇ ଘରକୁ ଫେରେ । ତା'ର ଆଉ ଦୁଃଖ ରହିଲା ନାହିଁ । କ୍ରମେ ତା'ର ସ୍ୱାସ୍ଥ୍ୟ ଭଲ ହେଲା । ସେ ସୁନ୍ଦର ଦିଶିଲା ।

ରାଣୀ ଭାବିଲେ, ଝିଅଟା ପୁଣି କେଉଁଠି ମୋ ଅଜାଣତରେ କିଛି ଖାଉଛି । ସେ ଝିଅ ଉପରେ ପୁଣି ନଜର ରଖିଲେ । କିଛିଦିନ ପରେ ଜାଣି-ପାରିଲେ ସେ ମନ୍ଦିରରେ ଖାଉଛି । ସଙ୍ଗେ ସଙ୍ଗେ ଦାସୀଙ୍କୁ ପଠାଇ ସେ ମୟୂରକୁ ଉଆସକୁ ନେଇ ଆସିଲେ । ନିଜ ହାତରେ ମୟୂରକୁ ମାରିଦେଲେ । ତା'ର ମାଂସକୁ ତରକାରୀ କରି ଖାଇଲେ ।

ରାଣୀ ରଜାଝିଅକୁ ଆଉ ବାହାରକୁ ଛାଡ଼ିଲେ ନାହିଁ । ତାକୁ ଉଆସ ଭିତରେ ରଖିଥାନ୍ତି । ପୂର୍ବ ଅପେକ୍ଷା କମ୍ ଖାଇବାକୁ ଦିଅନ୍ତି । ଫଳରେ ଭୋକ ଉପାସରେ ସେ ପୁଣି ଶୁଖିଗଲା ।

କିଛିଦିନ ପରେ ଭାଇ ଆସି ରଜାଝିଅକୁ ସପନରେ ଦେଖାଦେଲା । କହିଲା— "ଅପା ! ତୋ ଦେହ ଶୁଖି ଶୁଖି କ'ଣ ହେଲାଣି ! ତା' ଦେଖି ମୁଁ ଆଉ ସହିପାରୁ ନାହିଁ । ରାଣୀ ମା' ତୋତେ ପେଟ ପୂରାଇ ଖାଇବାକୁ ଦେଉ ନାହିଁ । ତା'ପରେ ତୋତେ ଖଟାଇ ଖଟାଇ ମାରୁଛି । ତା' ଅତ୍ୟାଚାରରୁ

ରକ୍ଷା କରିବାପାଇଁ ମୁଁ ଏବେ ତା' ପେଟରେ ପୁଅଟିଏ ହୋଇ ଜନ୍ମ ହେବି । କାନ୍ଦି କାନ୍ଦି ସମସ୍ତଙ୍କୁ ଅଥୟ କରିବି । ରାଣୀ କୋଳରେ ତ ମୁଁ ମୋଟେ ଚୁପ୍ ରହିବିନି । କେବଳ ତୁ ମୋତେ କୋଳରେ ଧରିଲେ ମୁଁ ଚୁପ୍ ହେବି । ଜାଣିଥା, ତୋତେ ଛାଡ଼ି ମୁଁ ଆଉ କାହାରି ପାଖରେ ରହିପାରିବିନି । ଦେଖିବୁ, ବଡ଼ ହେଲେ ମୁଁ ରାଣୀର ଗର୍ବ ଭାଙ୍ଗିଦେବି ।"

ଏମିତିକା ସପନ ଦେଖି ରାଜକୁମାରୀର ମନ ଖୁସି ହୋଇଗଲା । ତା'ର ଆଶା, ଦିନେ ନା ଦିନେ ତା' ଦୁଃଖ ଦୂର ହେବ । ତାକୁ ଭାଇ ଆସି ରକ୍ଷା କରିବ । ସେହି ଆଶା ରଖି ସେ ସବୁ କଷ୍ଟ ଭୁଲିଯାଏ ।

କିଛିଦିନ ପରେ ରାଣୀ ଗର୍ଭବତୀ ହେଲେ । ତାଙ୍କର ପୁଅଟିଏ ହେବାର ଶୁଣି ରାଜ୍ୟସାରା ଆନନ୍ଦ ଖେଳିଗଲା ।

ଦଶ ମାସରେ ରାଣୀଙ୍କର ପୁଅଟିଏ ଜନ୍ମ ହେଲା । ରାଜାଙ୍କ ଆନନ୍ଦର ସୀମା ରହିଲା ନାହିଁ । ପୁଅକୁ କୋଳରେ ଧରି ରାଜା ଆନନ୍ଦରେ ନାଚିଲେ । ରାଜ୍ୟସାରା ଆନନ୍ଦ ଖେଳିଗଲା । ସମସ୍ତେ ଘିଅ ଦୀପ ଜାଳିଲେ । ମିଠାଇ ବଣ୍ଟା ହେଲା । ନାଚ ଗୀତ ହେଲା । ଝିଅ ବି ଖୁବ୍ ଖୁସି । ସେ ଜାଣେ, ତା'ର ଭାଇ ଆସି ଜନ୍ମ ନେଇଛି । ସେ ବଡ଼ ହେଲେ ରାଣୀ ମା'ର ଅତ୍ୟାଚାରରୁ ତାକୁ ରକ୍ଷା କରିବ । ବଡ଼ ହେବାଯାଏ ସେ ସବୁ କଷ୍ଟ ସହିବାକୁ ପଡ଼ିବ ।

ଏଣେ ରାଜା-ରାଣୀ ମହା ଅସୁବିଧାରେ ପଡ଼ିଥାନ୍ତି । ପୁଅଟି ଜନ୍ମହେଲା; ମାତ୍ର ସବୁବେଳେ ଖାଲି କାନ୍ଦୁଛି । ତାକୁ ତୁନି କରିବାକୁ ଯେତେ ଯାହା କରା-ଯାଉଛି, କେଉଁଥିରେ ତୁନି ହେଉନି । ରଜା, ରାଣୀ ଯିଏ କୋଳକୁ ନେଉ ପିଲାଟି ଚିତ୍କାର କରି କାନ୍ଦୁଥାଏ । ରାଜା ବଇଦ, ଜ୍ୟୋତିଷଙ୍କୁ ଡ଼କାଇଲେ । କେତେ ଝଡ଼ାଫୁଙ୍କା ହେଲା; ମାତ୍ର କାହିଁରେ ପୁଅର କାନ୍ଦ ବନ୍ଦ ହେଲାନି ।

ଶେଷରେ ରଜାଝିଅ ଆସି ରାଜାଙ୍କୁ କହିଲା— "ବାପା, ମୋତେ ଟିକିଏ କୁନି ପୁଅକୁ ଧରିବାକୁ ଦିଅ । ଦେଖିବା, ମୋ ପାଖକୁ ଆସିଲେ ସେ ଚୁପ୍ ହେଉଛି କି ନାହିଁ ।"

ରାଣୀ ତା' କଥା ଶୁଣି କହିଲେ— "ଦୂର୍ ପଗଲା। ଖବରଦାର, ତୁ ମୋ ପିଲାକୁ ଛୁଇଁବୁନା। ବଡ଼ ବଡ଼ ଗଣକ ଫସଗଲେ ପାରିଲେ ନାହିଁ, ଏ କହୁଛୁ ପୁଅକୁ ଖେଳେଇବ ?"

ରାଜା ପାଖରେ ଛିଡ଼ା ହୋଇଥିଲେ। ସେ ରାଣୀଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ପଚାରିଲେ— "ଏଥିରେ ଆପତ୍ତି କରିବାର କ'ଣ ଅଛି ? ତୁମେ କାହିଁକି ଝିଅଟା ଉପରେ ଏପରି ରାଗୁଛ ? ତାକୁ ପୁଅକୁ ଦେଇ ଦେଖ, ସେ ଭୁନ ହେଉଛି କି ନାହିଁ।" ଝିଅ ମୁଣ୍ଡରେ ହାତ ବୁଲେଇ କହିଲେ— "ନେ ଝିଅ, ପୁଅକୁ ନେ। ଡ଼ରନା, ମୁଁ କହୁଛି କୋଳକୁ ନେ।"

ରଜାଝିଅ ଭଉଣୀର ସାବତ ମା' ଆଡ଼କୁ ଚାହିଁ ପୁଅକୁ କୋଳରେ ଧରିଲା, ଗେଲ କଲା। ସଙ୍ଗେ ସଙ୍ଗେ ପୁଅର କାନ୍ଦିବା ବନ୍ଦ ହୋଇଗଲା। ରଜା-ଝିଅ ଗୀତ ବୋଲି ତାକୁ ଥାପୁଡ଼େଇଲା—

'ପୋଖରୀ ମାଛଟି ଥିଲା ସୁନାର
ଗଣେଶ ମନ୍ଦିରେ ନାଚେ ମୟୂର
ଶୁଣରେ ଭାଇ !
ମାଛ, ମୟୂରକୁ ରାଣୀ ଖାଇଗଲେ
ମରିଗଲେ ଦୁଇ ଭାଇ।'

ରଜାଝିଅର ଗୀତ ଶୁଣି ଟିକିପୁଅ ନ କାନ୍ଦି ହସିବାକୁ ଲାଗିଲା; ଭଉଣୀ ସହିତ ଖେଳିଲା। ଟିକିପୁଅ ହସିବା ଦେଖି ରାଜା ଖୁବ୍ ଖୁସି ହେଲେ। ଉଆସ ସାରା ଆନନ୍ଦର ଲହରୀ ଖେଳିଗଲା।

ରାଜା ଝିଅକୁ ପଚାରିଲେ— "ଆଲୋ, ତୋ ଗୀତ ଶୁଣି ପୁଅ କାହିଁକି ଭୁନ ହେଲା ? ଏତେ ବେଳଯାଏ ତ ସେ ଖାଲି କାନ୍ଦୁଥିଲା। ତୋ ଗୀତର ଅର୍ଥ କ'ଣ ମୁଁ ବୁଝିପାରୁନ।"

ରାଜକୁମାରୀ କହିଲା— "ବାପା, ଗୀତର ଅର୍ଥ ଖୁବ୍ ସହଜ। ରାଜାଙ୍କୁ ସେ ସବୁ କଥା କହିଲା। ରାଣୀ କପରି ଭାଇ ଭଉଣୀଙ୍କୁ କଷ୍ଟ ଦେଇଥିଲେ,

ଦୁଇଜଣଙ୍କୁ ମାରିବାକୁ କପଟ ବିଷ ଲଡୁ ଦେଇଥିଲେ, କପଟ ରାଜକୁମାର ମରିଗଲେ ଓ ସେ ବଞ୍ଚିଗଲା, କପଟ ରାଣୀ ସୁନାମାଛ ଓ ମୟୂରକୁ ମାରି ଖାଇଲେ ଏଇ ସବୁକଥା ସେ ବାପାଙ୍କୁ କହିଲା । ଶେଷରେ କହିଲା— "ବାପା ! ଏଇ ମୋର ସେଇ ସାନଭାଇ । ସେମାନେ ସେ ସପନେଇ ଏକଥା କହୁଛି । ମୋତେ ରକ୍ଷା କରିବାକୁ ନୂଆ ରାଣୀମା'ଙ୍କ ପେଟରୁ ଜନ୍ମ ନେଇଛି ।"

ଝିଅଠାରୁ ଦୁଃଖର କାହାଣୀ ଶୁଣି ରାଜାଙ୍କ ଆଖିରୁ ଲୁହ ଝରିବାକୁ ଲାଗିଲା । ସେ ଝିଅକୁ କୋଳକରି ନେଲେ । ଝିଅ କାନ୍ଦୁଥାଏ । ରାଜା ତା' ମୁଣ୍ଡରେ ହାତ ବୁଲାଇ କହିଲେ— "ଝିଅ କାନ୍ଦନା, ଆଉ ଏଣିକି ତୋର ଅସୁବିଧା ହେବନି । ମୁଁ ତୋତେ ଆଉ ରାଣୀ ପାଖରେ ରହିବାକୁ ଦେବନାହିଁ ।"

ରାଜା ରାଣୀଙ୍କ ଉପରେ ରାଗି ରକତ ବୁଜଳ ହେଉଥାନ୍ତି । ରାଣୀଙ୍କର ସବୁ ଦୋଷ ପଦାରେ ପଡ଼ିଗଲା । ସେ ଡରରେ ଆସି ରାଜାଙ୍କ ପାଦତଳେ ପଡ଼ିଗଲେ । ରାଜା ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଡାକି ଆଦେଶ ଦେଲେ— "ଏ ଦୁଷ୍ଟ ସ୍ତ୍ରୀକୁ ମୋ ଉଆସରୁ ବାହାର କରିଦିଅ । ତାକୁ ନେଇ ବନସ୍ତରେ ଛାଡ଼ିଲେ ମୁଁ ଶାନ୍ତିରେ ରହିବି ।"

ମନ୍ତ୍ରୀ ସଙ୍ଗେ ସଙ୍ଗେ ରାଣୀଙ୍କୁ ଉଆସରୁ ନେଇ ଜଙ୍ଗଲରେ ଛାଡ଼ିଦେଲେ । ସେଇ ଜଙ୍ଗଲରେ ସିଂହଟିଏ ରହୁଥିଲା, ସେ ରାଣୀଙ୍କୁ ମାରି ଖାଇଦେଲା ।

ରାଜକୁମାରୀ ଆନନ୍ଦରେ ରହିଲା । ଦାସୀ ପରିବାରୀ ତାକୁ ଖଟିଲେ । ସାନ ଭାଇଟି ସହିତ ଖେଳି ବୁଲି ସେ କାଳ କାଟିଲା ।

( ମହାରାଷ୍ଟ୍ର )



# ମଣିଚୋର

ସୌଦାଗରଟିଏ । ଧନ, ଜନ, ଗୋପ ଲକ୍ଷ୍ମୀ କେଉଁ କଥାରେ ତାର ଅଭାବ ନଥାଏ । ସାରା ଜୀବନ ଖଟି, ବୁଦ୍ଧି ଖଟାଇ ସେ ବହୁତ ସମ୍ପତ୍ତି କମେଇଛି । ଏବେ ସେ ବୁଢ଼ା । ନିଜେ ଆଉ କାମକୁ ନ ପାରିବାରୁ ଆପଣା ସମ୍ପତ୍ତି ପୁଅମାନଙ୍କ ଭିତରେ ବାଣ୍ଟିଦେବାକୁ ଠିକ୍ କଲା । ତାର ଚାରୋଟିଯାକ ପୁଅ ଏକୁ ଆରେକ ବଳି ଚାଲାକ ଚତୁର । ବଡ଼ ପୁଅକୁ ସେ ଟଙ୍କା କରଜ ବେଉସା ଓ ବଡ଼ ମଝିଆଁକୁ ଜେଜରତି ଦୋକାନ ବୁଝିବାକୁ ଦେଲା । ତୃତୀୟ ପୁଅକୁ ସେ ତାର ଲୁଗା ଦୋକାନ ଓ ସାନ ପୁଅକୁ ଜମିବାଡ଼ି ବିଷୟ ବୁଝି-ବାକୁ କହିଲା । ପୁଅମାନେ ମଧ୍ୟ ପରିଶ୍ରମୀ ଓ ଖୁବ୍ ପାରିବାର । ଅଳ୍ପଦିନ ମଧ୍ୟରେ ସେମାନେ ଯେ ଯାହା ବିଷୟରେ ଖୁବ୍ ଉନ୍ନତି କରିପାରିଲେ ।

ଦିନେ ବୁଢ଼ା ଖଟରେ ଶୋଇଥାଏ । ଚାରି ପୁଅକୁ କିଛି କହିବ ବୋଲି ଡ଼ାକି ପଠାଇଲା । ସେମାନଙ୍କୁ ପାଖରେ ବସାଇ କହିଲା— 'ଆରେ ପିଲାଏ ମୋର ତ ଦିନକାଳ ସରିଆସିଲା । ମୋର ଇଚ୍ଛା, ତୁମ୍ଭମାନେ ମୋ ଅନ୍ତେ ଯେପରି ମିଳିମିଶି ମନ ମିଳାଇ ଚଳିବ । କଳି କଜିଆ କରିବ ନାହିଁ । ଯାହାକୁ ଯେଉଁ ଦାୟିତ୍ୱ ଦେଲି ମନ ଲଗାଇ ସେଇ କାମ କରିବ । ଯାହାହେଉ, ମୁଁ ଆଜି ତୁମକୁ ଗୋଟିଏ ଗୁପ୍ତ କଥା କହିବ ବୋଲି ଡ଼ାକାଇଛି । ମୋର ଏଇ ଶୋଇଲା ଖଟର ଚାରି ଗୋଡ଼ତଳେ ମୁଁ ଚାରୋଟି ଦାମିକା ମଣି ରଖିଛି । ମୋ ଅନ୍ତେ ତୁମେମାନେ ଏହାକୁ ନେବ । ମାତ୍ର ମନେରଖ ଚାରିଜଣଯାକ ଏକାଠି ହୋଇ ଏହାକୁ ଖୋଳିକରି ଗୋଟିଏ ଲେଖାଁ ନେବ ।"

ଏହା କହିବାର କେତେମାସ ପରେ ବୁଢ଼ା ସବୁଦିନ ପାଇଁ ଆଖି ବୁଜିଲା । ପୁଅମାନେ ଦିନେ ଖଟ ଖୁରାତଳୁ ମଣି ଚାରୋଟି ଖୋଳି ବାହାର କରିବେ ବୋଲି ସ୍ଥିର କଲେ । ବୁଢ଼ାର ଶୋଇବା ଘରେ ଚାରିହେଁ ପହଞ୍ଚି ଖଟଗୋଡ଼ ତଳ ମାଟିକୁ ଖୋଳିଲେ । ମାତ୍ର ଆଶ୍ଚର୍ଯ୍ୟର କଥା ଖଟର ଚାରି ଗୋଡ଼ ତଳୁ ସେମାନେ ତିନ ଗୋଟି ମଣି ପାଇଲେ । ଖଟର ଗୋଟିଏ ଗୋଡ଼

ତଳେ ଥିବା ମଣିଟି ମିଳିଲା ନାହିଁ । ଏହାକୁ କିଏ ସେ ନେଲା ତାହା ସେମାନେ ଠିକ୍ କରି ପାରିଲେ ନାହିଁ । ସେମାନଙ୍କ ବାପାଙ୍କ ମିଛ କହିବା ଲୋକ ନୁହନ୍ତି । ସେ ଖଟ ତଳେ ନିଶ୍ଚୟ ଗୋଟିଏ ମଣି ରଖିଥିଲେ । ଏ ବିଷୟ ଚାରିଭାଇଙ୍କ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ତାହା ହେଲେ ନିଶ୍ଚୟ ସେମାନଙ୍କ ମଧ୍ୟରୁ କେହି କେତେବେଳେ ଆସି ଗୋଟିଏ ମଣି ଖୋଳି ନେଇଛି ।

ସେମାନେ ସ୍ଥିର କଲେ ସେଇ ମଣିଟିକୁ ସନ୍ଧାନ କରିବାକୁ ପଡ଼ିବ । ମାତ୍ର କିଏ ତାହା ନେଇଛି ଏହା ଯେପରି ଜଣା ନ ପଡ଼େ । କାରଣ, ଏହା ଜଣା ପଡ଼ିଲେ ସେମାନଙ୍କ ମଧ୍ୟରେ ମନ ଫଟାଫଟି ହୋଇଯିବ । ଯେ ନେଇଛି ତାକୁ ସମସ୍ତେ ଘୃଣା କରିବାକୁ ଆରମ୍ଭ କରିବେ । ତା ହେଲେ ବାପାଙ୍କ ଆତ୍ମା ଅସନ୍ତୁଷ୍ଟ ହେବ ।

ଏହା ହେବ ବା କିପରି ? ସେମାନେ ବହୁ ଚିନ୍ତା କଲେ । ମାତ୍ର କିପରି ଏହାର ସମାଧାନ ହେବ ତାହା ସ୍ଥିର କରିପାରିଲେ ନାହିଁ । ଶେଷରେ ସେମାନେ କର୍ମପୁର ରାଜାଙ୍କ ପାଖକୁ ଯିବାକୁ ଠିକ୍ କଲେ । ଜ୍ଞାନୀ ଓ ନ୍ୟାୟ-ବନ୍ତ ବୋଲି ତାଙ୍କର ଖୁବ୍ ନାଁ ।

ଚାରିଭାଇ ଦିନେ ତାଙ୍କ ପାଖେ ପହଞ୍ଚି ଏଇ ସବୁ ବିଷୟ ଜଣାଇ କହିଲେ—

"ପାଇବୁ ମଣି ଜାଣିବୁ ନାହିଁ
ନେଇଥିଲା ତା କିଏ,
ବଢ଼ିବ ସ୍ନେହ ଆମ ଭିତରେ
କର ସେହି ଉପାୟ ।"

ରାଜା ସବୁ ବିଷୟ ଧୈର୍ଯ୍ୟର ସହିତ ଶୁଣି କହିଲେ—

"ତୁମେ ଆଜି ମୋ ଅତିଥି ଶାଳାରେ ରୁହ, କାଲି ମୁଁ ତୁମ କଥା ବୁଝିବି ।" ସେମାନଙ୍କୁ ଅତିଥି ଶାଳାରେ ରହିବାକୁ ଦିଆଗଲା । ସେମାନଙ୍କ ଲାଗି ନାନା ପ୍ରକାର ଖାଦ୍ୟର ମଧ୍ୟ ବ୍ୟବସ୍ଥା ହେଲା । ଠିକ୍ ସମୟରେ

ସେମାନେ ଖାଇ ବସିଲେ । ଖାଉ ଖାଉ ସେମାନଙ୍କ ମଧ୍ୟରୁ ଜଣେ କହିଲା— "ଭାଇ, ଇଏ ରାଜାଘରର ଖାଦ୍ୟ ହେଲେବି ଯେଉଁ ଅଟାରେ ଏଇ ପିଠା ତିଆରି ହୋଇଛି, ସେଥିରେ ରକ୍ତ ମିଶିଥିଲା ପରି ଜଣା ପଡୁଛି ।"

ଆଉ ଜଣେ କହିଲା—"ଯେଉଁ ଘିଅରେ ଏସବୁ ତିଆରି ହୋଇଛି ତାହା ମଧ୍ୟ ରହଣିଆ ।"

ଅନ୍ୟ ଜଣକ କହିଲା—"ଯେଉଁ ଦୁଧରେ ଖିରି ହୋଇଛି ସେଥିରେ ମଧ୍ୟ ଆଉ କେଉଁ ଦୁଧ ମିଶି ଯାଇଛି ।"

ଚତୁର୍ଥ ଭାଇ ଜଣକ କହିଲା— "ପତରର ଗୁଡ଼ାକରେ ମଧ୍ୟ ଗୋବର ଲାଗିଥିଲା ଭଳି ଲାଗୁଛି ।"

ପାଖରେ ଥିବା ଚାକରାଣୀଟି ଭାଇମାନଙ୍କ କଥା ଶୁଣୁଥିଲା । ସେ ଯାଇ ଏହା ରାଜାଙ୍କୁ କହିଦେଲା । ରାଜା ଏହା ଶୁଣି ଖୁବ୍ ରାଗିଗଲେ । ପ୍ରକୃତ କଥା ବୁଝିବା ଲାଗି ସେ ସକାଳ ହେବା ମାତ୍ରେ ଭାଇମାନଙ୍କୁ ଡକାଇଲେ । ଖମାରୋଇ ମଧ୍ୟ ଡକା ହୋଇ ଆସିଲା, ଖମାରୋଇ କହିଲା—"ମହାରାଜ ! ଯେଉଁ ଗହମରୁ ଚୁନି, ପିଠାସବୁ ହୋଇଛି ତାହା କୃଷୀ ବଳରାମ ଘରୁ ଅଣାହୋଇଛି । ବଳରାମ ଡକା ହୋଇ ଆସିଲା । ସେ ହାତ ଯୋଡ଼ି କହିଲା— "ହଜୁର ଗହମ ଅମଳ ହେଲାବେଳେ ଗୋଟିଏ ବଣୁଆ ଘୁଷୁରି ମୋ କ୍ଷେତ ଆଡ଼େ ଆସିଥିଲା । ମୁଁ ତାକୁ କାଣ୍ଡ ଶର ମାରିଲି । ସେଇଟା ଆସି ଗହମ ଗଦା ଉପରେ ପଡ଼ି ମରିଗଲା । ତା ରକ୍ତ ପ୍ରକୃତରେ ଗହମରେ ମିଶିଯାଇଛି । ମୁଁ ସେ ଗୁଡ଼ିକୁ ହେଳାରେ ଅଲଗା କରିପାରିନାହିଁ । ମୋ ଦୋଷ କ୍ଷମା କରନ୍ତୁ ।"

ଘିଅ ବିଷୟ ବୁଝିବାରୁ ଜଣାଗଲା ସେ ଗୁଡ଼ିକ ପ୍ରକୃତରେ ରହଣିଆ ହୋଇଛି । ଦୁଧ ବିଷୟ ବୁଝିବା ପାଇଁ ଗଉଡ଼କୁ ଡକା ହେଲା । ତା ପାଖରୁ ଜଣାଗଲା ଯେ, ଯେଉଁଠି ସେ ଦୁଧ ହାଣ୍ଡିଟା ରଖିଥିଲା ତା ପାଖେ ଗଉଡ଼ୁଣୀ ବସି ତା ଛୁଆକୁ କ୍ଷୀର ଖୁଆଉଥିଲା । ଛୁଆ କୋଳରେ ବସି ମୁହଁ ବୁଲାଇଲା ବେଳେ ମା ଥନରୁ କିଛି କ୍ଷୀର ଆସି ହାଣ୍ଡିରେ ପଡ଼ିଯାଇଛି । ଗଉଡ଼ ତା ଦୋଷ ମାନିଲା ଓ ଆଉ ଏପରି କରିବ ନାହିଁ ବୋଲି ଅନୁନୟ କଲା ।

ତେଣୁ ଦନା ବକାଳ ଠାରୁ ମଧ୍ୟ ଜଣାଗଲା ଯେ ପଥରରେ ଗୋବର ଲାଗିଯାଇଥିଲା ଓ ସେ ତାକୁ ଧୋଇ ସେଥିରେ ଦନା ତିଆରି କରିଥିଲା ।

ଗୃହଭାଇଙ୍କ କଥା ଠିକ୍ ବୋଲି ଜଣାପଡିଲା ଓ ତାଙ୍କ ପାଖ ଲୋକେ ଗୃହଭାଇଙ୍କ ଅନୁଭବଶକ୍ତି ଓ ବୁଦ୍ଧି ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ରାଜା ଠିକଏ ଭାବି କହିଲେ—'ତୁମମାନଙ୍କର ବୁଦ୍ଧି, ଜ୍ଞାନ ଓ ଅନୁଭବଶକ୍ତି, ବାସ୍ତ-ବିକ ଅଦ୍‌ଭୁତ । ମାତ୍ର ଆଶ୍ଚର୍ଯ୍ୟର କଥା, ତୁମ ଭିତରୁ କିଏ ଏହି ମଣି ଚୋରି କରିଛି ତାହା ତୁମେମାନେ ଜାଣି ପାରୁନ କିପରି ? ଯାହାହେଉ ମାନୁଛି, ମୁଁ ତୁମର ଏଇ ସମସ୍ୟାର ସମାଧାନ କରି ପାରିବି ନାହିଁ । । ତୁମେମାନେ ଧର୍ମ-ପୁର ରାଜାଙ୍କ ପାଖକୁ ଯାଅ, ସେ ନିଶ୍ଚୟ ତୁମ ପ୍ରଶ୍ନର ମୀମାଂସା କରିଦେବେ ।' ଭାଇମାନେ ଧର୍ମପୁରକୁ ବାହାରିଲେ—ଯାଉ ଯାଉ ବଡ଼ ଭାଇ କହିଲା—"ମୋର ମନେ ହେଉଛି, ଏଇ ବାଟରେ ଗୋଟିଏ ଓଟ ଯାଇଥିଲା ।"

ଦ୍ୱିତୀୟ ଭାଇ କହିଲା—"ହଁ ତୁମ କଥା ଠିକ୍ । ସେହି ଓଟଟା ଖାଲି ଛୋଟା ନୁହେଁ, କଣା ମଧ୍ୟ ।"

ତୃତୀୟ ଭାଇ କହିଲା—"ତାର ଗୋଟିଏ ଦାନ୍ତ ମଧ୍ୟ ଭାଙ୍ଗିଯାଇଛି ।"

ସାନଭାଇ କହିଲା—"ମୁଁ ଭାବୁଛି, ସେଇ ଓଟ ଉପରେ ଜଣେ ଗର୍ଭବତୀ ସ୍ତ୍ରୀ ଲୋକ ବସି ଯାଉଥିଲା ।"

ବାଟ ଦେଖାଇବା ଲାଗି ସେମାନଙ୍କ ସହିତ ଜଣେ ଲୋକ ଯାଇଥିଲା । ଧର୍ମପୁରରେ ସେମାନେ ପହଞ୍ଚିଲା ପରେ ସିଏ ଯାଇ ପ୍ରଥମେ ରାଜାଙ୍କ ପାଖେ ପହଞ୍ଚି ଭାଇମାନେ ବାଟରେ କଣ କଥାବାର୍ତ୍ତା ହେଉଥିଲେ ତାହା ତାଙ୍କୁ କହିଲା ।

ରାଜା ଭାଇମାନଙ୍କୁ ପଚାରିଲେ—"ତୁମେମାନେ ଆସିଲାବେଳେ ଜଣେ ଗର୍ଭବତୀ ସ୍ତ୍ରୀ ଲୋକ ଗୋଟାଏ ଛୋଟା, କଣା ଓ ଦାନ୍ତଟିଏ ନଥିବା ଓଟ ଉପରେ ବସି ସେହି ବାଟରେ ଯାଉଥିବା କଥା ଜାଣିଲ କିପରି ?"

ବଡ଼ଭାଇ କହିଲା- "ମହାରାଜ, ବାଟରେ ମୁଁ ଦେଖିଲି ଓଟର ଚାଲିବା

ପାଦର ଚିହ୍ନ ସ୍ପଷ୍ଟଭାବରେ ପଡ଼ୁଛି, ମାତ୍ର ଆଜ ଗୋଟିଏ ପାଦର ଚିହ୍ନ ସେତେ ସ୍ପଷ୍ଟଭାବରେ ପଡ଼ୁନାହିଁ । ଏଣୁ ମୁଁ ଅନୁମାନ କଲି ଓଟଟା ନିଶ୍ଚୟ ଛୋଟା ହୋଇଥିବ ।"

ଦ୍ୱିତୀୟ ଭାଇ କହିଲା—"ଓଟଟା ରାସ୍ତାର ଗୋଟିଏ ପଟର ଘାସ ଚରିଛି, ଏଣୁ ମୁଁ ଅନୁମାନ କରି କହୁଥିଲି ସେଟା କଣା ।

ତୃତୀୟ ଭାଇ କହିଲା—"ସେ ଯେଉଁ ପଟେ ଚରିଛି ସେପଟେ ମଧ୍ୟ ଠାଏ ଠାଏ ଘାସ ଗୁଡ଼ ଛିଣ୍ଡି ଯାଇଛି, ଏଥିରୁ ମୁଁ ଅନୁମାନ କଲି ତାର ଗୋଟିଏ ଦାନ୍ତ ନାହିଁ ।"

ସାନଭାଇ କହିଲା- "ଗୋଟିଏ ଯାଗାରେ ଓଟଟା ବିଶ୍ରାମ ନେଇଥିଲା । ସେଠି ମଣିଷ ହାତର ଯେଉଁ ଚିହ୍ନ ଦେଖିଲି, ସେଥିରୁ ମୁଁ ବୁଝିପାରିଲି ଏହା ଜଣେ ଗର୍ଭବତୀ ସ୍ତ୍ରୀ ଲୋକର ହୋଇଥିବ ।"

ଭାଇମାନଙ୍କର କଥା ଶୁଣି ଧର୍ମପୁର ରଜା କହିଲେ— "ତୁମମାନଙ୍କ ଭିତରୁ ମଣିଚୋରକୁ ଠିକ୍ କରିବା ଖୁବ୍ କଷ୍ଟକର । ତୁମେମାନେ ମୋ ଝିଅ ପାଖକୁ ଯାଅ, ସେ ଧାର ନଗରରେ ଥାଏ, ସେ ନିଶ୍ଚୟ ତୁମ ପ୍ରଶ୍ନ ସମାଧାନ କରିଦେବ ।"

ଭାଇମାନେ ଧାର ନଗରକୁ ଗଲେ । ସେଠି ଜାଣିବାକୁ ପାଇଲେ, ରଜାଙ୍କ ଝିଅ ଉଆସ ଭିତରେ ପରଦା ପଛ ଆଡ଼େ ବସନ୍ତି । ଲୋକଙ୍କଠାରୁ ସବୁ କଥା ଶୁଣି ତାଙ୍କ ନିଷ୍ପତ୍ତି ଜଣାଇ ଦିଅନ୍ତି । ତାଙ୍କ ଉଆସର ଫାଟକ ଆଗରେ ଗୋଟିଏ ବଡ଼ ନାଗରା ରଖା ଯାଇଥାଏ । ବିଚାର ଚାହୁଁଥିବା ଲୋକ ସେହି ନାଗରା ବଜାଇଲେ ତାକୁ ରଜାଝିଅ ପାଖକୁ ନିଆଯାଏ ।

ଭାଇମାନେ ନାଗରା ବଜାଇ ବାରୁ ରଜା ଝିଅ ଆସି ପରଦା ପଛପଟେ ବସିଲେ । ସେମାନେ ତାଙ୍କ ପାଖକୁ ଯାଇ କହିଲେ— "ଆମେ ଚାରିଭାଇ ଏକାଠି ରହିବାକୁ ଚାହୁଁ । ଆମ ଭିତରେ ଯେପରି ମନୋମାଳିନ୍ୟ ବା କଳ-

କଜିଆ ନ ହୁଏ, ତାହାହିଁ ଆମର ଇଚ୍ଛା । ଏମିତି କିଛି ବ୍ୟବସ୍ଥା ଆମ ପାଇଁ କରନ୍ତୁ ଯେପରି—

"ପାଇବୁ ମଣି ଜାଣିବୁ ନାହିଁ ତା ନଇଥିଲା କଏ,
ବଢିବ ସ୍ନେହ ଆମ ଭିତରେ କର ସେହି ଉପାୟ ।"

ଧର୍ମପୁରର ରାଜାଝିଅ, ଭାଇମାନଙ୍କ କଥା ମନ ଦେଇ ଶୁଣି କହିଲା— "ଆଚ୍ଛା ହଉ, ତୁମେମାନେ ଆଜି ରାତିଟା ଏଇଠି ରୁହ । ମୁଁ ତୁମକୁ ସାହାଯ୍ୟ କରିବାକୁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିବ ।"

ଭାଇମାନେ ରାଜି ହେଲେ । ରାଜାଝିଅ ପ୍ରତ୍ୟେକଙ୍କ ରହିବା ପାଇଁ ଅଲଗା ଅଲଗା ବ୍ୟବସ୍ଥା କରିଦେଲେ । ସେମାନଙ୍କର ଆଉ ଦେଖାଗୁହାଁ ବା କଥା-ବାର୍ତ୍ତା ହୋଇପାରିଲା ନାହିଁ । ରାଜାଝିଅ ସେମାନଙ୍କ ଗତି ବିଧି ଲକ୍ଷ୍ୟ କରିବା ଲାଗି ନିଜ ଲୋକଙ୍କୁ ଲଗାଇ ଦେଇଥାନ୍ତି ।

ତା ପରଦିନ ରାଜାଝିଅ ବଡ଼ଭାଇଙ୍କୁ ଡ଼କାଇ ପଠାଇଲେ, ସେ ଆସି-ବାରୁ ପରଦା ଟେଉପଟେ ରହି ସେ ତାଙ୍କୁ ପ୍ରଥମେ ଏଇ କଥାଟା କହିଲେ—

ଜଣେ ରାଜା ଥିଲେ । ତାଙ୍କ ପୁଅ ଓ ମନ୍ତ୍ରୀ ପୁଅ ଦୁହିଁଙ୍କ ମଧ୍ୟରେ କ୍ଷୀର ନୀର ସମ୍ପର୍କ । କେହି କାହାକୁ ଦଣ୍ଡେ ଛାଡ଼ି ରହି ପାରନ୍ତି ନାହିଁ । ଦିନେ ଦୁହେଁ ଯାକ ପ୍ରତିଜ୍ଞା କଲେ, ସେମାନଙ୍କ ମଧ୍ୟରୁ ଯିଏ ବିବାହ କରିବ ସେ ତା ସ୍ତ୍ରୀକୁ ବିବାହର ପ୍ରଥମ ଦିନ ତା ସାଙ୍ଗ ପାଖକୁ ପଠାଇବ । ତା ହେଲେ ସେମାନଙ୍କ ବନ୍ଧୁତ୍ୱ ହେବ ଅଧିକ ଘନିଷ୍ଠ ।

କେତେ ବର୍ଷପରେ ରାଜା ପୁଅ ପ୍ରଥମେ ବାହାହେଲା । ତା ସ୍ତ୍ରୀ ଘରଆସକୁ ଆସିଲା । ରାଜାପୁଅ ସାଙ୍ଗ ପାଖେ କରିଥିବା ପ୍ରତିଜ୍ଞା ବିଷୟ ଭୁଲି ନଥାଏ । ସେ ତା ସ୍ତ୍ରୀକୁ ସେହି କଥା କହିଲା । ସ୍ତ୍ରୀ କହିଲା—"ଆପଣଙ୍କ ପ୍ରତିଜ୍ଞା ଓ ଇଚ୍ଛାକୁ ପାଳିବାତ ମୋର କର୍ତ୍ତବ୍ୟ ।" ମନ୍ତ୍ରୀ ପୁଅକୁ ଭେଟିବା ଲାଗି ସେ ବାହାରିଲା । ଏକୁଟିଆ କିଛି ଦୂର ଗଲାପରେ ଯୋଗକୁ ସେ ଦିନେ ଡ଼କାୟତଙ୍କ

ହାବୁଡ଼ରେ ଚଢ଼ିଗଲା । ବହୁତ ମୂଲ୍ୟବାନ ଅଳଙ୍କାର ସେ ପିନ୍ଧିଥାଏ । ଡ଼କାୟତମାନେ ତାକୁ ଅଟକାଇ ସେହି ଅଳଙ୍କାର ଗୁଡ଼ିକ ଛଡ଼ାଇ ନେବାକୁ ବସିଲେ । ଡ଼କାୟତମାନଙ୍କୁ ସେ ଖୁବ୍ ବିନୟରେ ଅନୁରୋଧ କରି କହିଲା—"ଦେଖନ୍ତୁ ଆପଣମାନେ ମୋର ବାପା ଭଲ । ମୁଁ ହେଉଛି ରାଜକୁମାରଙ୍କ ସ୍ତ୍ରୀ । ତାଙ୍କ ପ୍ରତିଜ୍ଞା ରକ୍ଷା କରିବା ଲାଗି ମୁଁ ତାଙ୍କ ବନ୍ଧୁ ମନ୍ତ୍ରୀ ପୁଅଙ୍କ ସଙ୍ଗେ ଦେଖା କରିବାକୁ ଯାଉଛି । ଆଜି ହେଉଛି ମୋ ବିବାହର ପ୍ରଥମ ରାତି । ମୋତେ ଦୟାକରି ଯିବାକୁ ଦିଅନ୍ତୁ । ମୁଁ ଫେରି ଆସିଲାବେଳେ ଆନନ୍ଦରେ ଆପଣଙ୍କୁ ମୋର ସବୁ ଅଳଙ୍କାର ଦେବି ।"

ଡ଼କାୟତମାନେ ଏ ବିଷୟରେ ବିଚାର କଲେ । ଜଣେ କହିଲା-"ରାଜାପୁଅଙ୍କ ସ୍ତ୍ରୀ, ପୁଣି ସେ ଜଣେ ବିଖ୍ୟାତ ଲୋକର ଝିଅ । ଏଣୁ ଖୁବ୍ ସମ୍ଭବ ସେ ପରେ ଆମକୁ ଠକାଇ ଦେବେ ।" ଆଉ ଜଣେ କହିଲା— "କୋଉ ବିଶ୍ୱାସ ତା କଥାରେ—ଏଇ ଝିଅଟା କଥାରେ ପଡ଼ି ତାକୁ ଛାଡ଼ି ଦେବାଟା ଆମ ପକ୍ଷେ ବୋକାମି ହେବ ।"

ମାତ୍ର ଡ଼କାୟତ ସର୍ଦ୍ଦାରର ସ୍ତ୍ରୀ, ଲୋକଟି ପ୍ରତି ଦୟା ହେଲା । ସେ ତାକୁ କହିଲା—"ଆଚ୍ଛା ହେଉ, ତୁମେ ଯାଅ । ମାତ୍ର ମନେରଖ ସେଠାରୁ ଫେରିଲା ପରେ ତୁମକୁ ତୁମ କଥା ପାଳିବାକୁ ପଡ଼ିବ ।"

ରାତିଅଧ ବେଳକୁ ରାଜକୁମାରଙ୍କ ସ୍ତ୍ରୀ ଯାଇ ମନ୍ତ୍ରୀପୁଅଙ୍କ ଘର ପାଖରେ ପହଞ୍ଚିଲେ । ସେ ଆସିବେ ବୋଲି ମନ୍ତ୍ରୀ ପୁଅ ଅପେକ୍ଷା କରିଥାନ୍ତି । ତାଙ୍କ ଆସିବା ପାଦ ଶବ୍ଦ ଶୁଣି ମନ୍ତ୍ରୀପୁଅ ତାଙ୍କୁ ପାଛୋଟି ନେବାକୁ ଧାଇଁ ଆସିଲେ । ଦୁଆର ମୁହଁକୁ ଆସି କହିଲେ—"ଆସ ଭଉଣୀ ଆସ, ତୁମକୁ ମୁଁ ଅନେକ ବେଳୁ ଅପେକ୍ଷା କରି ରହିଛି ।"

ରାଜାପୁଅଙ୍କ ସ୍ତ୍ରୀ ଓ ମନ୍ତ୍ରୀପୁଅ ଘର ଭିତରକୁ ଗଲେ । ମନ୍ତ୍ରୀପୁଅ ତାଙ୍କୁ ଉପହାର ଭାବେ ନୂଆଶାଢ଼ୀ ଓ କେତେ ଅଳଙ୍କାର ଦେଇ କହିଲେ, "ଏହା ହେଉଛି ସାନଭାଇର ବଡ଼ ଭଉଣୀକୁ ସାମାନ୍ୟ ଉପହାର । ଭାବୁଛି, ଏହାକୁ ଗ୍ରହଣ କରିବାକୁ ତୁମେ ଆପତ୍ତି ହେବ ନାହିଁ ।"

ମନ୍ତ୍ରୀପୁଅ ବନ୍ଧୁ ଦମ୍ପତିଙ୍କୁ ଖାଇବାକୁ ଦେଲେ, ତାଙ୍କ ପାଦ ଧୂଳି ନେଇ ପ୍ରଣାମ ଜଣାଇ ବିଦାୟ ଦେଲେ ।

ରାଜକୁମାରଙ୍କ ସ୍ତ୍ରୀ ଫେରିଲା ବେଳକୁ ଡ଼କାୟତମାନଙ୍କୁ ଦେଖି କହିଲେ, "କଥା ରକ୍ଷା କରି ମୁଁ ଏବେ ଫେରି ଆସିଛି । ଆପଣମାନେ ମୋର ଏହି ଅଳଙ୍କାର ଗ୍ରହଣ କରନ୍ତୁ ।" ଏହା କହି ସେ ଆପଣା ଦେହରୁ ଗୋଟି ଗୋଟି କରି ଅଳଙ୍କାର ସବୁ ଖୋଲିବାକୁ ଲାଗିଲେ । ଏହା ଦେଖି ଡ଼କାୟତ ଦଳପତିଙ୍କ ଆଖି ଲୁହରେ ଓଦା ହୋଇଗଲା । ଲକ୍ଷାଧିକ ଟଙ୍କାର ଅଳଙ୍କାର ବିନା ଚେଷ୍ଟାରେ ଓ ଏତେ ସହଜରେ ମିଳିଯିବା ଦେଖି ଡ଼କାୟତମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଦଳପତି କହିଲେ—"ଆଲୋ ମା, ତୁ ଆଉ ତୋ ଦେହରୁ ଅଳଙ୍କାର କାଢ଼ନା । ତୁ ତ ଆମକୁ ବାପା ବୋଲି କହି ସାରିଲୁଣି । ଆମେ ଆଉ ତୋ ଅଳଙ୍କାର ନେବୁ କିପରି ?" ଏହା କହି ସେ ଓଲଟି ତାକୁ ଗୋଟିଏ ହୀରାର ହାର ଦେଇ ଘରକୁ ଯିବାକୁ କହିଲା ।

"ରାଜକୁମାରୀ ଘରେ ପହଞ୍ଚି ରାଜକୁମାରଙ୍କୁ ସବୁ କଥା କହିଲେ ।"

ଧର୍ମପୁର ରାଜକୁମାରୀ ଏହି କଥାଟି ବଡ଼ଭାଇକୁ କହି ପଚାରିଲା– "ଏଇ ଗପଟିତ ଶୁଣିଲ—ଏଥର ରାଜାପୁଅ, ମନ୍ତ୍ରୀପୁଅ, ରାଜପୁଅର ସ୍ତ୍ରୀ ଓ ଡ଼କାୟତ ସମ୍ପର୍କରେ ତୁମର ଧାରଣା କ'ଣ କ'ଣ କହିଲ ?"

ବଡ଼ଭାଇ କହିଲା—"ମୁଁ ଭାବୁଛି ସେମାନେ ସମସ୍ତ ଭଲ ଲୋକ. ରାଜାପୁଅ କଥା ରଖିବାକୁ ଯାଇ ନିଜ ସ୍ତ୍ରୀକୁ ବିବାହ ଦିନ ରାତିରେ ବି ନିଜ ପାଖରୁ ଯାଆଁକୁ ପଠାଉଛି । ଏମିତି ଲୋକ କୋଟିକରେ ଗୋଟିଏ ବି ମିଳିବେ କି ନାହିଁ ସନ୍ଦେହ । ରାଜାପୁଅର ସ୍ତ୍ରୀକୁ ମଧ୍ୟ ପ୍ରଶଂସା କରିବାକୁ ହେବ, ସ୍ୱାମୀଙ୍କ ସତ୍ୟ ରକ୍ଷା କରିବାକୁ ସେ ଆପଣାର କର୍ତ୍ତବ୍ୟ ମନେ କରୁଛି । ବିବାହର ପ୍ରଥମ ରାତିରେ ସ୍ୱାମୀକୁ ଛାଡ଼ି କେଉଁ ସ୍ତ୍ରୀ ଏ କାମ କରିବାକୁ ଯିବ ? ମନ୍ତ୍ରୀପୁଅ ମଧ୍ୟ ଠିକ୍ ସେପରି ବିଶ୍ୱାସୀ, ବନ୍ଧୁ ପ୍ରିୟ । ନିଜ ଘରେ ଜଣେ ତରୁଣୀ ସ୍ତ୍ରୀକୁ ପାଇ ସେ ତାକୁ ଭଉଣୀ ବୋଲି ଗ୍ରହଣ କରୁଛି ଓ ସେହିପରି ବ୍ୟବହାର କରୁଛି । ଡ଼କାୟତମାନେ ମଧ୍ୟ ଖୁବ୍ ଭଲ ଲୋକ । ବାପ, ଝିଅ ପ୍ରତି ଯାହା

କରିବା କଥା ସେମାନେ ରାଜକୁମାରୀ ପ୍ରତି ସେହି ବ୍ୟବହାର କରନ୍ତୁ । ମୋ ବନ୍ଧୁରରେ ସମସ୍ତେ ସାଧୁ ଓ ସତ୍ୟକୁ ମାନ କରନ୍ତୁ ।”

ବଡ଼ ପୁଅକୁ ବିଦାୟ ଦେଇ ରାଜକୁମାରୀ ତା ତଳ ଭାଇକୁ ଡ଼କାଇଲେ । ତାକୁ ମଧ୍ୟ ସେହି ଗପଟି ଶୁଣାଇ ତା’ଠାରୁ ମଧ୍ୟ ସେହି ଉତ୍ତର ପାଇଲେ । ତୃତୀୟ ଭାଇ ମଧ୍ୟ ଗପଶୁଣି ସେ ଏକା ଉତ୍ତର ଦେଲା ।

ଶେଷରେ ସାନପୁଅକୁ ଡକା ହେଲା, ରାଜକୁମାରୀ ତା ଆଗେ ସେହି ଗପଟି କହି, ସେହି ଲୋକମାନଙ୍କ ସମ୍ପର୍କରେ ତା’ର ମତାମତ ଜାଣିବାକୁ ଚାହିଁଲେ । ମାତ୍ର ସାନଭାଇର ଉତ୍ତର ଥିଲା ସମ୍ପୂର୍ଣ୍ଣ ଅଲଗା । ସେ କହିଲା— “ଆପଣ ଯଦି ମୋର ନିରପେକ୍ଷ ମତ ପଚାରନ୍ତି ତେବେ ମୁଁ କହିବି, ସେହି ରାଜକୁମାର ପୁରାପୁରି ବୋକା । ନିଜ ସ୍ତ୍ରୀକୁ ରାତି ଅଧରେ ବନ୍ଧୁ ଘରକୁ ପଠାଇବାଟା ବୋକାମି ନୁହଁତ ଆଉ କ’ଣ ? ଏମିତି ସତ୍ୟ ରକ୍ଷା କରିବାକୁ ଧିକ୍ । ରାଜାପୁଅ ସ୍ତ୍ରୀର ଚରିତ୍ର ନିଶ୍ଚୟ ଖରାପ । ତା’ ନହେଲେ ରାତି ଅଧରେ ଜଣେ ପରପୁରୁଷ ଘରକୁ ଯିବାକୁ କେଉଁ ସ୍ତ୍ରୀ ବା ମଙ୍ଗିବ ? ଖରାପ ସ୍ତ୍ରୀ ଲୋକ ହୋଇଥିବାରୁ ହିଁ ସେ ସଙ୍ଗେ ସଙ୍ଗେ ସ୍ୱାମୀ କଥାମାନି ତାଙ୍କୁ ବାହାରି ପଡ଼ିଲା । ମନ୍ତ୍ରୀ ପୁଅଟା ମଧ୍ୟ କପଟ ଓଲୁ । ଆପଣା ଘରେ ଆସିଥିବା ତରୁଣୀଟା ସଙ୍ଗେ ଭାବ ନ କରି ସେ ତାକୁ ଘରୁ ବିଦା କରିଦେଲା । ଡ଼କାୟତମାନେ ମଧ୍ୟ ବୋକା ଏପରି ସୁଯୋଗ ପାଇ ମଧ୍ୟ ସେମାନେ କିଛି ଲଭ କରିପାରିଲେ ନାହିଁ ।

ରାଜକୁମାରୀ ସାନଭାଇର ମତାମତ ଶୁଣି ବୁଝିପାରିଲେ, ଏଇ ହେଉଛି ପ୍ରକୃତ ଦୋଷୀ । ସେ କହିଲେ— “ତାହେଲେ ତୁମେଇ ମିଳୁ ନ ଥିବା ମଣିକ ଚୋର କରିଛ । ସଙ୍ଗେ ସଙ୍ଗେ ସେଇଟି ବାହାର କରି ମୋତେ ଦେଇ ଦିଅ । ନୋହିଲେ ତୁମକୁ ଏପରି ଶିକ୍ଷା ଦେବି ଯେ ତାହା ତୁମେ ଜୀବନରେ ଭୁଲି ପାରିବ ନାହିଁ ।”

ସାନଭାଇ ପ୍ରଥମେ ଗାଲୁ ଭୁରୁଡ଼ି ମାରିଲା । ମାତ୍ର ପରେ ବୁଝିପାରିଲା କହିଁଠି ନ ଦେଲେ ତା’ର ରକ୍ଷା ନାହିଁ । ଆପଣା ପକେଟରୁ ମଣିଟି ବାହାର କରି ସେ ରାଜକୁମାରୀଙ୍କୁ ଦେଇଦେଲା ।

ରାଜକୁମାରୀ ଅନ୍ୟ ଭାଇମାନଙ୍କଠାରୁ ମଣି ଛଅଗୋଟି ସଂଗ୍ରହ କରି ରଖିଥିଲେ। ଏବେ ସାତୋଟିଯାକ ମଣିକୁ ସେ ସାତଭାଇଙ୍କୁ ଡକାଇ ସମସ୍ତଙ୍କୁ ଗୋଟିଏ ଗୋଟିଏ କରି ଦେଇ ଦେଲେ।

ଏହାପରେ ତେବେ ହଜିଲା ମଣିଟି ମିଳିଲା। ମାତ୍ର କିଏ ମଣିଟି ଲୁଚାଇ ନେଇଥିଲା, ତାହା କେହି ଜାଣିପାରିଲେ ନାହିଁ। ଭାଇମାନେ ଯେ ଯାହାର ଗୋଟିଏ ଲେଖାଁ ମଣି ପାଇଲେ। ସମସ୍ତେ ମିଳିମିଶି ଖୁସିରେ ରହିଲେ।

( ମଧ୍ୟ ଭାରତ )



# ଝିଅର ପସନ୍ଦ

ଗାଁ ମଝିରେ ପଣ୍ଡିତଙ୍କ ଘର। ପଣ୍ଡିତଙ୍କୁ ସମସ୍ତେ ମାନନ୍ତି। ତାଙ୍କର ଗୋଟିଏ ବୋଲି ଝିଅ। ପିଲାଦିନୁ ଗେଲବସରରେ ବଢ଼ିଥାଏ। ଝିଅଟି ବଡ଼ ହେଲା। ତାକୁ ବାହା ହେବାଲାଗି କେତେଆଡ଼ୁ ପ୍ରସ୍ତାବ ଆସିଲା; ହେଲେ କ'ଣ ହେବ, ଝିଅର କୌଣସିଟି ପସନ୍ଦ ହେଲା ନାହିଁ। ସେ ଠିକ୍ କଲା, ଯାହାକୁ ସମସ୍ତେ ମାନୁଥିବେ ବା ଯିଏ ସବୁଠାରୁ ଶକ୍ତିଶାଳୀ ହୋଇଥିବ ସେ ତାକୁ ହିଁ ବାହା ହେବ।

ଦିନେ ସେଇ ଗାଁକୁ ସେଇ ରାଇଜର ରାଜା ଆସିଥିଲେ। ଝିଅଟି ଦେଖିଲା ଆଖପାଖ ଗାଁଗଣ୍ଡାର ସବୁଲୋକ ଆସି ତାଙ୍କୁ ନଇଁକରି ନମସ୍କାର କରୁଛନ୍ତି। ସେ ବୁଝିପାରିଲା, ରାଜା ହେଉଛନ୍ତି ସବୁଠାରୁ ଶକ୍ତିଶାଳୀ, ଏଣୁ ତାଙ୍କୁ ବାହା

ହେବାକୁ ସ୍ଥିର କଲା । ରାଜା ହାତୀରେ ବସି ତାହାଙ୍କୁ ବାହାରିଲେ । ପଣ୍ଡିତଙ୍କ ଝିଅ ମଧ୍ୟ ହାତୀ ପଛେ ପଛେ ଚାଲିଲା । କିଛିବାଟ ଯାଇ ଯାଇ ରାଜା ଦେଖିଲେ ତାଙ୍କ ଗୁରୁ ସାଧୁବାବା ଚାଲି ଚାଲି ଆସୁଛନ୍ତି । ସେ ସଙ୍ଗେ ସଙ୍ଗେ ହାତୀରୁ ଓହ୍ଲାଇ ପଡ଼ିଲେ; ସାଧୁ ବାବାଙ୍କ ପାଦ ଛୁଇଁ ନମସ୍କାର କଲେ । ପଣ୍ଡିତଙ୍କ ଝିଅ ଏହା ଦେଖି ବୁଝିଲା, ରାଜା ସବୁଠୁ ବଡ ନୁହନ୍ତି । ରାଜାଙ୍କଠାରୁ ବଡ଼ ହେଉଛନ୍ତି ସାଧୁ ବାବା । ଏଣୁ ସେ ରାଜାଙ୍କୁ ଛାଡ଼ି ସାଧୁଙ୍କ ପଛରେ ଯିବାକୁ ଲାଗିଲା ।

କେତେ ବାଟ ଯିବାପରେ ଗୋଟିଏ ଶିବ ମନ୍ଦିର ପଡ଼ିଲା । ସାଧୁ ସେହି ମନ୍ଦିରକୁ ଗଲେ । ମହାଦେବଙ୍କ ମୂର୍ତ୍ତିକୁ ଦଣ୍ଡବତ କଲେ । ପଣ୍ଡିତଙ୍କ ଝିଅ ଏହା ଦେଖି ଜାଣିଲା, ସାଧୁଙ୍କଠାରୁ ମହାଦେବ ବଡ଼ । ଏଣୁ ସେ ମହାଦେବଙ୍କୁ ବାହାହେବାକୁ ସେଇ ଦେଉଳରେ ଅପେକ୍ଷା କଲା ।

କିଛି ସମୟ ପରେ ଗୋଟିଏ କୁକୁର ମନ୍ଦିର ଭିତରକୁ ଆସିଲା । ସେ ମହାଦେବଙ୍କ ପାଖରେ ଲାଗି ହୋଇଥିବା ଭୋଗକୁ ଖାଇଲା ଓ ତା'ପରେ ପଛ ଗୋଡ଼ ଉଠାଇ ଶିବଲିଙ୍ଗ ଉପରେ ପରିସ୍ରା କରି ଦେଉଳରୁ ବାହାରି ବାଟେ ବାଟେ ଚାଲିଲା । ଝିଅଟି ଭାବିଲା, କୁକୁର ମହାଦେବଙ୍କଠାରୁ ବଡ଼ । ନୋହିଲେ ମହାଦେବଙ୍କ ସଙ୍ଗେ ଏପରି ବ୍ୟବହାର ଆଉ କିଏ କରନ୍ତା ! ସେ କୁକୁରକୁ ବିବାହ କରିବାକୁ ସ୍ଥିର କରି ତା' ପଛେ ପଛେ ଚାଲିଲା । ଯାଉ ଯାଉ କୁକୁରଟି ପାଖ ଗାଁର ଜଣେ ପଣ୍ଡିତଙ୍କ ଘରେ ପଶିଲା । ପଣ୍ଡିତଙ୍କ ଭେଣ୍ଡା ପୁଅ ଦାଣ୍ଡ ଘରେ ବସିଥିଲା, କୁକୁରଟି ଯାଇ ତା ପାଦକୁ ସ୍ନେହରେ ଚାଟିଲା । ଏହା ଦେଖି ଝିଅଟି ବୁଝିଲା, ଏଇ ଯୁବକଟି କୁକୁର ଓ ଅନ୍ୟ ସମସ୍ତଙ୍କଠାରୁ ବଡ଼ । ସେ ତାହାଙ୍କ ପାଖକୁ ଯାଇ ତାଙ୍କୁ ସବୁକଥା କହିଲା ଓ ତାଙ୍କୁ ହିଁ ବିବାହ କରି ସୁଖରେ ରହିଲା ।

( ମଧ୍ୟପ୍ରଦେଶ )

# ସୃଷ୍ଟିର ଶ୍ରେଷ୍ଠ ପଦାର୍ଥ

ଗୋଟିଏ ଗାଁରେ ବ୍ରାହ୍ମଣଟିଏ ରହୁଥାଏ । ସେ ବଡ଼ ଗରିବ । ଭିକମାଗି ଚଳେ । ଯେଉଁଦିନ ଭିକ ନ ମିଳେ ସେଦିନ ତା ପରିବାର ଉପାସରେ ରହନ୍ତି । ଘରକୁ ତା'ର ଚାରି ପ୍ରାଣୀ କୁଟୁମ୍ବ— ସେ ନିଜେ, ତା ସ୍ତ୍ରୀ, ତାର ପୁଅ ଓ ବୋହୂ ।

ସେତେବେଳେ ରାଜା ବିକ୍ରମାଦିତ୍ୟଙ୍କ ରାଜୁତି । ପ୍ରଜାଙ୍କ ଦୁଃଖ ଦୂର କରିବାକୁ ସେ ସବୁବେଳେ ପ୍ରସ୍ତୁତ ଥାଆନ୍ତି । ଯେମିତି ପ୍ରତାପୀ ସେମିତି ଦୟାଳୁ ! ନିୟମ କରିଥାନ୍ତି ଯେଉଁ ଗରିବ ବ୍ରାହ୍ମଣ ତାଙ୍କ ଦରବାରକୁ ଆସି ଶ୍ଳୋକଟିଏ ପଢ଼ି ତାଙ୍କୁ ଆଶୀର୍ବାଦ କରିବ ସେ ଗୋଟିଏ ସୁନା ମୋହର ପାଇବ । ରାଜାଙ୍କର ଏଇ ଦାନ ଦେବା ବିଷୟ କ୍ରମେ ରାଜ୍ୟସାରା ଲୋକ ଜାଣିଲେ । ସେଇ ଗରିବ ବ୍ରାହ୍ମଣର ସ୍ତ୍ରୀ କାନରେ ମଧ୍ୟ ଏକଥା ପଡ଼ିଲା । ବ୍ରାହ୍ମଣୀ ଭାବିଲା ଆଜି ସ୍ୱାମୀଙ୍କୁ ଏ ବିଷୟ କହି ତାଙ୍କୁ ରାଜାଙ୍କ ଦରବାରକୁ ପଠାଇବ । ସୁନା ମୋହରଟିଏ ମିଳିଗଲେ ଆଉ ଭିକ ମାଗିବାକୁ ପଡ଼ିବ ନାହିଁ ।

ବ୍ରାହ୍ମଣ ଘରେ ପହଞ୍ଚିବା ମାତ୍ରେ ବ୍ରାହ୍ମଣୀ ତାକୁ ସବୁକଥା କହିଲା । ବିଚରା ବ୍ରାହ୍ମଣ ଲେଖାପଢ଼ା ଜାଣେନା । କିପରି ବା ଆଶୀର୍ବାଦ ଶ୍ଳୋକ ବୋଲିବ ? ପାଖ ଗାଁରେ ଜଣେ ପଣ୍ଡିତ ଥାନ୍ତି । ସେ ତାଙ୍କର ପାଖକୁ ଯାଇ ତାଙ୍କୁ ଶ୍ଳୋକଟିଏ ଲେଖି ଦେବାକୁ ଅନୁରୋଧ କଲା । ପଣ୍ଡିତେ ଗରିବ ବ୍ରାହ୍ମଣ ଲାଗି ଶ୍ଳୋକଟିଏ ଲେଖି କିପରି ତାହା ବୋଲିବାକୁ ଶିଖାଇ ଦେଲେ । ସେଇ ଶ୍ଳୋକଟିକୁ ଘୋଷି ଘୋଷି ସେ ପଣ୍ଡିତଙ୍କ ଆଗରେ ତାହାକୁ ବୋଲି ଶୁଣାଇଲା ଓ ଖୁସିହୋଇ ଘରକୁ ଫେରି ଆସିଲା । ତା' ପରଦିନ ସେ ରାଜାଙ୍କ ଦରବାରକୁ ଯିବ ବୋଲି ସ୍ଥିର କଲା ।

ସକାଳୁ ଉଠି ଗାଧୋଇ ପାଧୋଇ ଚିତା ଲଗାଇ ହୋଇ ସେ ରାଜାଙ୍କ ଦରବାରକୁ ଯିବାଲାଗି ବାହାରି ପଡ଼ିଲା । ଅଗରୁ ଟିକେ ଜୋର ସେପଟାକୁ

ଯାଇନ । ପଚ୍ଚରି ପଚ୍ଚରି ଯାହାହେଉ ସେ ରଜାଙ୍କ ନଅର ପାଖେ ପହଞ୍ଚିଲା । ଶ୍ଳୋକ ବୋଲିବାକୁ ଆସିଛି କହିବାରୁ ଦୁଆରୀମାନେ ତାକୁ ଦରବାରକୁ ଯିବା-ଲାଗି ଛାଡ଼ିଦେଲେ । ରଜାଙ୍କ ଦରବାର ଘର ମଧ୍ୟ ସେ ଆଗରୁ କେବେ ଦେଖି ନ ଥିଲା । ସେଠି ଘରେ ସୁନା ରୁପାର ବହୁ ଜିନିଷ ପତ୍ର ଦେଖି ବ୍ରାହ୍ମଣ କାବା ହୋଇଗଲା ଓ ପୂର୍ବରୁ ଘୋଷି ମନେ ରଖିଥିବା ଶ୍ଳୋକଟି ଭୁଲିଗଲା । ରଜାଙ୍କୁ ଆଶୀର୍ବାଦ କଲାବେଳକୁ ତା ମୁହଁରୁ କେବଳ ବାହାରିଲା –'ଓଃ କି ଆଶ୍ଚର୍ଯ୍ୟ !'

ରଜା ସେତେବେଳେ ଆଉ ଗୋଟିଏ କାମରେ ଲାଗିଥିଲେ । ଏଣୁ ବ୍ରାହ୍ମଣର ଏଇ କଥାପଦକ ଶୁଣି ମଧ୍ୟ ଶୁଣିପାରି ନ ଥିଲେ । ମାତ୍ର ବ୍ରାହ୍ମଣ ନିଜ ଭୁଲ ଯୋଗୁ ଘାବୁରି ଗଲା । କାଳେ ରଜା ଏଥିପାଇଁ ଦଣ୍ଡିବେ, ଏଇ ଭୟରେ ସେ ଆଉ ସେଠାରେ ଦଣ୍ଡେମାତ୍ର ନ ରହି ଚୁପ୍‌ଚାପ୍ ବାହାରକୁ ଚାଲିଆସିଲା ।

ଏତେ ଆଶାରେ ସେ ଆସିଥିଲା । ଏଣୁ ଖାଲି ହାତରେ ଘରକୁ ଫେରି-ବାକୁ ତା'ର ମନ ବଳୁ ନ ଥାଏ । ଲାଜ ଓ ଦୁଃଖରେ ସେ ଗୋଟାଏ ଜଙ୍ଗଲ ଆଡ଼େ ଚାଲିଲା । ଜଙ୍ଗଲ ଭିତରେ ଯାଉ ଯାଉ ଗୋଟିଏ ପୋଖରୀ କୂଳେ ପହଞ୍ଚିଲା । ସନ୍ଧ୍ୟା ହୋଇ ଆସୁଛି, ବଣ ଜନ୍ତୁଙ୍କ ଭୟରେ ଆଉ ଆଗକୁ ଯିବାକୁ ଭରସି ନ ପାରି ସେଇ ପାଖରେ ଥିବା ଗୋଟିଏ ବରଗଛରେ ଚଢି ସେଇଠି ରାତିଟା କଟାଇଲା ।

ସକାଳ ହେବାରୁ ବ୍ରାହ୍ମଣ ଗଛରୁ ଓହ୍ଲାଇଲା । ପୋଖରୀ କୂଳରେ ବସି ଧ୍ୟାନ କଷିଲା । ସୂର୍ଯ୍ୟ ଉଇଁଲେ ବ୍ରାହ୍ମଣ ଦେଖିଲା ପୋଖରୀ ମଝିରୁ ଗୋଟିଏ ଗୋଲ ଆକାରର ତୋଳା ଉପରକୁ ବାହାରୁଛି । ସୂର୍ଯ୍ୟ ଯେତିକି ଉପରକୁ ଉଠିଲେ ସେଇ ତୋଳାଟି ସେତିକି ସେତିକି ଉପରକୁ ବଢିବାକୁ ଲାଗିଲା ! ଦି ପ୍ରହର ବେଳକୁ ତୋଳାଟି ସୂର୍ଯ୍ୟଙ୍କ ପର୍ଯ୍ୟନ୍ତ ପହଞ୍ଚିଗଲା । ସୂର୍ଯ୍ୟ ପଶ୍ଚିମକୁ ଢଳିବା ସଙ୍ଗେ ସଙ୍ଗେ ତୋଳାଟି ମଧ୍ୟ କ୍ରମେ କ୍ରମେ କମିବାକୁ ଲାଗିଲା ଏବଂ ସୂର୍ଯ୍ୟ ବୁଡ଼ିଯିବା ସଙ୍ଗେ ସଙ୍ଗେ ତାହା କ୍ରମେ ଛୋଟ ହୋଇ ପୋଖରୀ ପାଣିରେ ବୁଡ଼ିଗଲା । ବ୍ରାହ୍ମଣ ଏହି ଅଦ୍ଭୁତ ଦୃଶ୍ୟ ଦେଖି ଖୁସି ହୋଇଗଲା । ଏହା କ'ଣ ଓ କିପରି ହେଉଛି ତାହା ଭଲ କରି ଜାଣିବାଲାଗି ସେ ସେଇଠି ପୁଣି ରାତିଟାଏ

କଟାଇଲା । ପରଦିନ ସକାଳେ ବ୍ରାହ୍ମଣ ଠିକ୍ ସେଇ ଦୃଶ୍ୟ ଦେଖିଲା । ବୁଝି-ପାରିଲା, ଏଠାରେ ସବୁଦିନ ଏପରି ହେଉଛି ।

କୃତାର୍ଥ ହୋଇ ବ୍ରାହ୍ମଣ ସେଠାରୁ ଫେରିଲା ଓ ପୁଣି ଯାଇ ରାଜାଙ୍କ ଦର-ବାରରେ ପହଞ୍ଚିଲା । ରାଜାଙ୍କୁ ଆଶୀର୍ବାଦ କଲାବେଳକୁ ସେ ପୂର୍ବଭଳି କହିଲା—'ଓଃ କି ଆଶ୍ଚର୍ଯ୍ୟ ।'

ରାଜା ବ୍ରାହ୍ମଣଙ୍କୁ ଚିହ୍ନିପାରି କହିଲେ— "ଆପଣ ତ ଏଠାକୁ ଆସିଥିଲେ ଓ ଶ୍ଳୋକଟିଏ ନ ପଢ଼ି ଏହି ଶବ୍ଦଟି କହି ଚାଲି ଯାଇଥିଲେ । ଏବେ ପୁଣି ଆସି ସେଇ ଶବ୍ଦଟି କହୁଛନ୍ତି, ଏହାର ଅର୍ଥ କ'ଣ ?"

ବ୍ରାହ୍ମଣ ମୁଣ୍ଡ ହଲାଇ ଉତ୍ତର ଦେଲା— "ମହାରାଜ, ମୁଁ କହିଲେ ଆପଣ ହୁଏତ ମିଛ ଭାବିବେ; ମାତ୍ର ମୁଁ ଯାହା କହିଲି ତାହାର ଅର୍ଥ ଆପଣ ମୋ ସାଙ୍ଗେ ଗଲେ ନିଜେ ବୁଝିପାରିବେ ।" ଏହା କହି ବ୍ରାହ୍ମଣ ରାଜାଙ୍କୁ ଯାହା ଦେଖିଥିଲା, ସେଇଆ କହିଲା । ବ୍ରାହ୍ମଣଠାରୁ ଏହି ବିଚିତ୍ର କଥା ଶୁଣି ରାଜା ସେଠାକୁ ଯିବାକୁ ପ୍ରସ୍ତୁତ ହେଲେ । ସୈନ୍ୟ ସାମନ୍ତ ସହ ରାଜା ବ୍ରାହ୍ମଣଙ୍କୁ ସାଙ୍ଗରେ ନେଇ ସେଇ ପୋଖରୀ କୂଳେ ପହଞ୍ଚିଲେ ।

ବ୍ରାହ୍ମଣ କହିଲା— "ଏଥର ମୁଁ ଯାହା କହିବି ଆପଣ ତାହା କରିବା ହେବ ।

ରାଜା କହିଲେ—"ପଣ୍ଡିତେ, ମୁଁ ଆପଣଙ୍କ କଥା ମାନିବାକୁ ପ୍ରସ୍ତୁତ ।"

ରାତି ହୋଇଯାଇଥିଲା । ଏଣୁ ସମସ୍ତେ ସେଇ ପୋଖରୀ କୂଳେ ରହିଲେ । ରାତି ନ ପାହୁଣୁ ବ୍ରାହ୍ମଣ ରାଜାଙ୍କୁ ନିଦରୁ ଉଠାଇଲା ଓ ସେଇ ପୋଖରୀ ମଝିକୁ ଚାହିଁବା ଲାଗି ରାଜାଙ୍କୁ କହିଲା । ସୂର୍ଯ୍ୟ ବାହାରିବା ସଙ୍ଗେ ସଙ୍ଗେ ପାଣିରୁ ତୋଳିଟିଏ ବାହାରିଲା । ଏହା ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେ ତାକୁ ଖାଲି ଦେଖିବେ କ'ଣ ନିର୍ଭୟରେ ଯାଇ ତୋଳି ଭିତରେ ବସିଗଲେ । ଦିନ ଯେତିକି ଯେତିକି ବଢ଼ିଲା, ତୋଳିଟି ସେତିକି ସେତିକି ଉପରକୁ ବଢ଼ିଆଏ । ଦିନ ଦଶଟା ବେଳକୁ ସୂର୍ଯ୍ୟଙ୍କ କିରଣ ପ୍ରଖର ହେଲା ଓ ରାଜା ତୋଳି ଭିତରେ ପୋଡ଼ି ପାଉଁଶ ହୋଇଗଲେ । ତା'ପରେ ତୋଳି ଆଜ ସୂର୍ଯ୍ୟଙ୍କ

ଆଡ଼କୁ ବଢ଼ିଲ ନାହିଁ । ଉପରୁ ସୂର୍ଯ୍ୟ ଦେବତା ଡାକିଲେ – "ଆଜ ଏଠାକୁ ଆସିବାକୁ ତୋର କାହିଁକି ଡେରି ହେଉଛି ?"

ଢୋଲ ଉତ୍ତର ଦେଲା—"ମୋ ଭିତରେ ଆଜ ରାଜା ମରି ଯାଇଥିବାରୁ ମୋତେ କଳଙ୍କ ଲଗିଛି । ଏଣୁ ମୁଁ ଆପଣଙ୍କ ପାଖକୁ ଯାଇ ପାରୁନ ।"

ସୂର୍ଯ୍ୟ ଦେବତା ଢୋଲ ଭିତରେ ଯାହା ହେଉଛି ବୁଝିପାରିଲେ । ସେ ଉପରୁ ଦୁଇଟୋପା ଅମୃତ ପକାଇ ଦେବାରୁ ରାଜା ପୁଣି ଜୀଇ ଉଠିଲେ ଓ ଢୋଲ ସୂର୍ଯ୍ୟଙ୍କ ପାଖକୁ ଯାଇ ତାହାଙ୍କ ଚାରିପାଖେ ଘୂରିଲା । ରାଜା ମଧ୍ୟ ସୂର୍ଯ୍ୟ ଦେବତାଙ୍କ ପାଖରେ ମୁଣ୍ଡ ନୁଆଇଁ ତାଙ୍କୁ ନମସ୍କାର କଲେ ।

ସୂର୍ଯ୍ୟ ଦେବତା ପଚାରିଲେ— 'ତମେ କିଏ ?'

ରାଜା ଉତ୍ତର ଦେଲେ— "ମୁଁ ରାଜା ବିକ୍ରମାଦିତ୍ୟ ।" ସୂର୍ଯ୍ୟ ଦେବତା ରାଜାଙ୍କ ଉପରେ ଖୁସିହୋଇ ତାଙ୍କୁ ଚାରୋଟି ପଦାର୍ଥ ଦେଲେ । ଗୋଟିଏ ହେଉଛି, ଘୋଡ଼ା ଲଗାମ; ଏହାକୁ ପିଟିବା ମାତ୍ରେ ଏକ ସୁନ୍ଦର ଘୋଡ଼ା ପହଞ୍ଚିଯାଏ । ଏହା ଉପରେ ବସିଗଲେ ଘଣ୍ଟାକ ମଧ୍ୟରେ ସାରା ପୃଥିବୀକୁ ଘୂରି ଆସି ହେବ । ଦ୍ୱିତୀୟଟି ହେଉଛି ଗୋଟିଏ ସୁନ୍ଦର ବେଲ । ଏହାକୁ ଧରି ଯେଉଁ ଖାଦ୍ୟ ମନାସିବ ତାହା ସଙ୍ଗେ ସଙ୍ଗେ ତିଆରି ହୋଇଯିବ । ଏହାଛଡ଼ା ସେ ତାଙ୍କୁ ଦୁଇଟି ପେଡ଼ି ଦେଲେ । ଗୋଟିଏ ପେଡ଼ିରେ ଥିଲା ନାନା ପ୍ରକାର ହୀରା ଓ ଅନ୍ୟଟିରେ ଥିଲା ବହୁ ସୁନ୍ଦର ଲୁଗାପଟା ।

ସୂର୍ଯ୍ୟ ଦେବତା ସେହି ଚାରୋଟି ଜିନିଷ ରାଜାଙ୍କୁ ଦେଇ କହିଲେ— "ତୁମେ ଏହାକୁ ନିଅ; ଏହା ତୁମ ନିର୍ଭୀକତାର ପୁରସ୍କାର ।"

ରାଜା ଢୋଲରେ ବସି ସନ୍ଧ୍ୟା ବେଳକୁ ଫେରିଲେ । ଚାରୋଟି ଅଦ୍ଭୁତ ଜିନିଷ ଗୁଡ଼ିକ ପାଇଥିବା ଯୋଗୁ ସେ ବ୍ରାହ୍ମଣ ଉପରେ ଭାରି ଖୁସି । ନଅରକୁ ଆସି ସେ ବ୍ରାହ୍ମଣକୁ କହିଲେ— "ପଣ୍ଡିତେ, ତୁମରି ଯୋଗୁଁ ମୁଁ ଏଇ ଜିନିଷତକ ପାଇଛି ଏଇ ଚାରୋଟି ଜିନିଷ ମଧ୍ୟରୁ ଗୋଟିଏ ଜିନିଷ ତୁମକୁ ଦେବା ମୋର ଇଚ୍ଛା । ଏଥିରୁ ତୁମେ ଯେ କୌଣସି ଗୋଟିଏ ଜିନିଷ ନିଅ ।"

ବ୍ରାହ୍ମଣ ବପୁରା ଗୁଟେଗୁଟି ଜିନିଷ ମଧ୍ୟରୁ କେଉଁଟିକୁ ନେବ ତାହା ସ୍ଥିର କରିପାରିଲେ ନାହିଁ । ଏଣୁ ସେ କହିଲେ— "ମହାରାଜ ! ମୁଁ ଏବେ ସ୍ଥିର କରି ପାରୁନାହିଁ । ଘରକୁ ଯାଇ ମୋ ସ୍ତ୍ରୀ ଓ ପିଲାମାନଙ୍କୁ ଏହା ପଚାରିବି । ଏଣୁ କେଉଁଟିକୁ ନେବି ଏହା ମୁଁ ପରେ ଆପଣଙ୍କୁ କହିବି ।"

ରାଜା ହସି ହସି କହିଲେ— "ଆଚ୍ଛା ହେଉ, ତୁମେ ବୁଝି ଆସିଲା ପରେ ତାହା ନେଇଯିବ ।"

ବ୍ରାହ୍ମଣ ଖୁବ୍ ଶୀଘ୍ର ଆସି ପହଞ୍ଚିଲେ । ପୁଅ, ବୋହୂ ଓ ସ୍ତ୍ରୀଙ୍କୁ ବସାଇ ଯାହାସବୁ ଘଟିଥିଲା ତାହା କହିଲେ । ଗୁଟେଗୁଟି ଜିନିଷ ମଧ୍ୟରୁ ସେ କେଉଁଟିକୁ ରାଜାଙ୍କୁ ମାଗିବେ ତାହା ସମସ୍ତଙ୍କୁ ପଚାରିଲେ ।

ବ୍ରାହ୍ମଣୀ କହିଲେ—"ବହୁଦିନରୁ ଆମେ ମୁଠିଏ ଖାଇବାଲାଗି ବାର ଦୁଆରେ ହାତ ପକାଇ ଭିକ ମାଗୁଛୁ । ଏଣୁ ତୁମେ ଖେଳଟିକୁ ମାଗି ଆଣିବ ।"

ପୁଅ କହିଲା— "ବାପା, ମୋର ଟିକିଏ ବୁଲାବୁଲି କରିବାକୁ ବହୁତ ଇଚ୍ଛା । ଏଣୁ ତୁମେ ଘୋଡ଼ା ଗୋଟିଏ ଆଣିବ । ମୁଁ ଘୋଡ଼ାରେ ବୁଲିବି ।

ବୋହୂ କହିଲା— "ମୁଁ ଏ ଘରକୁ ବୋହୂ ହୋଇ ଆସିଲା ଦିନୁ କେହି ମୋ ଲାଗି ଗୋଟିଏ ହେଲେ ଗହଣା ଗଢ଼ାଇ ଦେଇନ । ଏଣୁ ଆପଣ ସେଇ ଗହଣା ବାକ୍ସଟି ଆଣିବେ ।"

ଶେଷରେ ବ୍ରାହ୍ମଣ କହିଲେ— "ତମେ ସବୁ ଯେ ଯାହାର ଦରକାର କଥା କହିଲ, ମାତ୍ର ମୋ କଥା କେହି ବିଚାରିଲ ନାହିଁ । ଏଇ ଚିରା ଲୁଗାପିନ୍ଧି ମୋତେ ରାଜାଙ୍କ ପାଖକୁ ଯିବାକୁ ଲାଜ ମାଡୁଛି । ଏଣୁ ମୁଁ ଲୁଗା ପେଡ଼ିଟି ମାଗି ଆଣିବି ବୋଲି ଭାବୁଛି ।"

ଘରେ ଏ ବିଷୟରେ ବହୁତ ଆଲୋଚନା ହେଲା; ମାତ୍ର କେଉଁ ଜିନିଷଟି ମଗା ହୋଇ ଆସିବ ତାହା ସ୍ଥିର ହୋଇପାରିଲା ନାହିଁ । ଏଥିପାଇଁ ସ୍ୱରଜଙ୍କ ମଧ୍ୟରେ କଳି ଲାଗିଲା । ବପୁରା ବ୍ରାହ୍ମଣ ମହାଚିନ୍ତାରେ ପଡ଼ିଗଲେ । ପରଦିନ ସେ

ରାଜାଙ୍କ ପାଖକୁ ଯାଇ କହିଲା— "ମହାରାଜ ! ମୁଁ କୌଣସି ଜିନିଷ ନେବାକୁ ଚାହେଁ ନାହିଁ ।"

ରାଜା ପଚାରିଲେ— "ତମ ଘରେ କେତେ ଲୋକ ?"

ବ୍ରାହ୍ମଣ କହିଲା— "ଆଜ୍ଞା, ମୋ ଘରେ ମୋତେ ମିଶାଇ ଚାରିଜଣ । ଗୋଟିଏ ଜିନିଷ ନେଲେ ଆମ ଘରେ ଅନର୍ଥ ସୃଷ୍ଟି ହେବ । ସେଥିପାଇଁ ମୁଁ କୌଣସି ଗୋଟିଏ ଜିନିଷ ନେବାକୁ ଚାହୁଁ ନାହିଁ ।"

ରାଜା ବିକ୍ରମାଦିତ୍ୟ ବ୍ରାହ୍ମଣକୁ ପ୍ରତ୍ୟେକଟିଯାକ ଜିନିଷ ଦେଇ ଦେଲେ । ବ୍ରାହ୍ମଣ ସେଗୁଡ଼ିକୁ ନେଇ ଆନନ୍ଦରେ ଘରକୁ ଫେରିଆସିଲା । ନୂଆ କରି ଘର ଦୁଆର କଲା ଓ ଖୁବ୍ ଆରାମରେ ରହିଲା ।

( ମଧ୍ୟଭାରତ )



# ଚଡ଼ା ଚଡ଼ୀ

ଚଡ଼ାଟିଏ, ଚଡ଼ୀଟିଏ । ଦୁହେଁଯାକ ଏକାଠି ଥାଆନ୍ତି । ଦିନେ ଚଡ଼ା ଯାଉ ଯାଉ ଗଣ୍ଡିଏ ଚାଉଳ ପାଇଲା; ଚଡ଼ୀ ପାଇଲା ମୁଠିଏ ଡାଲି । ଚଡ଼ୀ କହିଲା— "ଚଡ଼ା, ଚାଲ୍ ଆଜି ଖେଚେଡ଼ି କରି ଖାଇବା ।"

ଚଡ଼ା କହିଲା— "ହଉ ।"

ଚଡ଼ୀ ଚୁଲି ଲଗାଇ ହାଣ୍ଡି ବସାଇଲା । ଖେଚେଡ଼ି କଲା । ଖେଚେଡ଼ି ହୋଇଗଲା ପରେ ତାକୁ ଘୋଡ଼ାଇ ଦେଇ ପାଣି ଆଣିବାକୁ ଗଲା । ଚଡ଼ୀ ଚାଲିଯିବାରୁ ଚଡ଼ା ଚୁପ୍‌ଚାପ୍ ହାଣ୍ଡି ପାଖକୁ ଗଲା; ଟିକିଏ ଚାଖିବାରୁ ଭଲ ଲାଗିଲା ।

ଚୁଖ୍ ଚୁଖୁ ସବୁତକ ଖେଚେଡ଼ି ସେ ଖାଇଦେଲା । ଖାଇସାରି ହାଣ୍ଡି ଯେମିତି ଥିଲା, ସେମିତି ଥିଲା, ସେମିତି ରଖିଦେଇ ଆସି ଆପଣା ଜାଗାରେ ବସିଲା ।

ପାଣି ଆଣିସାରି ଚଢ଼ୀ ଚଢ଼ାକୁ ଡାକିଲା— "ଚଢ଼ା, ଚାଲ ଖେଚେଡ଼ି ଖାଇବା ।" ଚଢ଼ା କହିଲା—"ମୋତେ ତ ଭୋକ ନାହିଁ, ତୁ ଯା ଖାଇଦେବୁ ।"

ଚଢ଼ୀ ହାଣ୍ଡି ପାଖକୁ ଗଲା । ଯେମିତି ହାଣ୍ଡିର ଢାଙ୍କୁଣୀ ଖୋଲାଛି, ଦେଖିଲା ହାଣ୍ଡିରେ କିଛି ନାହିଁ । ଚଢ଼ୀ କହିଲା— ହାଣ୍ଡିରେ ତ ଖେଚେଡ଼ି ନାହିଁ; ଖାଇଲା କିଏ ?"

ଚଢ଼ା କିଛି ନ ଜାଣିଲା ଭଳି କହିଲା—"ମୁଁ କି ଜାଣେ ? ପୁଷି ମାଉସୀ ଇଆଡ଼େ ଆସିଥିଲା, ସେଇ ଖାଇଦେଲା ଖାଇଥିବ ।"

ଚଢ଼ୀ ମନରେ ସନ୍ଦେହ ହେଲା । ସେ ଚଢ଼ା କଥାରେ ବିଶ୍ୱାସ ନ କରି କହିଲା— "ଚାଲ, କୂଅରେ ସୂତାର ଦୋଳି ବାନ୍ଧି ସେଥିରେ ଝୁଲିବା । କିଏ ଖେଚେଡ଼ି ଖାଇଛି, ଜଣାପଡ଼ିବ । ଯିଏ ଖେଚେଡ଼ି ଖାଇଥିବ ତା ଓଜନ ବଢ଼ି-ଥିବ । ଆମ ଭିତରୁ ସେଇ ଏକା କୂଅରେ ଗଳି ପଡ଼ିବ ।"

ତହୁଁ ଦୁହେଁ ଯାକ କୂଅ ଉପରେ ଦୋଳି ବାନ୍ଧିଲେ । ଚଢ଼ୀ ଆଗେ ଝୁଲିଲା । ଦୋଳି କିଛି ହେଲା ନାହିଁ । ତା' ପଛକୁ ଝୁଲିଲା ଚଢ଼ା । ଚଢ଼ା ତ ଖେଚେଡ଼ି ଖାଇଛି, ଓଜନିଆ ହୋଇଛି; ସେଥିପାଇଁ ଦୋଳି ଛିଡ଼ିଗଲା । ସେ କୂଅ ଭିତରକୁ ଗଳି ପଡ଼ିଲା ।

ଚଢ଼ା କୂଅରେ ପଡ଼ି ପାଟିକଲା— "ଚଢ଼ୀ, ଚଢ଼ୀ, ମୋତେ ଏଠୁ ଉପ-ରକୁ ଉଠେଇ ନେ । ନୋହିଲେ ଏଇଠି ମରିଯିବି ।"

—"ଆଉ କେବେ ଏପରି କରିବୁ ନାହିଁ ତ ?"

—"ନାଇଁ, ଆଉ କେବେ ଏମିତି କରିବି ନାହିଁ । ଯାହା ହେବାର ତ ହେଲାଣି, ମତେ ଆଗେ ଏଠୁ ଉଠା ।"

ଏତିକିବେଳକୁ ସେଇ କୂଅ ବାଟେ ଦେଇ ଜଣେ ଗଉଡ଼ ଯାଉଥିଲା । ଚଢ଼ୀ ତାକୁ ନେହୁରା ହୋଇ କହିଲା— "ଗଉଡ଼ ଭାଇ, ମୋ ଚଢ଼ା କୂଅରେ ଗଳି ପଡ଼ିଛି, ତାକୁ ଟିକେ ଉପରକୁ ଉଠାଇଦେବୁ ?"

—"ମୁଁ ତ ଗାଈ ସଙ୍ଗେ ଯାଉଛୁ । ମୁଁ ଏଇନେ ପାରିବ ନାହିଁ । ମୋ ପଛର ଛେଳିଜଗା ଟୋକା ଆସୁଛି, ତାକୁ କହିବୁ ।" ଏହା କହି ଗଉଡ଼ ଚାଲି-ଗଲା । ତା' ପଛେ ପଛେ ଛେଳିଜଗା ଟୋକା ଆସି ପହଞ୍ଚିଲା । ଚଢ଼ୀ କହିଲା— "ଆରେ ଛେଳିଜଗା ଭାଇ, ମୋ ଚଢ଼ାକୁ ଟିକେ କୂଅରୁ ଉଠେଇଦେବୁ ?"

—"ମୁଁ ତ ଛେଳି ସଙ୍ଗେ ଯାଉଛି । ମୁଁ ଏଇନେ ପାରିବ ନାହିଁ । ତୁ ଆଉ କାହାକୁ କହ ।" ଏହା କହି ସେ ମଧ୍ୟ ଚାଲିଗଲା ।

ଏତିକିବେଳକୁ ପୁଷି ମାଉସୀ କୁଆଡୁ ବୁଲି ବୁଲି ଆସି ସେଇଠି ପହଞ୍ଚିଲା । ଚଢ଼ୀ ସଙ୍ଗେ ସଙ୍ଗେ ତାକୁ ହାତଯୋଡ଼ି ଗୁହାରି କଲା— "ମାଉସୀ ! ମୋ ଚଢ଼ା କୂଅରେ ପଡ଼ିଛି; ତାକୁ ଟିକେ କୂଅରୁ କାଢି ଦିଅନ୍ତୁ ।"

ମାଉସୀ କମ୍ ବୁଦ୍ଧିଆ, କଥାଟି ବୁଝି ସମଝି, ଦେଖି ଚାହିଁ କହିଲା— "ଆଚ୍ଛା ହେଉ, ତୋ କଥା ମାନି ଚଢ଼ାକୁ ମୁଁ କୂଅରୁ ଉଠାଇ ଦେବି; ମାତ୍ର ତାକୁ ଉଠାଇ ଦେଲା ପରେ ମୁଁ ତାକୁ ଖାଇବି ।"

ଚଢ଼ୀ ଟିକିଏ ଭାବି ଉତ୍ତର ଦେଲା— "ଆଚ୍ଛା ହେଉ, ତୁ ଆଗେ ତାକୁ କୂଅରୁ ଉଠା, ତା'ପରେ ଯାହା କରିବୁ କର ।"

ପୁଷି ମାଉସୀ ଚଢ଼ାକୁ କୂଅରୁ ବାହାର କରି ଆଣିଲା । ଚଢ଼ାକୁ ଦେଖି ଚଢ଼ୀ ଆଖିଠାରି ଦେଲା । ଚଢ଼ାକୁ ଖାଇବ ବୋଲି ପୁଷିମାଉସୀ ପାଟିରୁ ଲାଳ ବୋହୁଥାଏ । ଚଢ଼ୀ କହିଲା— "ମାଉସୀ ! ଖାଇବ ବୋଲି ଏଡ଼େ ଅସ୍ଥିର ହେଉଛ କାହିଁକି ? ବିଚରା ପାଣିରେ ପଡ଼ିଥିଲା, ତା ଦେହରୁ ପାଣି ଶୁଖିଯାଉ; ତା'ପରେ ତାକୁ ଖାଇବ ।" ଚଢ଼ା ଦେହରୁ ପାଣି ଶୁଖିବାଯାଏ ପୁଷିମାଉସୀ ଅପେକ୍ଷା କଲା । ଚଢ଼ା ଆପଣା ପକ୍ଷୀକୁ ଫଡ୍ ଫଡ୍ କରୁ କରୁ ହଠାତ୍ ଫୁର୍ କରି ଉଡ଼ିଯାଇ ଗଛ ଉପରେ ବସିଲା । ଦେଖୁ ଦେଖୁ ଚଢ଼ୀ ମଧ୍ୟ ତା' ପଛେ ଉଡ଼ିଗଲା, ଦୁହେଁଯାକ ଗଛ ଉପରେ ଥାଇ କହିଲେ—"ମାଉସୀ ! ଲି-ଲି-ଲି-' ଫର୍-ଫର୍ ।"

ପୁଷି ମାଉସୀ ରାଗରେ ମାଟି ରାମ୍ପୁଡ଼ି ରାମ୍ପୁଡ଼ି ଆଗକୁ ଚାଲିଲା ।

●

( ମାଳବ )

# ଗୀତ କିଣା

କଳକଣ୍ଠୁଣୀ ବୋଲି ତାକୁ ଗାଁଆରେ ସମସ୍ତେ ଜାଣନ୍ତି । ଉପରେ ପଡ଼ି କଳି ଲଗେଇ ଦେବାରେ ସେ ଥିଲା ଓସ୍ତାଦ୍ । ମାତ୍ର ଗୋଟିଏ ବିଷୟ ତାକୁ ଆଦୌ ଜଣା ନଥିଲା । ସେଇଟି ହେଉଛି ବାଜା ବଜାଇ ଗୀତ ଗାଇବା !

ସକାଳେ ଗାଁ ମାଇପେ ଗହମ ପେଷିବାବେଳେ ଗୀତ ବୋଲନ୍ତି । ମାତ୍ର କଳକଣ୍ଠୁଣୀକୁ ଗୀତ ଗାଇ ଆସେନା । ଅନ୍ୟମାନେ ଗୀତ ଗାଇଲାବେଳେ ସେ ଈର୍ଷାରେ ଜଳିଯାଏ । ସେମାନେ ଯେ ଠିକ୍ କରି ଗୀତ କପରେ ଗାଆନ୍ତି ତାହା ସେ ଜଣେ ପଡ଼ୋଶୀକୁ ପଚାରି ବୁଝିବ । ପଡ଼ିଶା ଘରକୁ ଯାଇ ସେ ପଚାରିଲା— 'ହଇଲୋ ନାନୀ, ତମେ କେମିତି ଗୀତ ଗାଉଛ ମତେ ଟିକିଏ କହିଦେଇ ଦିଅ ।'

କଳହପ୍ରିୟାର ଏଭଳି ପ୍ରଶ୍ନ ପଡ଼ୋଶୀକୁ ଟିକିଏ କୌତୁକିଆ ମନେ ହେଲା । ସେ ଜାଣେ କଳହପ୍ରିୟା ଓଲି । ମଜା ଦେଖିବାକୁ ସେ କହିଲା— ହଇଲୋ, ଏତେ ଏଇ ସାମାନ୍ୟ କଥାଟା ଜାଣୁନାହିଁ । ବଜାରରେ ଗୀତ ବିକାହେଉଛି । ତୁ ଯାଇ କେତୋଟା କିଣି ଆଣୁନୁ ।'

ଗୀତ କିଣିବାକୁ ମିଳେ ଶୁଣି କଳହପ୍ରିୟା ଭାରି ଖୁସି । ତାକୁ ଏଥର ଖୁବ୍ ସହଜରେ ଗୀତ ମିଳିଯିବ । ସେ ଘରକୁ ଫେରି ଆସିଲା । ସ୍ୱାମୀ ଆସି ଘରେ ପାଦ ନଦେଉଣୁ କଳହପ୍ରିୟା କହିଲା— 'ତମେ ଏଇନେ ଯାଇ ମୋ ପାଇଁ କେତୁଟା ଗୀତ କିଣିଆଣ ।'

ଗୀତ ସବୁ ବଜାରରେ କିଣିବାକୁ ମିଳେବୋଲି ସ୍ୱାମୀକୁ ଜଣାନଥିଲା । ସ୍ତ୍ରୀ ଆଜି ତାକୁ ଗୋଟେ ବିଚିତ୍ର କଥା କହୁଛି । ସେ ଯାହା ଚାହୁଁଛି ତାହା ଆଣି ନଦେଲେ ସେ ଆଉ ରକ୍ଷା ଦେବନାହିଁ । ଗୀତ ମିଳୁଥିବ ଭାବି ସେ ସଙ୍ଗେ ସଙ୍ଗେ ବଜାରକୁ ବାହାରିଲା । ଯିବା ପୂର୍ବରୁ ସ୍ତ୍ରୀକୁ କହିଲା— "ହେଉ ପାଞ୍ଚଟା ଟଙ୍କା ଆଣି ଦେ । ମୁଁ ଯାଉଛି ବଜାରରେ ଗୀତ ଖୋଜିବ ।" ସ୍ତ୍ରୀ

ତାକୁ ପାଞ୍ଚଟି ଟଙ୍କା ଆଣି ଦେଇଦେଲା ।

ବଜାରରେ ପହଞ୍ଚି ସ୍ୱାମୀ ଗୋଟାଏ ଦୋକାନକୁ ଗଲା । କହିଲା—'ମଉସା, ତୁମ ପାଖେ ଗୀତ ଅଛି ?'

ଦୋକାନୀ ଆଶ୍ଚର୍ଯ୍ୟ ହୋଇଗଲା । କୌଣସି ଗରାଖ ଆସି କେବେ ତା' ଦୋକାନରୁ ଗୀତ କିଣିବାକୁ ଚାହିଁନଥିଲେ । ଦୋକାନୀଟା ଚାଲାକ । ସେ କହିଲା—"ମୋ ପାଖେ ତ' ନାହିଁ । ତେବେ ତୁମେ ଆଉ ଟିକଏ ଆଗକୁ ଗଲେ ଅନ୍ୟ ଦୋକାନରୁ ତାହା ପାଇପାରିବ ।"

ସ୍ୱାମୀ ଦୋକାନ ପରେ ଦୋକାନ ଖୋଜିଲା । ମାତ୍ର ସମସ୍ତେ ତାକୁ ବୋକା ଠଉରେଇ ଅନ୍ୟ ଦୋକାନକୁ ଯିବାଲାଗି କହିଲେ । ଏମିତି ସଞ୍ଜ ପର୍ଯ୍ୟନ୍ତ ବୁଲି ବୁଲି ସେ ଥକି ପଡ଼ିଲା । ମାତ୍ର କେଉଁଠୁ ହେଲେ ଗୀତ କିଣି-ବାକୁ ପାଇଲା ନାହିଁ । ଖାଲି ହାତରେ ଗୀତ ନନେଇ ସେ କେମିତି ବା ଫେରିବ ? ଯାହାହେଉ, ଅତି କ୍ଳାନ୍ତ ହୋଇଯିବାରୁ ସନ୍ଧ୍ୟାବେଳକୁ ସେ ନିରାଶ ହୋଇ ଘରକୁ ଫେରିଲା ।

ବାଟରେ ଆସୁଆସୁ ଦେଖିଲା ଗୋଟାଏ ବଡ଼ ମୂଷା ବିଲ୍ଲା ଏପଟରୁ ସେ ପଟକୁ ଧାଇଁ ଯାଇ ଗୋଟାଏ ଗାତରେ ପଶିଗଲା । ଲୋକଟି ଆଗ୍ରହରେ ସେଇ ଗାତ ପାଖକୁ ଗଲା । ଗାତ ପାଖରେ କାନ ପାତି ଶୁଣିଲା । ମୂଷାଟି ଗାତ-ପାଖରେ ମାଟି ଖୋଳୁଥିବାରୁ ଗାତରୁ ଗୋଟାଏ ବିଚିତ୍ର ଶବ୍ଦ ବାହାରୁଥାଏ । ହଠାତ୍ ତା ମନକୁ ଗୋଟାଏ ଧାରଣା ଆସିଗଲା । ସେଇ ଶବ୍ଦରୁ ତାକୁ ଗୋଟାଏ ଗୀତର ପଦଟିଏ ମିଳିଗଲା ।

"ଖୋଳେ ଖଡ଼ର ଖଡ଼ର"

ପାଦଟିକୁ ମନେ ରଖିବାଲାଗି ସେ ତାକୁ ଦୁଇଚାରି ଥର ବୋଲିଲା । ଆଉ କିଛି ବାଟ ଗଲାପରେ ଦେଖିଲା, ଗୋଟାଏ କଳା ସାପ ତାକୁ ଦେଖି ସର୍ ସର୍ ହୋଇ କଣ୍ଟାଭିତରକୁ ପଶିଯାଉଛି । ଏହାକୁ ଦେଖି ଗୀତର ଦ୍ୱିତୀୟ ପାଦଟି ତା ମନକୁ ଆସିଗଲା—'ଗଲେ ସର୍‌ର ସର୍‌ର' ଏଥର ସେ

ଦୁଇଟିଯାକ ପାଦକୁ ମିଳେଇ ବୋଲିଲା—

‘ଖୋଳେ ଖଡ଼ର ଖଡ଼ର
ଖସେ ସର୍ର ସର୍ର ।’

ଗୀତପାଇଁ ଦୁଇଟି ପାଦ ମିଳିଯିବାରୁ ସେ ଖୁବ୍ ଖୁସି ହୋଇଗଲା । ଆଉ କିଛିବାଟ ଗଲାପରେ ଦେଖିଲା ଗୋଟାଏ ଠେକୁଆ ତା ଆଡ଼କୁ କଟ୍‌ମଟ୍ କରି ଚାହିଁଛି । ଲୋକଟି ମନକୁ ଆଉ ଗୋଟାଏ ପାଦ ଆସିଗଲା— ‘ଚାହେଁ କଟର ମଟର ।’ ଠେକୁଆକୁ ଧରିବାଲାଗି ସେ ତା ପାଖକୁ ଯିବାମାତ୍ରେ ଠେକୁଆ କୁଦାମାରି ବଣ ଭିତରକୁ ପଳେଇଲା । ଏଥର ଲୋକଟିକୁ ଗୀତର ଆଉ ଗୋଟିଏ ପାଦ ମିଳିଗଲା । ସେ ବୋଲିଲା —

‘ଧାଏଁ ନସର ପସର ।’

ଲୋକଟିର ଖୁସି କହିଲେ ନସରେ । ଏବେ ଗୋଟାଏ ପୂରା ଗୀତ ସେ ପାଇଯାଇଛି । ସେ ଗୀତ ଗାଇ ଗାଇ ଘରକୁ ଚାଲିଲା—

“ଖୋଳେ ଖଡ଼ର ଖଡ଼ର
ଖସେ ସର୍ର ସର୍ର
ଚାହେଁ କଟର ମଟର
ଧାଏଁ ନସର ପସର ।”

ଘରେ ପହଞ୍ଚିବାମାତ୍ରେ ତା ସ୍ତ୍ରୀ କହିଲା—‘ମୋ ପାଇଁ ଗୀତ ଆଣିଛ ?’ ସ୍ୱାମୀ କହିଲେ—‘ହଁ, ଟିକିଏ ଅପେକ୍ଷା କର । ମୁଁ କହିବ ।’

ମାତ୍ର ସ୍ତ୍ରୀ ଗୀତଟି ପାଇଁ ଅସ୍ଥିର । ସେ କହିଲା—‘ନାଇଁ, ତୁମେ ଆଗେ ମୋତେ ଗୀତଟି କଣ କୁହ । ତା ପରେ ଯାଇ ଆଉ ଯାହା କହିବ ।’

ସ୍ୱାମୀ ଗୀତଟି ଗାଇଲା ଓ ଗମ୍ଭୀର ହୋଇ କହିଲା- ‘ବୁଝିଲୁ , ଏଇଟା ଗୋଟାଏ ସାମାନ୍ୟ ବା ଏଣୁ ତେଣୁ ଗୀତ ନୁହେଁ । ଏଥିପାଇଁ ମୋତେ ସତୁରି ଟଙ୍କା ଦେବାକୁ ପଡ଼ିଲା ଏଥର ଗୀତଟାକୁ ଭଲକରି ମନେରଖ ।’

ଗୀତଟି ପାଇ ସ୍ତ୍ରୀ ବ ଖୁସି । ଅଳ୍ପ ସମୟ ଭିତରେ ଗୀତର ଗୃଟେଷଟି-ଯାକ ପାଦ ସେ ଘୋଷି ମନେ ରଖିଦେଲା । ଭାବଲା ସକାଳେ ଚକରେ ଗହମ ପେଷିଲାବେଳେ ଏଇ ଗୀତଟି ଗାଇ ପଡ଼ୋଶୀମାନଙ୍କୁ ଚମକେଇ ଦେବ ।

ସେ ଏତେ ଖୁସି ହୋଇଯାଇଥିଲା ଯେ, ତାକୁ ଆଉ ସମୟ ଜଣାପଡ଼ିଲା ନାହିଁ । ରାତି ଅଧରେ ତାର ନିଦ ଭାଙ୍ଗିଗଲା । ସଙ୍ଗେ ସଙ୍ଗେ ସେ ଚକ ପେଷିବାକୁ ଆରମ୍ଭ କରିଦେଲା ।

ରାତିଅଧ—ଘୂରିଆଡ଼େ ଅନ୍ଧାର । ଯୋଗକୁ ସେତିକବେଳେ ଘୃରିଜଣ ଚୋର ଚୋରି କରିବାକୁ ଆସି ତା ଘର କାନ୍ଥରେ ଗୋଟାଏ ଗାତ ଖୋଳୁ-ଥାନ୍ତି । ଏତିକବେଳେ ସ୍ତ୍ରୀ ଲୋକଟି ବୋଲିଲା—

'ଖୋଳେ ଖଡ଼ର ଖଡ଼ର ।

ଗୀତର ଏଇ ପାଦଟି ପ୍ରଥମରୁ କେତେଥର ବୋଲିବାରୁ ଚୋର-ମାନଙ୍କର ସନ୍ଦେହ ହେଲା । ସେମାନେ ଭାବିଲେ ସ୍ତ୍ରୀ ଲୋକଟା ବୋଧହୁଏ ଆମକୁ ଦେଖି ଏପରି ବୋଲୁଛି । ଏହା ଭାବି ସେମାନେ ପଛେଇ ପଛେଇ ଖସିବାକୁ ଲାଗିଲେ । ଠିକ୍ ଏତିକବେଳକୁ କଳାହାଣ୍ଡି ବୋଲିବାକୁ ଆରମ୍ଭ କରିଦେଲା—

'ଖସେ ସର୍ର ସର୍ର'

ଚୋରମାନେ ଆହୁରି ଡ଼ରିଗଲେ । ସ୍ତ୍ରୀ ଲୋକଟା ସତରେ ତାଙ୍କୁ ଦେଖି ଏପରି ଗୀତ ବୋଲୁଛି କି ମନକୁ ମନ ଏପରି ବୋଲୁଛି ଏହା ଜାଣିବାଲାଗି ସେମାନେ ଘର ଭିତରକୁ ଉଙ୍କିମାରିଲେ । ଠିକ୍ ଏତିକବେଳକୁ କଳାହାଣ୍ଡି ଗୀତର ତୃତୀୟ ପାଦଟି ବୋଲିଲା—

'ଭୁହେଁ କଟର ମଟର'

ସ୍ତ୍ରୀ ଲୋକଟି ସେମାନଙ୍କୁ ଦେଖି ପାରିଛି ଏବିଷୟରେ ଚୋରମାନଙ୍କ ମନରେ ଆଉ ସନ୍ଦେହ ରହିଲା ନାହିଁ । ଚୂପ୍‌ଚାପ୍ କପରି ଖସିଗଲେ ରକ୍ଷା । ପାଚେରି ଡେଇଁ ପ୍ରାଣପଣେ ସେମାନେ ସେଠାରୁ ଧାଇଁ ପଳାଇବାକୁ ଆରମ୍ଭ

କରିଦେଲ । ଏତିକିବେଳେ ପୋଟକୁ କଳାହୁଣ୍ଡୀ ଗୀତର ଶେଷ ପଦଟି ବୋଲିଲି—

'ଧାଏଁ ନପର ପପର'

ଚୋରମାନେ ଚାଲିଗଲେ । ସକାଳ ହେଲି । ସ୍ତ୍ରୀ ଲୋକର ଗହମ ପେଷା ମଧ୍ୟ ଶେଷ ହୋଇଗଲି । ସ୍ୱାମୀ ନିଦରୁ ଉଠିଲି । ଆପଣା ଶୋଇବା ଘର କାନ୍ଥରେ ଗୋଟାଏ ଗାତ ହୋଇଛି ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ ଶୋଇବାବେଳେ ଚୋରମାନେ ସନ୍ଧି କରିଛନ୍ତି । ଏହା ଜାଣିପାରି ଭୟରେ ସ୍ତ୍ରୀକୁ ଡାକ ପକାଇଲା—'ଆଲୋ ଧାଇଁଆ । ଚୋରମାନେ ଆମର ସବୁ ନେଇଗଲେ ।'

ସ୍ତ୍ରୀ ବାସୀକାମ ପକେଇ ଧାଇଁ ଆସିଲା । ଚୋରମାନଙ୍କ ଆସିବା ବିଷୟ ସେ ଆଦୌ ଜାଣି ନଥିଲା । କାନ୍ଥରେ ହୋଇଥିବା ସିନ୍ଧଗାତ ଦେଖି ସେ ମଧ୍ୟ ଡରିଗଲା । କାଳେ ଚୋରମାନେ କଣ ସବୁ ନେଇଯାଇଥିବେ ଭାବି ସେମାନେ ଘରଯାକ ତନ୍ନ ତନ୍ନ କରି ଖୋଜିଲେ । ସବୁ ଜିନିଷ ଯଥା ସ୍ଥାନରେ ଅଛି ଦେଖି ସେମାନେ ନିଶ୍ଚିନ୍ତ ବୋଧକଲେ ।

ଟିକିଏ ରହି ସ୍ୱାମୀ ପଚାରିଲା—'ତୁ ରାତିସାରା କଣ କରୁଥିଲୁ ?' ସ୍ତ୍ରୀ କହିଲା—'ମୁଁ ସେଇ ଗୀତଟି ବୋଲୁଥିଲି ।'

ସ୍ୱାମୀ ଆଶ୍ୱସ୍ତିରେ ନିଶ୍ୱାସ ଛାଡ଼ି କହିଲା—'ଓଃ, ସେଇଥି ପାଇଁ ଚୋରମାନେ ଆମର କିଛି କ୍ଷତିକରି ପାରିଲେ ନାହିଁ ।'

ସ୍ତ୍ରୀ କିଛି ବୁଝିନପାରି ସ୍ୱାମୀଆଡ଼େ ଚାହିଁ କହିଲା—'ହଁ ମୋର ମନେ ହେଉଛି ତୁମେ ମୋ ପାଇଁ ବଜାରରୁ ଭଲ ଗୀତଟିଏ ବାଛି କରି ଆଣିଛ ।'

( ମଧ୍ୟଭାରତ )

# ଲୋଭର ଫଳ

ଜଣେ ଜମିଦାର ଥିଲେ । ତାଙ୍କର ଗୁଡ଼ାଏ ମଇଁଷି । ସେମାନଙ୍କୁ ଜଗିବା ଲାଗି ସେ ଲୋକଟିଏ ରଖିଥିଲେ । ତା'ନା ଦଉଡ଼ା । ପାଖ ଗାଁରେ ତା'ର ଘର । ତା'ର ମଧ୍ୟ କେତୋଟି ମଇଁଷି ଥାଆନ୍ତି । ଦଉଡ଼ା ମାଲିକଙ୍କ ମଇଁଷିଙ୍କୁ ଚରାଇବାକୁ ନେଲାବେଳେ ଆପଣା ମଇଁଷିଙ୍କୁ ମଧ୍ୟ ସାଙ୍ଗରେ ନେଇଯାଏ । ଜଙ୍ଗଲରେ ଆପଣା ମଇଁଷିକୁ ଘାସ ଚରିବାକୁ ଛାଡ଼ିଦିଏ; ମାତ୍ର ମାଲିକଙ୍କ ମଇଁଷି ମୁହଁରେ ତୁଣ୍ଡି ବାନ୍ଧିଦିଏ । ଏମିତି ସବୁଦିନ କରିବା ଫଳରେ ଦଉଡ଼ାର ମଇଁଷିଗୁଡ଼ିକ ଘାସ ଚରି ମୋଟାସୋଟା ହେଲେ । ମାଲିକଙ୍କ ମଇଁଷିଗୁଡ଼ିକ ଘାସ ଖାଇବାକୁ ନପାଇ ଶୁଖିଶୁଖି ଗଲେ ।

ଆପଣା ମଇଁଷିଗୁଡ଼ିକ ଦୁର୍ବଳ ହୋଇଯିବା ଦେଖି ଦିନେ ଜମିଦାର ଦଉଡ଼ାକୁ ପଚାରିଲେ—"ହଇରେ, ତୁ ତ ମଇଁଷିମାନଙ୍କୁ ଏକାଠି ଚରାଉଛୁ, ମୋ ମଇଁଷି କାହିଁକି ମୋଟା ଦେଖାଯାଉଛନ୍ତି ? କଥା କଣ ?"

ଦଉଡ଼ା କହିଲା—"ଆଜ୍ଞା ମୁଁ ତା' କେମିତି କହିବି ? ମୁଁ ତ ସମସ୍ତଙ୍କୁ ନେଇ ଏକାଠି ଚରିବାକୁ ଛାଡ଼ିଦେଉଛି । ବିଶ୍ୱାସ ନ ହେଉଛି ତ ଆପଣ ନିଜେ ଜଙ୍ଗଲକୁ ଯାଇ ଦେଖିଆସନ୍ତୁ ।" ଏହା କହିଦେଇ ସେ ମଇଁଷିପଲକୁ ନେଇ ଜଙ୍ଗଲକୁ ଗଲା । ଭାବିଲା, ମାଲିକଙ୍କୁ ସିନା ଜଙ୍ଗଲକୁ ଯାଇ ଦେଖି ଆସିବାକୁ କହିଲି, ସତରେ କ'ଣ ସେ ଆଜ ଦେଖିବାକୁ ଆସିବେ ! ଏଣୁ ସବୁଦିନ ଭଳି ସେଦିନ ମଧ୍ୟ ତା' ମଇଁଷିକୁ ଘାସ ଚରିବାକୁ ଛାଡ଼ିଦେଲା ଓ ମାଲିକଙ୍କ ମଇଁଷି ମୁହଁରେ ତୁଣ୍ଡି ବାନ୍ଧିଦେଲା ।

ଦଉଡ଼ା କଥାରେ ଜମିଦାରଙ୍କର ସନ୍ଦେହ ହେଲା । ଯୋଗକୁ ସେ ସେଇଦିନ ଦଉଡ଼ା କଥା ପରୀକ୍ଷା କରିବାକୁ ଜଙ୍ଗଲକୁ ବାହାରିଲେ । ଯାଇ ଦେଖିଲେ ଦଉଡ଼ାର ମଇଁଷି ସବୁ ଆନନ୍ଦରେ ଚରୁଛନ୍ତି; ମାତ୍ର ତାଙ୍କ ମଇଁଷିଗୁଡ଼ିକର ମୁହଁ ବନ୍ଧାହୋଇଛି । ଏଣୁ ସେମାନେ ଖାଲି ମାଟି ଉପରେ ମୁହଁ ମାରୁଛନ୍ତି ।

ରାଗରେ ସେ ଜଳାଗଲେ ଓ ଦଡ଼ାର ମଇଁଷିଗୁଡ଼ାକୁ ଗୋଟିଗୋଟି କରି ଖଣ୍ଡାରେ ହାଣିଦେଲେ ।

ଦଡ଼ା ଖୁବ୍ ହୁସିଆର । ଜମିଦାର ଚାଲିଗଲା ପରେ ସେ ଯାଇ ଚମାରକୁ ଡାକିଆଣିଲା । ତାକୁ କହିଲା—"ଚମାର ଭାଇ ! ଏହି ମଲା ମଇଁଷିଗୁଡ଼ାକୁ ନେଇଯାଅ । ମଇଁଷିର ହାଡ଼, ମାଉଁଶତକ ତୁମର ଚମଡ଼ାତକ ମୋର ।"

ଚମାର ସେଇଆ କଲା । ଦଡ଼ାକୁ ମଇଁଷି ଚମଡ଼ାତକ ଦେଇଦେଲା । ଦଡ଼ା ଘରେ ଚମଡ଼ା ସବୁ ରଖିଲା, ଦିନେ ସେ ସେଗୁଡ଼ିକୁ ଧରି ବାହାରିପଡ଼ିଲା । ଯାଉ ଯାଉ ଗୋଟିଏ ବଣ ପାଖେ ରାତି ହୋଇଗଲା । ଆଉ ଯାଇ ନ ପାରି ସେ ରାତିଟା ସେଇଠି କଟାଇବ ବୋଲି ଗୋଟିଏ ଉଚ୍ଚ ଗଛରେ ଚଢ଼ିଲା । ଚମଡ଼ା ବୋଝକୁ ମଧ୍ୟ ଉପରକୁ ନେଇଗଲା । କ୍ରମେ ରାତି ଅଧିକ ହେଲା । ସେହି ଗଛ ମୂଳକୁ ଚାରିଜଣ ଚୋର ଆସିଲେ । ସେମାନେ କେଉଁଠାରୁ ଚୋରିକରି ଗୁଡ଼ାଏ ମାଲ ଆଣିଥାନ୍ତି । ସେହି ଗଛ ତଳେ ଆସି ସେମାନେ ସେଗୁଡ଼ିକୁ ବଣ୍ଟାବଣ୍ଟି କରିବାକୁ ଲାଗିଲେ । ଜଣେ ଚୋର କହିଲା— "ଠିକ୍ ଠିକ୍ ବଣ୍ଟାବଣ୍ଟି କର, ନ ହେଲେ ତୁମ ଉପରେ ବଜ୍ର ପଡ଼ିବ ।"

ଦଡ଼ା ଉପରେ ରହି ସବୁ ଦେଖୁଥାଏ । ଠିକଣା ବେଳ ଦେଖି ଚମଡ଼ା ବୋଝଟିକୁ ସେ ତଳକୁ ଗଡ଼ାଇ ଦେଲା । ହଠାତ୍ ଢଡଢଡ଼ ଶବ୍ଦ କରି ଚମଡ଼ା ବୋଝଟା ତଳେ ପଡ଼ିଗଲା । ଚୋରମାନେ ବଜ୍ର ପଡ଼ିଲା ଭାବି ଚମକି ପଡ଼ି ପ୍ରାଣ ବଞ୍ଚାଇବା ପାଇଁ ଯିଏ ଯୁଆଡ଼େ ପଳାଇଲେ । ସେମାନେ ଆଣିଥିବା ମାଲମତା ସେଇଠି ପଡ଼ିରହିଲା ।

ଟିକିଏ ପରସ୍ତ ହେବାରୁ ଦଡ଼ା ଗଛରୁ ଓହ୍ଲାଇ ସବୁଟିକେ ମାଲମତା ଧରି ଘରକୁ ଫେରିଲା । ଘରେ ପହଞ୍ଚି ଡାକ ପକାଇଲା—"ମା, ମା ନିକିତିଟାଏ ଆଣ । ଦେଖ୍; ମୁଁ କେତେ ଜିନିଷ ଆଣିଛି । ତାକୁ ଓଜନ କରିବା ।"

ମା' ଦଉଡ଼ି ଯାଇ ଜମିଦାରଙ୍କ ଘରେ ପହଞ୍ଚିଲା । କହିଲା— "ଆଜ୍ଞା ଟିକେ ଆପଣଙ୍କ ନିକିତିଟା ଦିଅନ୍ତୁ । ଦଡ଼ା କ'ଣ ଧନ ଦରବ ଆଣିଛି ।"

ଜମିଦାର ପଚାରିଲେ— "ସେ କେଉଁଠୁ ଧନ ଆଣିଲା ?"

"ପ୍ରଭୁ ମଇଁଷି ବିକିକରି କ'ଣ ସବୁ ଆଣିଛି ବୋଲି କହୁଛି ।" —ବୁଢ଼ୀ ଉତ୍ତର ଦେଲା ।

ଜମିଦାର ଭାବିଲେ, ବୁଢ଼ୀ ତ ମିଛ କହୁ ନ ଥିବ । ଦଣ୍ଡା କ ମାଲ ଆଣିଛି ତାହା ଜାଣିବା ଦରକାର । ଏଣୁ ସେ ତରାଜୁର ଗୋଟିଏ ପିଲା ପଛରେ କଛି ପାଣିଆ ଗୁଡ଼ ଲଗାଇ ତରାଜୁଟିକୁ ବୁଢ଼ୀକୁ ଦେଲେ । କେତେ ସମୟ ପରେ ବୁଢ଼ୀ ତରାଜୁଟିକୁ ଆଣି ଫେରାଇ ଦେଲା । ଜମିଦାର ଦେଖିଲେ ତରାଜୁ ପିଲା ତଳେ ସୁନା ମୋହରଟିଏ ଲଗିଛି । ସେ ବୁଝିପାରିଲେ, ଦଣ୍ଡା ଚମଡ଼ା ବିକି ବହୁତ ମୋହର ପାଇଛି । ଭାବିଲେ ତାଙ୍କ ମଇଁଷିଗୁଡ଼ିକୁ ମାରି ଚମଡ଼ା ବିକିଲେ ବହୁତ ଲାଭ ହେବ ।

ପରଦିନ ସକାଳେ ଜମିଦାରଙ୍କ ଆଦେଶରେ ତାଙ୍କ ମଇଁଷିଗୁଡ଼ାଙ୍କୁ ମରାଗଲା । ମଇଁଷି ଚମଡ଼ାକୁ ଜମିଦାର ଗାଡ଼ିରେ ଲଦି ହାଟକୁ ବିକିବାକୁ ବାହାରିପଡ଼ିଲେ । ଚମଡ଼ା ନେବ ଚମଡ଼ା— କହି ସେ ହାଟସାରା ପାଟିକରି ବୁଲିଲେ, ମାତ୍ର କେହି ଚମଡ଼ା ନେବାକୁ ବାହାରିଲେ ନାହିଁ । କେବଳ ଜଣେ ଗ୍ରାହକ ପୋଟେକ ମାତ୍ର ପାଞ୍ଚ ଟଙ୍କାରେ ନେବ ବୋଲି କହିଲା । ଦେଖି ଦେଖୁ ସଞ୍ଜ ହେଲା । ହାଟ ଭାଙ୍ଗିଲା । ଜମିଦାର ମୁହଁ ଶୁଖେଇ ଚମଡ଼ାସବୁ ପୁଣି ଶଗଡ଼ରେ ଲଦି ଘରକୁ ଫେରିଲେ । ଦଣ୍ଡାକୁ ଡାକି ପଚାରିଲେ— "କିରେ ! ତୁ ମଇଁଷି ଚମଡ଼ାରୁ ବେଶ୍ ଧନ କମେଇଲୁ; ମାତ୍ର ମଇଁଷି ଚମଡ଼ାକୁ ତ କେହି ପଚାରିଲେ ନାହିଁ । କଥା କ'ଣ ?"

"ହଜୁର ଏ ତ ଭାଗ୍ୟର କଥା । ଯାହା ଭାଗ୍ୟରେ ଯାହା ଅଛି ସେ ତା' ପାଇବ ।" —ଦଣ୍ଡା କହିଲା ।

ଜମିଦାରଙ୍କ ମନ ରାଗ ଓ ଈର୍ଷାରେ ଜଳୁଥାଏ । ଦଣ୍ଡା ଯୋଗୁ ସିନା ସେ ଦାମିକା ମଇଁଷିଗୁଡ଼ାଙ୍କୁ ମାରିଦେଲେ । ରାଗରେ ତାଙ୍କୁ ନିଦ ହେଉ ନ ଥାଏ । ଭାବିଲେ ଦଣ୍ଡାଘର ସେ ନିଆଁ ଲଗାଇ ଦେବେ । ସେଥିପାଇଁ ସେ

ଖଟରୁ ଉଠି ଚୁପ୍‌ଚୁପ୍ ଘରୁ ବାହାର ପଡ଼ିଲେ । ଦଣ୍ଡା ଘର ଚୂଳରେ ନିଆଁ ଲଗାଇ ଘରକୁ ଫେରି ଆସିଲେ । ଯୋଚକୁ ସେତେବେଳେ ଦଣ୍ଡାକୁ ନିଦ ହୋଇ ନ ଥିଲା । ଘରେ ନିଆଁ ଲଗିଗିବା ଦେଖି ସେ ମା'କୁ ନିଦରୁ ଉଠାଇଲା ଓ ତା'ର ସବୁତକ ଧନ ସମ୍ପତ୍ତି ଘରୁ ବାହାରକୁ ନେଇ ଆସିଲା ।

ସକାଳୁ ଦରଜା ଜଳି ପାଉଁଶ ହୋଇ ଯାଇଥାଏ । ଦଣ୍ଡା କେତୋଟି ଥଳୀରେ ସେହି ପାଉଁଶତକ ପୂରାଇଲା । ଜମିଦାରଙ୍କୁ ଯାଇ କହିଲା— "ଆଜ୍ଞା ମୋତେ ଆପଣଙ୍କ ଶଗଡ଼ଟି ଦିଅନ୍ତୁ ।" ଜମିଦାର ଜାଣନ୍ତି ପାଉଁଶ କେବେ ଚୋରି ହୋଇ ପାରିବନି, ଏଣୁ ଗାଡ଼ି ଦେବାକୁ ସେ କିଛି ଆପତ୍ତି କଲେନି । ଦଣ୍ଡା ଶଗଡ଼ରେ ପାଉଁଶ ଥଳୀକୁ ଥୋଇ ବିକିବାକୁ ବାହାର ପଡ଼ିଲା ।

କେତେବାଟ ଗଲାପରେ ଦଣ୍ଡା ଦେଖିଲା, ଜଣେ ମୋଟା ମହାଜନ ଓ ତାଙ୍କ ସ୍ତ୍ରୀ ଚାଲି ଚାଲି ଯାଉଛନ୍ତି । ପ୍ରଚଣ୍ଡ ଖରାବେଳେ ଦୁହେଁ ବାଟ ଚାଲି ଚାଲି ହାଲିକାନ ହୋଇଥାନ୍ତି । ଦଣ୍ଡାକୁ ପାଖରେ ଦେଖି ମହାଜନ କହିଲେ— "ଭାଇ, ଆମ ଦୁହିଁଙ୍କୁ ଟିକେ ତୋ ଶଗଡ଼ରେ ବସାଇ ନେ ।"

ଦଣ୍ଡା ମୁଣ୍ଡକୁ ହଠାତ୍ ଗୋଟେ ଫିକର ଜୁଟିଲା । ସେ କହିଲା— "ମହାଜନେ ! ତମକୁ ଶଗଡ଼ରେ ବସାଇ ନେବାରେ ମୋର ଆପତ୍ତି ନାହିଁ; ମାତ୍ର ମୋ ଗାଡ଼ିରେ ସୁନା ଲଦା ହୋଇଛି । ଗାଡ଼ିରେ ବସି ତୁମ ଭିତରୁ କିଏ ଯଦି ବାୟୁ ଛାଡ଼ିବ ତେବେ ମୋ ସୁନାତକ ପାଉଁଶ ହୋଇଯିବ । ଯଦି ସେଇଆ ନ କରିବ, ତୁମ ଦୁହିଁଙ୍କୁ ବସେଇ ନେବି । ହଁ ମନେରଖନ୍ତୁ, ଯଦି ସେହି ସୁନା ଥଳୀ ପାଉଁଶ ହୋଇଯାଏ, ତେବେ ମୁଁ ତୁମଠାରୁ ସେତକ ସୁନା ନେବି ।"

ଉପର ଚାଲି, ତଳ ତାତି ଯୋଗୁ ମହାଜନ ଓ ତାଙ୍କ ସ୍ତ୍ରୀ ଦୁହେଁଯାକ ନସ୍ୟାନ୍ତ ହୋଇ ଯାଇଥାନ୍ତି । ସେମାନେ ଦଣ୍ଡା କଥାରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଦୁହିଁଙ୍କୁ ଗାଡ଼ିରେ ବସାଇ ଦଣ୍ଡା ଚାଲିଲା । ସେମାନଙ୍କ ଘର ପାଖେ ଗାଡ଼ି ପହଞ୍ଚିଲା । ଦୁହେଁ ଗାଡ଼ିରୁ ଓହ୍ଲାଇଲେ । ସଙ୍ଗେ ସଙ୍ଗେ ଦଣ୍ଡା ଥଳୀରେ ହାତ ବାଡ଼େଇ ଦେଇ କହିଲା— "କଣହୋ ମହାଜନ ! ତୁମେ କ'ଣ

କଲ ? ମୁଁ ପରା କହୁଥିଲି କେହ୍ନ ବାପୁ ଛାଡ଼ିବେ ନାହିଁ; ମାତ୍ର ଇଏ କ'ଣ ହେଲା । ମୋ ସୁନା ସବୁ ତ ପାଉଁଶ ହୋଇଯାଇଛି ।"

ମହାଜନ କାବା ହୋଇଗଲେ । ଦଣ୍ଡା ପାଟିକରି ପୁଣି କହିଲା— "ମୋ କଥା ମାନିଲ ନାହିଁ । ହେଇ ଦେଖ, ଏ ପାଉଁଶକୁ ଓଜନ କରି ମୋତେ ଭଲେ ଭଲେ ସୁନା ଦେଇଦିଅ ।

ମହାଜନ ବଡ଼ ଅଡୁଆରେ ପଡ଼ିଗଲେ । ଦଣ୍ଡା ପାଟିକରି କମ୍ପାଉଥାଏ । ଲୋକେ ଜମା ହେଲେ । ବାଧ୍ୟହୋଇ ମହାଜନଙ୍କୁ ସେତିକି ସୁନା ଓଜନ କରି ଦଣ୍ଡାକୁ ଦେବାକୁ ପଡ଼ିଲା । ସୁନା ନେଇ ଦଣ୍ଡା ଖୁସିରେ ନିଜ ଗାଁକୁ ଫେରିଲା ।

କିଛିଦିନ ପରେ ଦଣ୍ଡା ନିଜ ଗାଁରେ ପକ୍‌କା ଘର ତୋଳାଇଲା । ଏହା ଦେଖି ଜମିଦାର ସମ୍ଭାଳି ହୋଇପାରିଲେ ନାହିଁ । ଦିନେ ଦଣ୍ଡା ପାଖକୁ ଆସି ପଚାରିଲେ— "କିରେ, ଘର ତୋଳିବାକୁ କେଉଁଠୁ ଏତେ ଟଙ୍କା ପାଇଲୁ ?"

"କ'ଣ କହିବି ଆଜ୍ଞା, ଘର ପୋଡ଼ିଗଲା ତ ତା'ରି ପାଉଁଶକୁ ଦେଇ ମୁଁ ସୁନା ନେଇ ଆସିଲି ।" —ଦଣ୍ଡା କହିଲା ।

ଜମିଦାରଙ୍କ ବହୁତ ଲୋଭ । ଏଣେ ଦଣ୍ଡାର ଉନ୍ନତି ଦେଖି ଈର୍ଷାରେ ତାଙ୍କର ହୃଦୟ ଜଳୁଥାଏ । ଦଣ୍ଡା କଥାରେ ବିଶ୍ୱାସ କରି ସେ ଆସି ଆପଣା ଘରେ ନିଆଁ ଲଗାଇ ଦେଲେ । ସେଇ ପାଉଁଶକୁ ଥଳୀରେ ପୂରାଇ ଗାଡ଼ିରେ ଲଦିଲେ । ତାକୁ ବଜାରରେ ବିକିବା ଲାଗି ବାହାରି ପଡ଼ିଲେ । ତାକୁ ଦେଖି ବାଟରେ ଲୋକେ ହସୁଥାନ୍ତି । —ନିଜ ନିଜ ଭିତରେ କଥାଭାଷା ହୁଅନ୍ତି— "ଏଇଟା କେଡ଼େ ମୂର୍ଖ ! ପାଉଁଶ ବିକିବାକୁ ବାହାରିଛି । ଏଗୁଡ଼ାକ କ'ଣ କିଏ କିଣେ ?"

ସନ୍ଧ୍ୟା ହେବା ପର୍ଯ୍ୟନ୍ତ ଜମିଦାର ବାବୁ ହାଟ ବଜାରରେ ଖୁବ୍ ପାଟି-କରି ଥକିଗଲେ । —'ପାଉଁଶ ନେବ ପାଉଁଶ'— ମାତ୍ର କିଏ କାହିଁକି ବା ତାକୁ ନେବାକୁ ଚାହିଁବ ? ଶେଷକୁ ଖାଲି ହାତରେ ସେ ଘରକୁ ଫେରିଲେ । ଏଣେ ଦଣ୍ଡାର ଘର ତିଆରି ହୋଇଗଲା । ଜମିଦାର ଆସି ଦଣ୍ଡାକୁ କହିଲେ—

"ଜରେ, ତୁ କପରେ ପାଉଁଶ ଵକଲୁ ? ମୋ ପାଉଁଶ ତ ଵକି ହୋଇପାରିଲ ନାହିଁ ।"

ଦଣ୍ଡା କହିଲ "ଏ ହେଉଛି ଭଗ୍ୟର ଫଳ । ଯିଏ ଯାହା କରିବ, ସେ ତା'ର ଫଳ ପାଇବ ।"

ଦଣ୍ଡା ଏହିପରି ତା'ର ଚତୁରତା ଯୋଗୁଁ ବହୁତ ଧନ କମାଇଲ ଓ ଜମିଦାର ତାଙ୍କ ମୂର୍ଖତା ଓ ଲୋଭରୁ ଗରିବ ହୋଇଗଲେ । ଦଣ୍ଡା ବାହାସାହା ହୋଇ ଆନନ୍ଦରେ ରହିଲ ।

( ମାଳବ )



# ମୂର୍ଖ ସ୍ୱାମୀ

ମହାଜନଟିଏ । ତା'ର ଗୋଟିଏ ବୋଲ ପୁଅ । ପୁଅଟି ବୋକା । ପୁଅଟି ବଡ଼ ହେବାରୁ ବାପା ତାକୁ ବାହା କରିଦେବାକୁ ସ୍ଥିର କଲେ । ପୁଅ କହିଲ– "ମୋ ଲଗି ଏପରି ଝିଅଟିଏ ଯୋଗାଡ଼ କରିବ ଯେ ପ୍ରତିଦିନ ମୋଠାରୁ ଯୋତାରେ ପାଞ୍ଚପାହାର ଖାଇବାକୁ ରାଜିଥିବ ।"

ମହାଜନ ଭାବିଲ, ଏହା ତ ଗୋଟିଏ ବିଷମ କଥା । ପ୍ରତିଦିନ ଯୋତାରେ ପାଞ୍ଚପାହାର ଖାଇବାକୁ ପ୍ରସ୍ତୁତ ଥିବା ଝିଅଟିଏ ବା କାହୁଁ ମିଳିବ ? ବାସ୍ତବରେ ଏହି କଥା ଶୁଣି କୌଣସି ଲୋକ ତା ଝିଅ ବା ଭଉଣୀକୁ ବାହା ଦେବାକୁ ରାଜି ହେଲେ ନାହିଁ । ବହୁଦିନ ପରେ ଜଣେ ମହାଜନର ଝିଅ ଏହି ସର୍ତ୍ତରେ ବାହା ହେବାକୁ ରାଜିହେଲ ।

ଖୁବ୍ ଜାକଯମକରେ ମହାଜନ ପୁଅ ସଙ୍ଗେ ସେଇ ଝିଅର ବାହାଘର ହେଲା । ବହୁତ ବାଜା ବାଜିଲା । ବାଣ ଫୁଟିଲା । ନାଚ ଗୀତ ବି ହେଲା । ମହାଜନ ଘର ଝିଅ ବୋହୂହୋଇ ଶାଶୁ ଘରକୁ ଆସିଲା ।

ମହାଜନ ପୁଅ ଖୁବ୍ ଖୁସି । ସର୍ତ୍ତ ଅନୁସାରେ ସେ ଯୋତା ନେଇ ସ୍ତ୍ରୀ ପାଖକୁ ଗଲା; ମାତ୍ର ବୋହୂଟି ଥିଲା ଖୁବ୍ ବୁଦ୍ଧିମତୀ । ସେ କହିଲା— "ଆପଣ ନିଶ୍ଚୟ ମୋତେ ପାଞ୍ଚ ଯୋତା ମାରିବେ; ମାତ୍ର ତାହା ଏବେ ହୋଇପାରିବ ନାହିଁ । ଯେତେବେଳେ ଆପଣ ଟଙ୍କା ପଇସା ରୋଜଗାର କରି ଘରକୁ ଆଣିବେ ସେତେବେଳେ ମୋତେ ମାରିବେ । ଏବେ ତ ମୁଁ ଶ୍ୱଶୁରଙ୍କ ସମ୍ପତ୍ତି । ମୋ ଉପରେ ଆପଣଙ୍କର କିଛି ଅଧିକାର ନାହିଁ ।"

ସ୍ତ୍ରୀର କଥାଟା ପୁଅର ମନକୁ ଭେଦିଗଲା । ପ୍ରକୃତରେ ବାପାଙ୍କ ଟଙ୍କାରେ ଏଇ ଝିଅଟା ଘରକୁ ଆସିଛି । ସିଏ ତ ସେ ଅରୋଜଗାରୀ । ମନେ ମନେ ସ୍ଥିର କଲା ଯେପରି ହେଉ ସେ ବହୁତ ଧନ କମାଇବ ଓ ତା'ପରେ ଆସି ନିଜ ସ୍ତ୍ରୀକୁ ପାଞ୍ଚଯୋତା ମାରିବ । କିଛିଦିନ ପରେ ସେ ବାପାଙ୍କ ପାଖକୁ ଯାଇ କହିଲା— "ବାପା ! ମୋତେ କିଛି ଟଙ୍କା ଦିଅ, ମୁଁ ବିଦେଶକୁ ବେପାର କରିବାକୁ ଯିବ ।"

ପୁଅର ଧନ ଅର୍ଜନ କରିବାକୁ ମନ ହୋଇଛି ଦେଖି ମହାଜନ ଖୁସି ହେଲା । ପୁଅକୁ ବହୁତ ଧନ ଦେଲା । ପୁଅ ବିଦେଶକୁ ଅନୁକୂଳ କଲା ।

ମହାଜନ ପୁଅ କେତେ ବାଟ ଗଲାପରେ ଗୋଟିଏ ଗ୍ରାମରେ ରାତିଟାରେ ବିଶ୍ରାମ ନେଲା । ଯେଉଁଠି ରହିଲା, ତା' ପାଖରେ ଗୋଟିଏ ଦୁଷ୍ଟ ସ୍ତ୍ରୀ ଲୋକର ଘର । ସ୍ତ୍ରୀ ଲୋକଟି ମହାଜନ ପୁଅ ପାଖକୁ ଆସି ଦେଖିଲା, ତା' ପାଖରେ ବହୁତ ଜିନିଷପତ୍ର ଅଛି । ସେ କହିଲା— "ସାଆନ୍ତ ! ଆପଣ ଏଠାରେ କାହିଁକି ଏକୁଟିଆ ରହୁଛନ୍ତି । ଆସନ୍ତୁ ମୋ ଘରେ ରହିବେ ।"

ମହାଜନ ପୁଅ ସେହି ସ୍ତ୍ରୀ ଲୋକ କଥାରେ ରାଜି ହୋଇଗଲା । ଆପଣା ଗଣ୍ଠିଲିପତ୍ର ନେଇ ତା ଘରେ ପହଞ୍ଚିଲା । ସେଠାରେ ଖାଇ ପିଇ ଶୋଇପଡ଼ିଲା ।

ନେ ଶୋଇବା ପରେ ସ୍ତ୍ରୀ ଲୋକଟି ନିଜର ରୂପାର କଂଟରାଟିକୁ ଆଣି ମହାଜନ ପୁଅର ଗଣ୍ଠିଲି ଭିତରେ ଲୁଚାଇ ଦେଲା ।

ସକାଳ ହେଲା, ଲୋକମାନେ ଉଠି ଯେ ଯାହା କାମରେ ବାହାରିଲେ । ଏହି ସମୟରେ ସ୍ତ୍ରୀ ଲୋକଟି ବଡ଼ପାଟିରେ ଡ଼ାକ ପକାଇଲା—"ହେ ଭଗବାନ୍ ! ମୋ ରୂପା କଂଟରାଟି କିଏ ନେଇ ଯାଇଛି ।" ଲୋକ ଜମିଗଲେ । ମହାଜନ ପୁଅକୁ ପଚାରିଗଲା । ସେ କହିଲା— "ମୋତେ କ'ଣ ତୁମେ ଗରିବ ଲୋକ ଭାବିଛ ? ମୁଁ କାହିଁକି ତୁମ କଂଟରାକୁ ନେବି ।"

ସ୍ତ୍ରୀ ଲୋକଟି କହିଲା— "ଏତେ କଥାରୁ କ'ଣ ମିଳିବ ? ତୁମ ଗଣ୍ଠିଲି ଖୋଲ, ଯଦି ସେଥିରୁ ମୋ କଂଟରା ବାହାରିବ ତେବେ ତୁମ ଗଣ୍ଠିଲିରେ ଥିବା ଜିନିଷତକ ମୁଁ ନେବି । ଯଦି ଗଣ୍ଠିଲିରେ ମୋ କଂଟରା ନ ଥିବ, ତେବେ ମୋ ଘରର ସମସ୍ତ ଜିନିଷ ତମେ ନେବ ।"

ମହାଜନ ପୁଅର ଧାରଣା ତା ଗଣ୍ଠିଲିରେ କଂଟରା ନାହିଁ । ଏଣୁ ସେ କଥାରେ ରାଜି ହୋଇଗଲା; ମାତ୍ର ଗଣ୍ଠିଲିରେ ଯେ କଂଟରାଟି ଅଛି, ଏ କଥା ସେ ଜାଣେନା । ଗଣ୍ଠିଲିଟି ଖୋଲିବାରୁ କଂଟରାଟି ବାହାରିଲା । ସମସ୍ତଙ୍କ ଆଗରେ ତ ସେ ମାନିଛି । ଏଣୁ ସେଇ ସ୍ତ୍ରୀ ଲୋକଟିକୁ ସେ ତା'ର ଗଣ୍ଠିଲିଟି ଦେବାକୁ ବାଧ୍ୟ ହେଲା ।

ମହାଜନ ପୁଅ ପାଖେ ଆଉ ଅଳ୍ପ ଜିନିଷ ଥାଏ । ସେତକ ନେଇ ସେ ସେଠାରୁ ବାହାରିପଡ଼ିଲା । ଗଣ୍ଠିଲିଟି ହରାଇଥିବାରୁ ତା ମନରେ ଦୁଃଖ । ଗାଁ-ଗଣ୍ଡା ବୁଲି ସେ ବହୁତ ଦୂରକୁ ଯାଇ ଗୋଟାଏ ଜଙ୍ଗଲରେ ପହଞ୍ଚିଲା । ସଞ୍ଜ ହୋଇ ଆସୁଥାଏ । ଏତିକିବେଳେ ଜଣେ ଲେଙ୍ଗଟା ଲୋକ ସଙ୍ଗରେ ତା'ର ଦେଖା ହେଲା । ସେ ତା ପାଖକୁ ଆସି ନମସ୍କାର କଲା । କହିଲା— "ହଜୁର ! ଆପଣଙ୍କୁ ତ ମୁଁ ଖୋଜୁଛି । ଆପଣଙ୍କ ବାପା ମୋଠାରୁ ଟଙ୍କା କରଜ ନେଇ-ଛନ୍ତି । ଆପଣ ସେଇ ଟଙ୍କାଟା ମୋତେ ଦେଇଯାଆନ୍ତୁ ।"

ଏହାଶୁଣି ମହାଜନ ପୁଅ ଡାବରାଇ ଗଲା । କହିଲା— "ହଜ ହଜ, ମୋ ସଙ୍ଗେ କାହିଁକି ଝଗଡ଼ା କରିବୁ । ମୋ ପାଖେ ଯାହା ଅଛି, ନେଇଯାଅ ।

କଥାଟା ଲୁଚିଯାଉ ।" ଏହା କହି ତା ପାଖେ ଯାହା ଥିଲା ସେ ସେଇ ଗ୍ରେଟାକୁ ଦେଇଦେଲା ।

ମହାଜନ ପୁଅ ପୁଣି କିଛି ବାଟ ଗଲାପରେ ଜଣେ କଣା ଲୋକକୁ ଦେଖିଲା । ସେ ବି ଗୋଟାଏ ଠକ । ମହାଜନ ପୁଅକୁ କହିଲା— "ହଜୁର ! ଅନ୍ନଦାତା ! ଆପଣଙ୍କ ବାପାଙ୍କ ପାଖେ ମୁଁ ମୋର ଗୋଟିଏ ଆଖି ବନ୍ଧା ରଖିଛି । ତେବେ ମୋଠାରୁ ଟଙ୍କା ନେଇ ମୋ ଆଖିଟି ମୋତେ ଫେରାଇ ଦିଅନ୍ତୁ ।"

ମହାଜନ ପୁଅକୁ କିଛି ବୁଦ୍ଧି ଦିଶିଲାନାହିଁ । ଅଣ୍ଟାରେ ତାର ମାତ୍ର ମୋହରଟିଏ ଥାଏ । କଣାକୁ ସେ ସେଇଟିକୁ ନେଇ ତା'ଠାରୁ ରକ୍ଷାପାଇଲା । ସେତେବେଳକୁ ତା ପାଖରେ କାଣ କଉଡ଼ିଟିଏ ବି ନଥାଏ । ଭୋକରେ ପେଟ ଜଳୁଛି । କ'ଣ କରିବ ? ପାଖରେ ଗାଁଗଣ୍ଡା ଦିଶୁନି । ପୁଣି ଦୁଇକୋଶ ଯାଇ ଗୋଟିଏ ଗାଁରେ ପହଞ୍ଚିଲା । ସେଇଠି ବିଶ୍ରାମ ନେଲା । ଚିନ୍ତାରେ ରାତିସାରା ତାକୁ ନିଦ ନାହିଁ । ବେପାର କରିବାକୁ ଆସି ସବୁବେଳେ ଧନ ହରେଇଛି । ଏବେ ସେ କ'ଣ କରିବ ? ଠିକ୍ କଲା ସେ ଚାକିରି କରି ଟଙ୍କା ରୋଜଗାର କରିବ । ସେଥିରୁ କିଛି ଟଙ୍କା ଜମାଇଲା ପରେ ସେ ବେପାର କରିବ ।

ସକାଳ ହେବାରୁ ସେ ସେଇ ଗାଁରେ ଚାକିରି ଖୋଜି ବୁଲିଲା । ଗାଁରେ ବା ଚାକିରି କାହୁଁ ମିଳିବ ? ଶେଷରେ ଜଣେ ତେଲି ତାକୁ ଘଣା ବୁଲେଇବା କାମରେ ରଖିଲା । ପ୍ରତିଦିନ ସେ ଘଣା ଉପରେ ବସି ତେଲ ପେଡ଼ିବାରେ ଲାଗିଥାଏ । ଏହିପରି କିଛିଦିନ ଗଲାପରେ ଦିନେ ତା'ର ବାପାଙ୍କ କଥା ମନେପଡ଼ିଲା । ସେ ତାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲା—

"ପୂଜ୍ୟ ବାପା, ମୁଁ ଭଲରେ ଅଛି । ମାଟି ଉପରେ ଆଉ ମୋ ପାଦ ପଡୁନି । ଲଗାମ ଉପରେ ହାତରଖି ମୁଁ ବୁଲୁଛି । ଇତି ।

ଆପଣଙ୍କର ପୁତ୍ର ।"

ମହାଜନ ବୁଢ଼ା ପୁଅର ପତ୍ରଟି ପଢି ଖୁସିହେଲେ । ବୋହୂକୁ ବୁଝାଇ କହିଲେ"ଦେଖ ବୋହୂ, ପୁଅ ମୋର କେତେ ବୁଦ୍ଧିଆ । ବିଦେଶ ଯାଇ

ସବୁବେଳେ କୋରଡ଼ରେ ହାତରଖି ବୁଲୁଛି । ମୁଁ ସବ ଜାଣେ ପୁଅଟା ଖୁବ୍ ଧନ ଅର୍ଜିବ ।"

ବୁଦ୍ଧିମତୀ ବୋହୂ ଶଶୁରଙ୍କ ହାତରୁ ଚିଠି ନେଇ ପଢ଼ିଲା । ସେ ଭଲଭାବରେ ଜାଣେ ତାର ସ୍ୱାମୀଟା ଯୋଗ୍ୟ ନୁହେଁ । ତା' ମନରେ ସନ୍ଦେହ ହେଲା । ସେ ପାଖ ଗାଁ ଗଣ୍ଡା ସମ୍ପର୍କରେ ଧବୁକଥା ବୁଝିଲା । ଭାବିଲା ସେ କେଉଁଠ ଚାକିରୀ କରୁଅଛନ୍ତି । ତା'ପରେ ଦିନେ ଶଶୁରଙ୍କୁ କହିଲା—"ବାପା, ମୁଁ କିଛି ଦିନ ପାଇଁ ତାଙ୍କ ପାଖକୁ ଯିବାକୁ ଇଚ୍ଛାକରୁଛି । ଭାବୁଛି, ତାଙ୍କର କାରବାର ବି ଟିକିଏ ଦେଖି ଆସିବି ।"

ମହାଜନ ରାଜିହେଲା । ସଙ୍ଗରେ ନେବାଲାଗି ବୋହୂ ପାଇଁ ଚାକର ଓ ଜିନିଷପତ୍ର ଯୋଗାଡ଼ କରିଦେଲା ।

ବୋହୂ ଘରୁ ବାହାରିଲା । ଗୋଟିଏ ଜାଗାରେ ପୁରୁଷ ବେଶ ହେଲା । ଅଣ୍ଟାରେ ତରବାରି ଝୁଲେଇଲା । ଘୋଡ଼ା ଉପରେ ବସି ଚାକରମାନଙ୍କ ସହ ଚାଲିଲା । ପଚାରି ପଚାରି ଯାଇ ତାର ସ୍ୱାମୀଙ୍କ ରହିବା ଜାଗାରେ ଖୁବ୍ ଶୀଘ୍ର ପହଞ୍ଚିଗଲା ।

ଯେଉଁ ତେଲି ମହାଜନଙ୍କ ଘରେ ସ୍ୱାମୀ ଚାକିରି କରିଥିଲା ବୋହୂ ତାଙ୍କ ପାଖକୁ ଯାଇ କହିଲା—"ତୁମର ଏହି ଚାକରଟିକୁ ମୋତେ ଦେଇ ଦିଅ । ଏହା ବଦଳରେ ତୁମେ ଯେତେ ଟଙ୍କା ଚାହିଁବ ମୁଁ ଦେବ ।" ତେଲିଟା ଭାରି ଲୋଭୀ । ବେଶି ଟଙ୍କା ପାଇବାରୁ ସେ ଚାକରଟିକୁ ଦେଇଦେଲା ।

ପୁରୁଷ ବେଶ ହୋଇଥିବା ନିଜ ସ୍ତ୍ରୀକୁ ମହାଜନ ପୁଅ ଚିହ୍ନି ପାରିଲାନାହିଁ । ବୋହୂ ସ୍ୱାମୀଙ୍କୁ ଚାକର ଭାବରେ ନିଜ ଘରକୁ ନେଇ ଫେରିଲା । ତା ସାଥିରେ ଥିବା ଚାକରମାନେ ନୂଆ । ସେମାନେ ପୂର୍ବରୁ ମାଲିକଙ୍କ ପୁଅକୁ ଦେଖି ନ ଥିଲେ । ତେଣୁ ସେମାନେ ମଧ୍ୟ ମାଲିକଙ୍କ ପୁଅକୁ ଚିହ୍ନିପାରିଲେନାହିଁ ।

କେତେବାଟ ଗଲାପରେ ସେମାନେ ଗୋଟିଏ ଚଟିଘରେ ରହିଲେ ।

ବୋହୂ ସେଦିନ ବହୁତ ମିଠାଇ ଓ ନମିକ ତିଆରି କଲା । ଗୃହକରମାନଙ୍କୁ ଡ଼ାକି କହିଲା- "ଆଜି ତୁମେମାନେ ଯିଏ ଯେତେ ପାରି ମିଠାଇ ଖାଇପାରିବ; ମାତ୍ର ପାଣି ପିଇ ପାରିବ ନାହିଁ । ଯିଏ ପାଣି ପିଇବାକୁ ମାଗିବ, ତାକୁ ଦଣ୍ଡ ଦିଆଯିବ ।

ମହାଜନ ପୁଅ ବହୁଦିନୁ ମିଠାଇ ଖାଇବାକୁ ପାଇ ନଥାଏ । ସେ ଦିନ ସେ ପେଟ ପୂରାଇ ମିଠାଇ ଖାଇଲା । ବୋହୂକୁ ପହରା ଦେବା ଥିଲା ତା'ର କାମ । ବୋହୂ କାମ ଦାମ ସାରି ଆସି ଶୋଇଲା । ମହାଜନ ପୁଅ ଦେଖିଲା, ବୋହୂ ଆଖିବୁଜି ଖୁବ୍ ଘୁଙ୍ଗୁଡ଼ି ମାରୁଛି । ମିଠେଇ ଖାଇ ତାକୁ ଖୁବ୍ ଶୋଷ କରୁଥାଏ । ବୋହୂ ଶୋଇଛି ଭାବି ସେ ଉଠି ପାଖରେ ଥିବା ମାଠିଆରୁ ପାଣି ପିଇବାକୁ ଆରମ୍ଭ କଲା । ସାମାନ୍ୟ ଶବ୍ଦ ହେବାମାତ୍ରେ ବୋହୂ ଉଠି-ପଡ଼ିଲା । ସ୍ୱାମୀଙ୍କୁ ଧରିବା ଲାଗି ସେ ଏପରି ବ୍ୟବସ୍ଥା କରିଥାଏ । ରାଗିକରି କହିଲା— "ପାଣି କାହିଁକି ପିଉଥିଲ, ତୁମ ଏଥିପାଇଁ ଠିକଣା ଜବାବ ଦିଆଯିବ ।"

ବୋହୂ ଆଉ ଜଣେ ଗୃହକରକୁ ଡ଼ାକି କହିଲା—"ଶୀଘ୍ର ଯାଇ ଦୁଇଟି ଲୁହା ଖଣ୍ଡିକା ଗରମ କରି ନେଇ ଆ । ଗୃହକରଟି ତାହା ଆଣିବାରୁ ବୋହୂ ମହାଜନ ପୁଅ ପିଠିରେ ସେଥିରେ ଚିଆଁ ଦିଆଗଲା । ଚିଆଁ ଦେବାପରେ ସ୍ୱାମୀଙ୍କୁ ପାଣି ପିଇବାକୁ ଦେଲା । ତାକୁ ଶୁଆଇ ତା ପିଠିକୁ ଆଉଁସିଲା । ଏଣେ ଚିଆଁ ଖାଇ ସ୍ୱାମୀର ପିଠି ପୋଡ଼ୁଥାଏ, ମାତ୍ର କିଛି ସମୟପରେ ତାକୁ ନିଦ ହୋଇଗଲା ।

ପ୍ରୁରୁଷ ବେଶ ହୋଇଥିବାରୁ ମହାଜନ ପୁଅ ସେ ପର୍ଯ୍ୟନ୍ତ ନିଜ ସ୍ତ୍ରୀକୁ ଚିହ୍ନିପାରି ନଥାଏ । ସେଠା ଘୁଡ଼ି ସେମାନେ ପୁଣି ବାହାରିଲେ । ବାଟରେ ବୋହୂ ଗୋଟିଏ ହରିଣ ମାରି ତାର ଗୋଟିଏ ଗୋଡ଼ ଓ ଗୋଟିଏ ଆଖି ରଖିଲା ।

କିଛି ବାଟ ଗଲାପରେ ସେଇ କଣା ସଙ୍ଗେ ତା'ର ଦେଖା ହେଲା । ଠକଟି ପୂର୍ବପରି ବୋହୂକୁ ତାର ବନ୍ଧା ଦେଇଥିବା ଆଖିଟି ମାଗିଲା । ବୋହୂ କହିଲା, "ମୋ ପାଖରେ ଜଣେ ଗୋଟିଏ ଆଖି ବନ୍ଧା ରଖିଅଛି; ମାତ୍ର ସେଇଟି ଯଦି

ତୁମର, ତେବେ ତୁମର ଆଖି ଖୋଲି ବାହାରକର । ପରୀକ୍ଷାକରି ଦେଖିବା ଯଦି ସେଇଟା ତୁମର ଆଖି ସଙ୍ଗେ ମିଶି ଯାଉଥିବ, ତେବେ ତୁମ ଆଖିରେ ଲଗାଇ ଦେବ ।"ଠକ ବୁଝି ପାରିଲା,ଏଇ ଲୋକକୁ ଠକିବା ସମ୍ଭବ ନୁହେଁ । ଗୋଟିଏ ଆଖିତ ପୂର୍ବରୁ ଯାଇଛି, ଏବେ ଅନ୍ୟଟି ଦେବାକୁ ପଡ଼ିବ । ସେ "ହଜୁର ! ମୋର ଆଖି ଦରକାର ନାହିଁ । ସେ ଏହା କହି ସେଠାରୁ ଚାଲି-ଗଲା । ପୁଣି କେତେ ବାଟ ଗଲାପରେ ଗୋଟାଏ ଠକଟି ସଙ୍ଗେ ଦେଖାହେଲା । ବୋହୂ ତାକୁ ଉତ୍ତରଦେଲା—ତୁମକୁ ଗୋଟିଏ ଗୋଡ ଦେବାକୁ ହେଲେ ତୁମର ଅନ୍ୟ ଗୋଡ଼ଟି କାଟି ଓଜନ କରିବାକୁ ହେବ ।" ଠକ ଜାଣିଲା ଇଏ ମୋ'ଠାରୁ ବଳି ଠକ । ଏହା ହାବୁଡ଼ରେ ପଡ଼ିଲେ ଅନ୍ୟ ଗୋଡ଼ଟି ମଧ୍ୟ ଯିବ । ଆଉ କିଛି ନ ରହି ସେ ମଧ୍ୟ ସେଠାରୁ ପଳାଇଲା ।

ସେମାନେ କିଛିବାଟ ଗଲାପରେ ରାତି ହୋଇଗଲା । ଯୋଗକୁ ସେଇ ଦୁଷ୍ଟ ସ୍ତ୍ରୀ ଲୋକ ଘରେ ସେମାନେ ଆଶ୍ରୟ ନେଲେ । ସ୍ତ୍ରୀ ଲୋକଟି ସମସ୍ତଙ୍କୁ ଚିହ୍ନିଥିବାରୁ, ଏମାନଙ୍କୁ ଠକିବାକୁ ସେହିପରି ଯୋଗାଡ଼ କଲା ।

ରାତିରେ ଚୁପ୍‌ଚାପ୍ ଆସି ବୋହୂର ଗଣ୍ଠିଲିରେ ରୂପା କଂସାଟି ରଖି-ଦେଲା; ମାତ୍ର ବୋହୂ ସେତେବେଳେ ଶୋଇ ନ ଥାଏ । କେବଳ ଶୋଇବାର ଛଳନା କରି ତାଲପାରି ଆଖିବୁଜି ପଡ଼ିଥାଏ । ସେ ଏଇ ଲୋକଟିର କୌଶଳ ବୁଝିପାରିଲା । ସ୍ତ୍ରୀ ଲୋକଟି ଯାଇ ତା ଘରେ ଶୋଇଲା । ବୋହୂ ଉଠି ସେହି କଂସାଟିକୁ ନେଇ ସ୍ତ୍ରୀ ଲୋକର ଘର ଭିତରେ ରଖିଦେଲା ।

ସକାଳେ ସ୍ତ୍ରୀ ଲୋକଟି ତା'ର କଂସା ଚୋରିଯାଇଛି ବୋଲି ଚିତ୍କାର କରିବାରୁ ସବୁ ଜିନିଷପତ୍ର ଖୋଜାହେଲା । କଂସାଟି ବୋହୂର ଗଣ୍ଠିଲିରୁ ନ ମିଳି ସ୍ତ୍ରୀ ଲୋକଟି ଘରୁ ବାହାରିଲା । ସର୍ତ୍ତ ଅନୁସାରେ ବୋହୂ ସେଇ ସ୍ତ୍ରୀ ଲୋକର ସବୁ ଜିନିଷପତ୍ର ନେଇ ସେଠାରୁ ବାହାରିଲା । ଗାଁ ପାଖ ହୋଇ-ଯିବାରୁ ବୋହୂ ଚାକରମାନଙ୍କୁ ପଛେ ପଛେ ଆସିବାକୁ କହି ଏକୁଟିଆ ଗାଁକୁ ବାହାରିଲା । ଗାଁରେ ପହଞ୍ଚିବା ପୂର୍ବରୁ ସେ ପୁରୁଷ ବେଶ ବଦଳାଇ ଆପଣା ବେଶରେ ଘରକୁ ଗଲା । ମହାଜନ କହିଲା-"ବୋହୂ ! ମୋ ପୁଅ କାହିଁ ?"

ବୋହୂ ଉତ୍ତର ଦେଲା—"ସେ ଆସି ଖୁବ୍ ଶୀଘ୍ର ପହଞ୍ଚିବେ ।"

ପୁଅ ଆସି ଘରେ ପହଞ୍ଚିଲା । ପୁଅକୁ ଭିକାରି ଭାବରେ ଦେଖି ବାପ କହିଲା—"ହାଇରେ ପୁଅ ! ତୁ ଶେଷରେ ଏଭଳିଆ ହେଲୁ !" କ'ଣ ବା କରିବ ? ମନ କଥା ମନରେ ମାରି ରହିଲା ।

ପୁଅ ଗାଧୋଇ ନୂଆ ଲୁଗାପଟା ପିନ୍ଧିଲା । ନିଜ ସ୍ତ୍ରୀ ପାଖକୁ ଯାଇ କହିଲା—"ମୁଁ ଏବେ ବିଦେଶରୁ ଟଙ୍କା ପଇସା ରୋଜଗାର କରି ଆସିଛି । ତେବେ ଆସ, ମୁଁ ତୁମକୁ ପାଞ୍ଚ ଯୋତା ମାରିବ ।"

ସ୍ତ୍ରୀ ଏହା ଶୁଣି ହସିଦେଲା । ସ୍ତ୍ରୀର ହସ ଦେଖି ପୁଅ ଆହୁରି ରାଗିଗଲା । ସ୍ତ୍ରୀ କହିଲା-"କହିଲ ଦେଖି, ତୁମ ପିଠିରେ ଖଡ଼ିକା ଦାଗ କିଏ ଲଗାଇଛି ?" ବାଟରେ କାହାକୁ ଛାଡ଼ି ତୁମେ ଏଠାକୁ ଆସିଛ ? ଯାହା ଘରୁ ନେଇଥିଲ, ତାହାକୁ ସବୁ ତ ହରେଇଲ । ଏବେ ଫୁଟାଣି ଦେଖାଉଛ କାହିଁକି ?

ପୁଅ ବୁଝିପାରିଲା, ବୋହୂକୁ ଯୋତା ମାରିବା, ଧମକଦେବା ବୃଥା । ଲାଜର ହୋଇ ସ୍ତ୍ରୀକୁ କ୍ଷମା ମାଗିଲା ।

ସ୍ତ୍ରୀ କହିଲା—"ଅନ୍ୟର ଅର୍ଜିତ ଧନରେ ବାହାଦୁରୀ ଦେଖାଇବା ଛାଡ଼ ନିଜ ବୁଦ୍ଧିରେ କାମ କର । ତା'ହେଲେ ଆମେ ଭଲରେ ଚଳିବା ।"

( ମାଳବ )



# ଯେସାକୁ ତେସା

ଜଣେ ରାଜାଥିଲେ । ସେ ଖୁବ୍ ଖିଆଲି । ମାଘମାସ ହୋଇଥାଏ । ଲୋକେ ଶୀତ ଯୋଗୁ କଷ୍ଟ ଭୋଗୁଥାନ୍ତି । ଏଇ ସମୟରେ ରାଜାଙ୍କ ମନରେ ଗୋଟିଏ ଖିଆଲ ହେଲା । ସଙ୍ଗେ ସଙ୍ଗେ ସେ ଘୋଷଣା କଲେ—"ଯିଏ ଏଇ ଶୀତ ଦିନରେ ପୋଖରୀରେ ବେକଯାଏ ବୁଡ଼ି ରହି ରାତିଟିଏ କଟାଇଦେବ, ତାକୁ ରାଜ୍ୟରୁ ଅଧା ଦିଆଯିବ ।" ସମସ୍ତେ ରାଜାଙ୍କ ଘୋଷଣା ଶୁଣିଲେ; ମାତ୍ର ଏପରି ଦୁଃସାଧ୍ୟ କାମ କରିବାକୁ କାହାର ସାହାସ ହେଲାନାହିଁ । ଶେଷରେ

ଜଣେ ଗରିବ ବ୍ରାହ୍ମଣ ଏହା କରିବାକୁ ବାହାରିଲା । ଲୋକଟି ବାସ୍ତବିକ ବହୁ କଷ୍ଟରେ ଚଳୁଥିଲା । ବହୁତ ହଇରଣ ହୋଇ ଶେଷରେ ଡଉଡ଼ିଦେଇ ମରିବାକୁ ଠିକ୍ କରିଥିଲା । ପରେ ଭାବିଲା, ଡଉଡ଼ି ଦେଇ ମରିବା ଅପେକ୍ଷା ଏଭଳି ଚେଷ୍ଟାକଲେ ମନ୍ଦ ହେବନାହିଁ । ପ୍ରବଳ ଶୀତରେ ରାତସାରା ସେ ଯାଇ ରାଜାଙ୍କ ପୋଖରୀରେ ବେକଯାଏ ବୁଡି ରହିଲା । ଏଥିରେ ପ୍ରାଣ ଯିବାକଥା । ଯୋଗକୁ ସେ କୌଣସିମତେ ବର୍ତ୍ତିଗଲା । ସକାଳେ ସେ ଯାଇ ରାଜାଙ୍କ ପାଖରେ ପହଞ୍ଚି ତାଙ୍କୁ ନମସ୍କାର ଜଣାଇଲା—"ମହିମା, ମୁଁ କାଲି ରାତିଟା ପାଣି ରେ ପଶି କଟାଇ ଦେଇଛି ।"

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ତୁମେ ରାତିରେ କ'ଣ ସବୁ ଦେଖିଲ ?"

ଗରିବ ବ୍ରାହ୍ମଣଟି କହିଲା—"କ'ଣ ବା ଆଉ ଦେଖିବି ? ମାତ୍ର ତ ଘୋରଅାନ୍ଧାର ଅନ୍ଧାର ଦେଖାଯାଉଥିଲା । ଅଳ୍ପ ଦୂରରେ ଥିବା ମନ୍ଦିରରେ ଦୀପଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା, କେବଳ ତା'ର ଆଲୁଅ ମୋର ଆଖିରେ ପଡ଼ୁଥିଲା ।"

ରାଜା କହିଲେ—"ମୁଁ ପରା ଜାଣେ, ସେଇ ଦୀପ ଆଲୁଅ ଯୋଗୁଁ ତୁମକୁ ଗରମ ବୋଧହେଲା । ସେଥିପାଇଁ ଶୀତରାତିର ଥଣ୍ଡା ପବନ ତୁମର କିଛି କ୍ଷତି କରିପାରିଲା ନାହିଁ । ଯଦି ସେହି ଦୀପଟି ନଥାନ୍ତା, ତେବେ କଦାପି ଏହି ଦୁଃସାଧ୍ୟ କାମ କରି ପାରିନଥାନ୍ତ । ଏଣୁ ତୁମକୁ ପୁରସ୍କାର ଦେବାର କୌଣସି କାରଣ ନାହିଁ ।"

ବ୍ରାହ୍ମଣଟି ରାଜାଙ୍କର ଏପରି ଅଦ୍ଭୁତ ବିଚାର ଶୁଣି ଖୁବ୍ ନିରାଶ ହୋଇ-ଗଲା । ସେ ଭାବିଥିଲା, ରାଜା ଠିକ୍ ନ୍ୟାୟ୍ୟ କଥା କହିବେ; ମାତ୍ର ସେ ତ ଏପରି ବିଚିତ୍ର କଥା କହୁଛନ୍ତି । ସେ କାହା ପାଖେ ବା ଗୁହାରି କରିବ ? ରାଜାଙ୍କ ଭୟରେ କେହି ତା ସପକ୍ଷରେ କିଛି କହିଲେ ନାହିଁ । ଲୋକଟି ମନ ଦୁଃଖରେ ଅନ୍ୟ ଦେଶର ରାଜାଙ୍କ ପାଖକୁ ଗଲା । ତାଙ୍କୁ ସବୁକଥା କହିଲା; ମାତ୍ର କେହି ତା'କଥା ଶୁଣିଲେ ନାହିଁ । ଏଣୁ ସେ ନିରାଶ ହୋଇ ରହିଲା ।

ସେହିପରି ଗୋଟିଏ ଦେଶରେ ରାଜକୁମାରୀ ବ୍ରାହ୍ମଣର କଥା ଶୁଣି, ଏହାର ଉଚିତ୍ ପ୍ରତିକାର କରିଦେବେ ବୋଲି କହିଲେ । ବିଚରା ବ୍ରାହ୍ମଣଟି ଟିକିଏ ଭରସା ପାଇଲା ।

ରାଜକୁମାରୀ ଏଥିପାଇଁ ଏକ କୌଶଳ କଲେ । ସେ ସେଇ ଖିଆଲି ରାଜାଙ୍କୁ ଗୋଟିଏ ଭୋଜିରେ ଯୋଗଦେବା ଲାଗି ଦିନେ ନିମନ୍ତ୍ରଣ କଲେ । ରାଜକୁମାରୀଙ୍କ ଆଦେଶରେ ମନୋରଞ୍ଜନ ଲାଗି ଖୁବ୍ ସୁନ୍ଦର ବ୍ୟବସ୍ଥା କରାଯାଇ ଥାଏ । ତାଙ୍କୁ ନାନା ପ୍ରକାର ଖାଦ୍ୟ ପରଷାଗଲା; ମାତ୍ର ପିଇବା ଲାଗି ପାଣି ତାଙ୍କଠାରୁ କିଛି ଦୂରରେ ରଖାହୋଇଥାଏ । ରାଜା ଖାଇସାରି ପାଣି ମାଗିଲେ । ରାଜକୁମାରୀ ପାଖରେ ଠିଆହୋଇଥାନ୍ତି । ସେ ଉତ୍ତରଦେଲେ—"ପାଣି ତ ଆପଣଙ୍କଠାରୁ ମାତ୍ର ଅଳ୍ପ ଦୂରରେ ରହିଛି । ଆପଣ କ'ଣ ତାକୁ ଦେଖି ଶୋଷ ମାରିପାରୁନାହାନ୍ତି ?"

ରାଜା କହିଲେ—"ପାଣିକୁ ଦେଖିଲେ କ'ଣ ଶୋଷ ମରିଯାଏ ?"

ରାଜକୁମାରୀ ସଙ୍ଗେ ସଙ୍ଗେ କହିଲେ—"ଗରିବ ବ୍ରାହ୍ମଣଟିଏ ଯଦି ରାତି-ସାରା ପାଣିରେ ଠିଆ ହୋଇ ଦୂରରୁ ପାପର ଆଲୁଅକୁ ଦେଖି ଗରମ ଅନୁଭବ କରିପାରେ, ତେବେ ରାଜା କାହିଁକି ଦୂରରେ ରଖାହୋଇଥିବା ପାଣିକୁ ଦେଖି ଶୋଷ ମାରି ନ ପାରିବେ ?"

ରାଜା ଏହାର କୌଣସି ଉତ୍ତର ଦେଇପାରିଲେ ନାହିଁ । ଲାଜରେ ତାଙ୍କର ମୁଣ୍ଡ ତଳକୁ ହୋଇଗଲା । ସେ ନିଜର ଭୁଲ୍ ସ୍ୱୀକାର କଲେ । ଗରିବ ବ୍ରାହ୍ମଣକୁ ଡ଼କାଇ ତା'ର ଚଳିବାଲାଗି ଯଥେଷ୍ଟ ଧନ ସମ୍ପତ୍ତି ବ୍ୟବସ୍ଥା କରିଦେଲେ ।

( ଛତିଶଗଢ଼ )



# ଥାଳଟି ଚୋରିଗଲା

ଗୋଟିଏ ଗାଆଁରେ ଜଣେ ବଣିଆ ଥିଲା, ସେ ଭାରି ଲୋଭୀ, କାହାକୁ ଗୋଟିଏ ପଇସା ବି ସେ ଦିଏନାହିଁ। ତା'ର ଗୋଟିଏ ରୂପାଥାଳ ଥାଏ। କାଳେ ସେଇଟିକୁ କିଏ ନେଇଯିବ। ଏଥିପାଇଁ ତାକୁ ସେ ସବୁବେଳେ ନିଜ ପାଖେ ରଖିଥାଏ। ଦିନବେଳେ ଥାଳଟିକୁ ସାମନାରେ ରଖି ଦୋକାନରେ କାମ କରେ, ରାତିହେଲେ ଥାଳଟିକୁ ଘରକୁ ଆଣେ। ସେଇ ଥାଳରେ ପାଣି ପୂରାଇ ତାକୁ ଶିକା ଉପରେ ରଖିଦିଏ। ସେଇ ଶିକାତଳେ ଖଟ ପକାଇ ଶୁଏ। କେହି ଯଦି ଥାଳକୁ ଚୋରାଇ ନେବାଲାଗି ଉଠାଇବ, ତେବେ ସେଥିରୁ ପାଣି ଢଳି ଯାଇ ତା ଉପରେ ପଡ଼ିବ। ଫଳରେ ତା'ର ନିଦ ଭାଙ୍ଗିଯିବ। ସେଇଥି ପାଇଁ ସେ ଏହିପରି ଥାଳରେ ପାଣିରଖି ତା' ତଳେ ଶୁଏ। ଏହି ଥାଳଟିକୁ ସେ ଖୁବ୍ ଜାବତାରେ ରଖିଥାଏ।

ବଣିଆ ରୂପାଥାଳରେ ନିଜେ ଖାଏନା। କାହାରିକୁ ମଧ୍ୟ ସେଥିରେ ଖାଇବାକୁ ନ ଦେବାକୁ ସ୍ତ୍ରୀକୁ ମନା କରିଥାଏ। ଦିନେ ବଣିଆ ଘରକୁ ତା ଜୁଆଇଁ ଆସିଥିଲା। ନିଜ ଜୁଆଇଁକୁ ବା ଶାଶୁ କିପରି ଖାଇବାକୁ ନ ଦେବ ? ଏଣୁ ମନା କରିବା ସତ୍ତ୍ୱେ ବଣିଆଣୀ ଜୁଆଇଁକୁ ସେଇ ରୂପାଥାଳରେ ଖାଦ୍ୟ ବାଢିଦେଲା। ଜୁଆଇଁ ଖାଉଖାଉ ଥାଳଟିକୁ ଏପଟ ସେପଟ ବୁଲେଇ ଦେଖିଲା। ଥାଳଟିକୁ ନେବାଲାଗି ତାର ଲୋଭ ହେଲା। ମାତ୍ର ଶ୍ୱଶୁରଙ୍କୁ ମାଗିଲେ ତ ସେ ଦେବେ ନାହିଁ। ଏଣୁ ଥାଳଟିକୁ କୌଶଳରେ ନେବାକୁ ସେ ସ୍ଥିର କଲା।

ବଣିଆ ଘର ଫେରିଲା। ଜୁଆଇଁର ଖାଇବା ପାଖେ ବସି ତାହାର ହାବ ଭାବ ସବୁ ଲକ୍ଷ୍ୟ କରୁଥାଏ। ଖିଆପିଆ ସରିଲା। ପୂର୍ବପରି ସେ ଥାଳରେ ପାଣି ପୂରାଇ ତାକୁ ଶିକା ଉପରେ ଥୋଇଲା। ତାହା ତଳେ ଖଟ ପକାଇ ଶୋଇଲା। ଆପଣା ଖଟ ପାଖେ ଆଉ ଗୋଟାଏ ଖଟ ଉପରେ ଜୁଆଇଁର ଶୋଇବାର ବ୍ୟବସ୍ଥା କଲା। ଦୁହେଁଯାକ ଶୋଇଲେ। ଠିକ୍ ଶିକା ତଳେ ବଣିଆ ଶୋଇ-

ଥାଏ । ଅଳ୍ପ ସମୟ ମଧ୍ୟରେ ବଣିଆକୁ ନିଦ ହୋଇଗଲା । ଜୁଆଇଁ ଭାବିଲା — ପଦ୍ମ ଥାଳଟିକୁ ଧରି ଉଠେଇବ, ତେବେ ଶଶୁରଙ୍କ ଉପରେ ପାଣି ଢ଼ାଳି ହୋଇଯିବ । ଆଉ ସେ ସଙ୍ଗେ ସଙ୍ଗେ ଉଠି ବସିବେ । ଏଣୁ ସେ ଗୋଟାଏ ଉପାୟ ପାଞ୍ଚିଲା ।

ବଣିଆ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଥାଏ । ଜୁଆଇଁ ଖଟରୁ ଓହ୍ଲାଇଲା । ଚୁପ୍‌ଚାପ୍ ରୋଷେଇ ଘରକୁ ଗଲା, ଗୋଟାଏ ପାତ୍ରରେ ଗୁଡ଼ାଏ ପାଉଁଶ ନେଇ ଆସିଲା । ପାଉଁଶକୁ ଧୀରେ ଧୀରେ ଥାଳରେ ଢ଼ାଳିଲା । ରୂପାଥାଳରେ ପାଉଁଶ ପଡ଼ିବାରୁ ପାଉଁଶ ପାଣିକକ ଶୋଷିନେଲା । ତହୁଁ ଜୁଆଇଁ ରୂପାଥାଳଟାକୁ ଶିକାଉପରୁ ଆସ୍ତେ କରି ଉଠାଇ ଆଣିଲା । ଶଶୁରଙ୍କ ଠାରୁ ବିଦାୟ ନେବାକୁ ଆଉ କାହିଁକି ବା ଅପେକ୍ଷା କରିବ ? ଶାଶୁଙ୍କୁ ଦଣ୍ଡବତ ହୋଇ ରାତି ଥାଉଁ ଥାଉଁ ସେ ନିଜ ଗାଁକୁ ବାହାରିଗଲା ।

( ବିନ୍ଧ୍ୟଭୂମି )

●

## ସାଧୁ ଓ ବଣିଆ

ଅମର କଣ୍ଟକ ପର୍ବତର ଗୋଟିଏ ଗୁମ୍ଫାରେ ଜଣେ ସାଧୁ ରହୁଥିଲେ । ସେ ଥିଲେ ବଡ଼ ଲୋଭୀ । ତାଙ୍କ ପାଖରେ ପଚିଶଟି ମୋହର ଥାଏ । ସେଗୁଡ଼ିକୁ ସେ ତାଙ୍କ ଜଟାରେ ରଖିଥାନ୍ତି । ସୂର୍ଯ୍ୟ ଦେବତାଙ୍କୁ ସେ ପୂଜା କରୁଥିଲେ । ଗୋଟିଏ ଗୋଡ଼ରେ ଛିଡ଼ାହୋଇ ସେ ସୂର୍ଯ୍ୟ ଦେବତାଙ୍କୁ ପ୍ରାର୍ଥନା କରନ୍ତି । ଏକରୁ ପଚିଶ ପର୍ଯ୍ୟନ୍ତ ମନେ ମନେ ଗଣନ୍ତି ।

ଦିନେ ସାଧୁ ଗାଧୋଇ ସାରି ମୁହଁରେ ଗଣା ଆରମ୍ଭ କରିଥାନ୍ତି । ଏହି ସମୟରେ ଜଣେ ବଣିଆ ସେଠାରେ ପହଞ୍ଚିଲା । ସାଧୁ ମୁହଁରେ ପାଉଁଶ

ବୋଲଲେ ଓ ନଜର ଜଟାକୁ ସଜାଡ଼ ଠିକ୍ କରିନେଲେ । ବଣିଆଟି ଖୁବ୍ ଖୁସିହେଲା । ସାଧୁଙ୍କ ଗତିବିଧିରୁ ସେ ଠଉରେଇ ନେଲା ଯେ ସାଧୁଙ୍କ ଜଟାରେ କିଛି ମାଲ ଅଛି । ଲୁଚିକରି ଦେଖିଲା, ସାଧୁ ଜଟାରେ ଗଣିକରି ପଚିଶଟି ମୋହର ରଖି ତାକୁ ସଜାଡ଼ି କରି ବାନ୍ଧିଲେ । ବଣିଆ ସାଧୁଙ୍କର ମୋହରଗୁଡ଼ିକୁ ନେବାଲାଗି ଏକ ଉପାୟ ପାଞ୍ଚିଲା । ସାଧୁଙ୍କ ସଙ୍ଗେ ଏଣୁ ତେଣୁ କଥାବାର୍ତ୍ତା କରିସାରିଲା ପରେ ସେ ତାଙ୍କ ପାଦ ଛୁଇଁ କହିଲା— "ମହାରାଜ ! ମୋ ଘରକୁ ବିଜେ କରନ୍ତୁ । ଆପଣଙ୍କ ପାଦ ପଡ଼ିଲେ ମୋ ଘର ପବିତ୍ର ହେବ । ଏହି ଭୟଙ୍କର ଜଙ୍ଗଲରେ କାହିଁକି ରହୁଛନ୍ତି ? ଏହି ସ୍ଥାନ କ'ଣ ଆପଣଙ୍କୁ ଆନନ୍ଦ ଦେଉଛି ? ମୋ ଘରକୁ ଯାଇ ମୋ ଭଳି ପାପୀକୁ କିଛି ଉପଦେଶ ଦେଇ ଧନ୍ୟ କରନ୍ତୁ ।"

ସାଧୁ ଆଖି ବନ୍ଦକରି ଏକରୁ ପଚିଶ ପର୍ଯ୍ୟନ୍ତ ଗଣୁଥାନ୍ତି । ବଣିଆର କଥା ସେ ଶୁଣିଲେ; ମାତ୍ର କିଛି ଉତ୍ତର ଦେଲେନାହିଁ । ବଣିଆ ସାଧୁଙ୍କ ଜଟା ର ଥିବା ମାଲକୁ ଛକି ଥାଏ । ମନେ ମନେ ବିଚାର କରୁଥାଏ, ମୁଁ ଯଦି ବାବାଙ୍କର ଜଟାରେ ଥିବା ମାଲକୁ ନେଇ ନପାରେ ତେବେ ମୋର ବଣିଆ ହେବା ବୃଥା । ସେଇ ଦିନଠୁ ସେ ଗୁମ୍ଫାକୁ ଆସିବାକୁ ଆରମ୍ଭ କରିଦେଲା । ସବୁଦିନ ସାଧୁଙ୍କ ପାଇଁ ଅଧସେର ମିଠାଇ ଆଣେ । ସେତକ ତାଙ୍କ ପାଖରେ ରଖି ତାଙ୍କ ସଙ୍ଗେ ଏଣୁ ତେଣୁ କଥାବାର୍ତ୍ତା କରି ଘରକୁ ଫେରିଯାଏ ।

ଏମିତି ମାସେ ବିତିଗଲା । ଦିନେ ବଣିଆ ସାଧୁଙ୍କର ପାଦ ଧରି କହିଲା, "ମହାରାଜ ! ମୋ ସ୍ତ୍ରୀ ଖୁବ୍ ବେମାର, ସେ ଆପଣଙ୍କୁ ଥରେ ଦର୍ଶନ କରିବ ବୋଲି ଛଟପଟ ହେଉଛି । ତା'ର ଏକପ୍ରକାର ମଲା ଗଲା ଅବସ୍ଥା । ସେ ମଧ୍ୟ ଭାବୁଛି ଆପଣଙ୍କୁ କିଛି ଦାନ କରିବ । ଏଇ ଦାନପାଇଁ ଆପଣଙ୍କଠାରୁ ଆଉ ଯୋଗ୍ୟ କିଏ ବା ଅଛି ? ମୋର ଘର ଟିକିଏ ଦୂରରେ । ବଳଦ ଗାଡ଼ିଟିଏ ଆଣିଛି । ଆଜ୍ଞା ହେଲେ ମୁଁ ଆପଣଙ୍କୁ ସେଇ ଗାଡ଼ିରେ ଆମ ଘରକୁ ନେଇଯିବି ।"

ସାଧୁ ଏହା ଶୁଣି ଆଖି ଫିଟାଇ କହିଲେ—"ଆରେ ବେଟା ! ଲୋକଙ୍କ ଉପକାର କରିବା ତ ଆମର ଧର୍ମ; ମାତ୍ର ଦେଖୁଛୁ ତ ମୁଁ ଅତି ଦୁର୍ବଳ ।

ମିବା ଆସିବା କରିବାକୁ ମୋର ସେପରି ଶକ୍ତି ନାହିଁ । ହଉ, ଯଦି ଟାଙ୍କି ଆଣିଛୁ ମିବା; ଶୀଘ୍ର ତା'ର ବ୍ୟବସ୍ଥା କର । କାହାର ପ୍ରାଣମିବା ପୂର୍ବରୁ ତା'ର ଆତ୍ମାକୁ ଉଦ୍ଧାର କରିବା ଉଚିତ୍ । ତାକୁ ଭଗବାନଙ୍କ ନାମ ଶୁଣାଇବାକୁ ହେବ । ତା'ହେଲେ ସିନା ତା'ର ମୁକ୍ତି ହେବ ।

ଗାଡ଼ି ଯୋଗୃହେଲା । ସାଧୁ ଗାଡ଼ିରେ ବସି ବଣିଆ ଘରକୁ ଚାଲିଲେ । ବଣିଆ ଆଗରୁ ସ୍ତ୍ରୀକୁ ଶିଖାଇ ଦେଇଥାଏ । ତା'ର ସ୍ତ୍ରୀ କମଳ ଘୋଡ଼ାଇ ହୋଇ ଗୋଟିଏ ଖଟ ଉପରେ ଶୋଇଥାଏ । ସ୍ୱାମୀଙ୍କ ସହିତ ସାଧୁବାବାଙ୍କୁ ଦେଖି ସେ ଦୀର୍ଘଶ୍ୱାସ ପକାଇ କାନ୍ଦିବାକୁ ଲାଗିଲା । ସାଧୁ ତାକୁ ରାମନାମ ଶୁଣାଇଲେ ଓ ଦାନ ଦେବାକୁ ଉପଦେଶ ଦେଲେ ।

ସାଧୁଙ୍କୁ ଭୋଜନ କରିବାକୁ ଦିଆଗଲା । ଖାଇସାରି ପାନ ଗୁଆ ପାଟିରେ ପକାଇ ସେ ମିବାକୁ ବାହାରିଲେ । ଏଣେ ବଣିଆ ଘରେ ସାଧୁବାବାଙ୍କୁ ଦେଖିବା ଲାଗି ପ୍ରବଳ ଭିଡ଼ ଜମିଯାଇଥାଏ । ବଣିଆ ଧାବୁରେଇ ଯାଇ ତଳ-ଉପର, ଏପଟ ସେପଟ ହେଉଥାଏ । କ'ଣ ସେପରି ସେ ଖୋଜୁଥାଏ ।

ଭିଡ଼ ଭିତରୁ ଜଣେ ପଚାରିଲା— "କଓ ଭାଇ ! ତୁମର କ'ଣ ସୁନ୍ଦରୀ ଗୁଡ଼ି ଯାଇଛି କି ? ନା, କ'ଣ ହଜିଯାଇଛି ? କାହିଁକି ଏତେ ଅସ୍ଥିର ହୋଇ ଏପଟ ସେପଟ ହେଉଛ ?

ବଣିଆ କାନ୍ଦି କାନ୍ଦି କହିଲା— "କ'ଣ କହିବି ? ସାଧୁବାବାଙ୍କୁ ଦକ୍ଷିଣା ଦେବାକୁ ହେବ । ମୁଁ ଅବକା ପଚଶଟି ମୋହର ଗଣିକରି ଥାକ ଉପରେ ରଖିଥିଲି । କିଏ ଏବେ ନେଇଯାଇଛି । ମୁଁ କ'ଣ କରିବି ?"

ସାଧୁ ବଣିଆ କଥାଶୁଣି ମନେ ମନେ ଭାବିଲେ, ଏ ତ ଭଲକଥା କହୁଛି । ଚବଶ କହୁନ କି କୋଡ଼ିଏ କହୁନ, ଠିକ୍ ମୋ ପାଖେ ଯେତିକ ଅଛି ସେତିକ କହୁଛି । ଟିକିଏ ଭାବି ସେ କହିଲେ— "ଆରେ ବାବା, ମୋତେ ଯଦି ସନ୍ଦେହ ହେଉଛି ତେବେ ମୋ ଲୁଗାପଟା ତଲସିକରି ଦେଖ ।" ଏହା କହି ସେ ତାଙ୍କ ଲମ୍ବା ଜାମାକୁ କାଟି ଫୋପାଡ଼ି ଦେଲେ । ତା'ପରେ ମୁଣ୍ଡକୁ ହଲାଇ ଚକ୍କର

କହିଲେ— "ମୋତେ ରଗାଅନା । ମୁଁ ସମସ୍ତଙ୍କୁ ଜାଳିପୋଡ଼ି ପାଉଁଶ କରି-ଦେବି ।" ବାବାଜୀଙ୍କ ହଠାତ୍ ଏପରି ରାଗିବାର କାରଣ ବୁଝିପାରିଲେ ନାହିଁ । ବଣିଆ ସାଧୁ ମହାରାଜାଙ୍କ ସମ୍ମୁଖରେ ହାତଯୋଡ଼ି ମିନତି-କରି କହିଲା— "ମହାରାଜ ! ଖରାପ ଭାବନ୍ତୁ ନାହିଁ । ଆପଣଙ୍କ ଜଟାଖୋଲି ଦେଖାଇ ଦିଅନ୍ତୁ । ତା'ହେଲେ ସବୁଠୁଁ ଭଲ ହେବ । ସମସ୍ତଙ୍କ ସନ୍ଦେହ ତୁଟିଯିବ ।"

ସାଧୁ ଜଟା ଖୋଲିବା କ୍ଷଣି ପଚାଶଟି ମୋହର ଠନ୍ ଠନ୍ ହୋଇ ତଳେ ପଡ଼ିଗଲା । ଲୋକମାନେ ପାଟିକରି କହିଲେ— "ଚୋରକୁ ଧର !" ସାଧୁ ପ୍ରାଣ ବିକଳରେ ଧଇଁସଇଁ ହୋଇ ପଳାଇଲେ । ବଣିଆ ଆନନ୍ଦରେ ପଚାଶଟିଯାକ ମୋହର ଉଠାଇ ସିନ୍ଦୁକରେ ରଖିଲା ।

( ମଧ୍ୟପ୍ରଦେଶ)



# ତିନି ଚୋର ଓ ରାଜା

ଥରେ ତିନିଜଣ ଚୋର ରାତିରେ ଚୋରି କରିବାକୁ ବାହାରିଲେ । ଯୋଗକୁ ସେଦିନ ରାତିରେ ସେ ଦେଶର ରାଜା ଆପଣା ବେଶ ବଦଳାଇ ଏକୁଟିଆ ନଗରରେ ବୁଲୁଥାନ୍ତି । ଚୋରମାନଙ୍କୁ ଦେଖି ରାଜାଙ୍କର ସନ୍ଦେହ ହେଲା । ରାଜା ରାଜା ସେମାନଙ୍କ ପାଖକୁ ଯାଇ ପଚାରିଲେ— "ଭାଇ, ତୁମେମାନେ କିଏ ?"

ଚୋରମାନେ ଚୁପ୍ କରି ରାଜାଙ୍କୁ କହିଲେ, ଭାଇ ଚୋରି କରିବା ହେଉଛି ଆମର ବେଉସା । ଆଜି ରାତିରେ ଆମେ ସେଇଥିପାଇଁ ବାହାରିଛୁ । ତା'ପରେ

ରାଜାଙ୍କୁ ପଚାରିଲେ, ଆଚ୍ଛା ଭାଇ, ତୁ ଆମର ଭଳି ଚୋର କରିବାକୁ ବାହାରିଛୁ ତ ? ନା ପରୀକ୍ଷା କ'ଣ ? ରାଜା କହିଲେ, "ହଁ ମୁଁ ବି ତମର ଭଳି ଚୋର ।"

ରାଜା ପୁଣି ସେମାନଙ୍କୁ ପଚାରିଲେ— "ଆଚ୍ଛା ଭାଇ, ଚୋରି କରିବାଲାଗି ତୁମମାନଙ୍କର କି କି ବିଶେଷ ଦକ୍ଷତା ଅଛି ?"

ଜଣେ ଚୋର କହିଲା—"ମୁଁ ଗୁହାଁ ଦେଇ ତାଲା ସବୁ ଫିଟାଇ ପାରିବି ।"

ଆଉ ଜଣେ କହିଲା, "କେଉଁଠି ମାଲମତା ପୋତା ହୋଇ ରହିଛି, ତା ମୁଁ ମାଟି ଶୁଙ୍ଘି କହିଦେଇ ପାରିବି ।"

ତୃତୀୟ ଚୋରଟି କହିଲା, "ମୁଁ ଥରେ ଜଣକୁ ଦେଖିଥିଲେ ତାକୁ କେବେ ବି ପରେ ଚିହ୍ନିଦେବି ।"

ଏହାପରେ ରାଜାଙ୍କର ନିଜ କଥା କହିବା ପାଳି ପଡ଼ିଲା । ସେମାନେ ବି ରାଜାଙ୍କୁ ପଚାରିଲେ, "ହଇରେ, ଏବେ ତୁ କହ, ତତେ କଣ ଜଣା ଅଛି ।" ରାଜା କହିଲେ, "ମୁଁ ମୁଣ୍ଡ ହଲାଇ ଦେଲେ ଜଣକୁ ଫାଶୀରୁ ମୁକୁଳେଇ ଦେଇପାରେ । ପୁଣି ଇଚ୍ଛାକଲେ ମୁଣ୍ଡ ହଲେଇ ଦେଲେ ଜଣକୁ ଫାଶୀ ଦିଆଇ ଦେଇପାରେ । ତମେମାନେ ଯଦି ମୋତେ ଚୋରି ମାଲରୁ ଅଧେ ଦେବ, ତା'ହେଲେ ମୁଁ ତୁମ ସଙ୍ଗେ ଯିବି ।"

ଚୋରମାନେ ମନେ ମନେ ଭାବିଲେ; ଏଇ ଚୋରଟି ସାଥିରେ ରହିଲେ ବହୁତ ଲାଭ । ଆମର ସବୁବେଳେ ଫାଶୀର ଭୟ । ଏଇ ଲୋକଟି ସାଥିରେ ଥିଲେ ଆମେ ଫାଶୀରୁ ମୁକୁଳି ଯାଇ ପାରିବା । ତେଣୁ ସେମାନେ ରାଜାଙ୍କୁ ଚୋର ଭାବି ତାଙ୍କୁ ସାଥିରେ ନେଇ ଚୋରି କରିବାକୁ ଗଲେ ।

ରାଜା ନିଜ ଗନ୍ତାଘରୁ ଚୋରି କରିବାଲାଗି ଚୋରମାନଙ୍କୁ ବୁଝା ବୁଝି କରି ନେଇଗଲେ । ପ୍ରଥମ ଚୋରଟି ସବୁକୁ ସତ ନଜର ପକାଇବାରୁ ରାଜାଙ୍କ ଗନ୍ତାଘର ତାଲାଟି ଖୋଲିଗଲା । କେଉଁଠି ଧନରତ୍ନ ପୋତା ହୋଇଥିଲା, ତାହା ଦ୍ୱିତୀୟ ଚୋରଟି କହିଦେଲା । ଚୋରମାନେ ଚୋରି କରି ସାରି ଚାଲିଯିବାକୁ

ବାହାରିଲେ । ଏତିକିବେଳେ ରାଜା ଲୁଚିକରି ସେମାନଙ୍କ ମେଳରୁ ଖସିଯାଇ ସିପାହୀମାନଙ୍କୁ ଖବର ଦେଇଦେଲେ । ସଙ୍ଗେ ସଙ୍ଗେ ସିପାହୀମାନେ ଆସି ଚୋରମାନଙ୍କୁ ଧରି ବାନ୍ଧି ନେଲେ ।

ତା'ପରଦିନ ଦରବାରରେ ବିଚାର ହେଲା । ତିନି ଚୋରହାକ ରାଜାଙ୍କ ଆଗକୁ ଧରା ହୋଇ ଆସିଲେ । ରାଜା ତିନି ଚୋରଙ୍କୁ ଫାଶୀ ଦେବାକୁ ହୁକୁମ ଦେଲେ । ଚୋରମାନେ ମନେ ମନେ ଭାବୁଥାନ୍ତି, ଯଦି କାଲି ରାତିର ନୂଆ ଚୋର ସାଙ୍ଗଜଣକ ଏଠିକି ଆସନ୍ତା, ତା'ହେଲେ ଆମ୍ଭେମାନେ ବଞ୍ଚିଯାଆନ୍ତୁ ! ଦେଖିବା ମାତ୍ରେ ଲୋକଙ୍କୁ ଚିହ୍ନି ପାରୁଥିବା ସାଙ୍ଗକୁ ଅନ୍ୟ ଦୁଇ ଚୋର ପଚାରିଲେ, "ଭାଇ, ତୁ କହିଲୁ ଦେଖି, କାଲି ରାତିର ଆମ ଚୋର ସାଙ୍ଗଟି ଏଠି କେଉଁଠି ଅଛି କି ? ହେଁ ସେ ଚାରିଆଡ଼କୁ ଅନେଇ କହିଲା, "ଭାଇ, ମୁଁ ନିଶ୍ଚୟ କରି କହୁଛି, ଏଇ ରାଜା ହେଉଛନ୍ତି ସେଇ ଚୋର ।"

ତହୁଁ ଚୋରମାନେ ରାଜାଙ୍କୁ ଚାହିଁ କହିଲେ, "ମହାରାଜ ! ଆମେ ତିନି-ଜଣ ତ ଆମ ନିଜ ନିଜର କରାମତି ଦେଖାଇଲୁ । ଆପଣ କାଲି ଥିଲେ ଆମର ଚତୁର୍ଥ ସାଥୀ । ଏଥର ଆପଣ ନିଜର କରାମତି ଦେଖାନ୍ତୁ ।

ରାଜା ଏହାଶୁଣି ଖୁସି ହୋଇଗଲେ । ରାଜା ସଫାକରି ସାଙ୍ଗେ ସାଙ୍ଗେ ହୁକୁମ ଦେଲେ, "ଏ ତିନିଜଣଙ୍କୁ ଫାଶୀଦଣ୍ଡରୁ ମୁକୁଳେଇ ଦିଅ ।" ତା'ପରେ ଚୋରି ହୋଇଥିବା ସମ୍ପତ୍ତିରୁ ଅଧେ ଚୋରମାନଙ୍କୁ ଦେଇ ରାଜା କହିଲେ, "ମୁଁ ମୋର କଥା ରଖିଲି । ତୁମେମାନେ ଏଥର ଚୋରି କରିବା ଛାଡ଼ିଦିଅ । ଏଇ ଟଙ୍କାରେ ଭଲରେ ଚଳ ।"

ଚୋରମାନେ ସେଇଦିନୁ ଚୋରି କରିବା ଛାଡ଼ିଦେଲେ ।



# ସ୍ତ୍ରୀର ଚତୁରତା

କୃଷୀ ପରିବାରଟିଏ । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କ ଦିହେଁ କାମିକା । ପିଲାମାନଙ୍କୁ ନେଇ ଭଲରେ ଥାଆନ୍ତି । ଗୁଜୁରାଣ କରି ଚଳନ୍ତି । ସ୍ୱାମୀଠାରୁ ସ୍ତ୍ରୀ ଅଧିକ ହୁସିଆର । ପ୍ରତିଦିନ ସକାଳୁ କୁଆ କା କଲାବେଳକୁ ଚଷାପୁଅ ତା'ର ବଳଦ ଓ ହଳ ଲଙ୍ଗଳ ଧରି ବିଲକୁ ଯାଏ; ସ୍ତ୍ରୀ ଘର କାମ କରେ ।

ସେଦିନ ସବୁଦିନ ଚଷାପୁଅ ବିଲକୁ ବାହାରିଲା । ବିଲକୁ ଯିବା ବାଟରେ ଗୋଟିଏ ବଣ ପଡ଼େ । ହଠାତ୍ ସେଦିନ ସେହି ବଣ ଭିତରୁ ବାଘଟିଏ ବାହାରି-ପଡ଼ି କହିଲା— "ଆରେ ଚଷାପୁଅ ! ଭଲ ଚାହୁଁତ ତୋ ବଳଦ ହଳକ ମୋତେ ଦେଇଦେ । ନୋହିଲେ ତୋର ରକ୍ଷାନାହିଁ ।"

ବାଘର ତୋଡ଼ମାଡ଼ ଦେଖି ଚଷାପୁଅର ତାଳୁକ ଶୁଖିଗଲା । ସେ କହିଲା— "ଭାଇ ! ମୁଁ ତ ତୋର କିଛି ଅନିଷ୍ଟ କରିନି । ମୋ ଉପରେ କାହିଁକି ଅତ୍ୟାଚାର କରିବାକୁ ଯାଉଛୁ ? ତୋର କ'ଣ ଟିକିଏ ଭଗବାନଙ୍କୁ ଭୟ ନାହିଁ ? ଭଗବାନ କ'ଣ ତୋତେ ଏଇଆ କରିବାକୁ କହିଛନ୍ତି ?"

ବାଘ କହିଲା— "ହଁ ଠିକ୍ କଥା, ଭଗବାନ ମୋତେ ପଠାଇଛନ୍ତି ତୋ ବଳଦ ଦୁଇଟିକୁ ଖାଇବାକୁ ! ଆଉ ଏବେ ଡେରି କରୁଛୁ କାହିଁକି ?"

ଟିକିଏ ଭାବି ଚଷାପୁଅ କହିଲା— "ମୋତେ ତ ଭଗବାନ ବିଲରେ ହଳ କରିବାକୁ ପଠାଇଛନ୍ତି । ସେଥିପାଇଁ ମୋର ବଳଦ ଦରକାର । ତୋତେ ବଳଦ ଦୁଇଟି ଦେଲେ ମୁଁ ହଳ କରିବି କିପରି ? ତୁ ଯଦି ଚାହୁଁ ତେବେ ବଳଦ ଦୁଇଟା ବଦଳରେ ମୁଁ ପାଳିଥିବା ମଇଁଷିଟିକୁ ତୋତେ ଘରୁ ଆଣି ଦେବି ।"

ବାଘ ଏଥିରେ ରାଜି ହୋଇ କହିଲା— "ହଉ ତୁ ଯା, ଶୀଘ୍ର ସେପରି ଘରୁ ଫେରିଆସିବୁ । ମୁଁ ଏଇଠି ତୋ ଅପେକ୍ଷାରେ ରହିଲି ।"

ଚଷାପୁଅ ଘରକୁ ଫେରି ସ୍ତ୍ରୀକୁ ସବୁକଥା କହିଲା । ଶେଷରେ କହିଲା— "ଏଥର ଶୀଘ୍ର ମଇଁଷିଟିକୁ ଖୁଣ୍ଟରୁ ଖୋଲିଦେ ! ମୁଁ ଶୀଘ୍ର ନେଇକରି ଯିବି ।"

ଏହା ଶୁଣି ସ୍ତ୍ରୀ ଚିଡ଼ିଯାଇ କହିଲା— "ଓଃ, ଘର ନେଲିବାଲା, ତୁମକୁ ମଇଁଷି ଦେଇଦେବି ତ ପିଲାଏ ଦୁଧ ଦହି ମୁହାଁକ କେଉଁଠୁ ପାଇବେ ? ଘିଅ ଟୋପାଏ ନ ହେଲେ ମୁଁ ଘୋଷେଇ କରିବି କପରି ?"

ଚଷାପୁଅ କହିଲା— "ସେ କଥା ଠିକ୍; ମାତ୍ର ବିନା ବଳଦରେ ଚାଷ କି ହଳ କାମ ତ ହୋଇପାରିବ ନାହିଁ । ସେତେବେଳେ କ'ଣ ଖାଲି ଘିଅ, ଦୁଧ ଚାଟିବ ?"

ସ୍ତ୍ରୀ କହିଲା— "ତୁମ ବଳଦକୁ ବଞ୍ଚାଇବ ବୋଲି ମଇଁଷିଟିକୁ ଦେବାକୁ ତୁମେ କହିଦେଲ । ବୁଦ୍ଧି ଥିଲେ ତୁମେ ବାଘଟିକୁ ସେଇଠି ଅକଲ ଶିଖାଇ ଦେଇ ଆସି ପାରିଥାଆନ୍ତ । ବାଘଟାକୁ ଧପାଇ ଦେବାକୁ କ'ଣ ତୁମକୁ ବୁଦ୍ଧି ଦିଶିଲାନି ?"

ଚଷାପୁଅ ଚିଡ଼ିଯାଇ କହିଲା— ମୁଁ ତ ପାରିଲି ନାହିଁ; ତୁ କ'ଣ ଉପାୟ କରୁଛୁ କର ।"

ସ୍ତ୍ରୀ କହିଲା— "ଆଚ୍ଛା, ଠିକ୍ ଅଛି । ମୁଁ କ'ଣ ଜାଣିନି, ତୁମ ବୁଦ୍ଧି କେତେ ? କେବେ ବୁଦ୍ଧି ଖଟାଇ କାମ କରିଛ ନା ଆଜି କରିବ ? ଆଜି ମୁଁ ଏହାର ବ୍ୟବସ୍ଥା କରୁଛି । ମୁଁ ଏବେ ଯାହା କହୁଛି ସେଇଆ କର ।"

ଚଷାପୁଅ କହିଲା— "କ'ଣ କରାଯିବ ଶୀଘ୍ର କହ ।"

ସ୍ତ୍ରୀ କହିଲା— "ତୁମେ ବଳଦକୁ ଏଇଠି ଛାଡ଼ିଦେଇ ବାଘ ପାଖକୁ ଯାଅ । ବାଘକୁ କହିବ— ମୋ ସ୍ତ୍ରୀ ମଇଁଷି ନେଇକରି ଆସୁଛି ।"

ଚଷାପୁଅ ସେଇଆ କଲା । ମଇଁଷିକୁ ନେଇ ନ ଥିବାରୁ ବାଘ ତା' ଉପରେ ରାଗିଗଲା ।

ଚଷାପୁଅ କହିଲା— "ବାଘ ଭାଇ ! ମୋ ଉପରେ କାହିଁକି ଖପା

ହେଉଛନ୍ତି ? ଟିକିଏ ଅପେକ୍ଷା କର । ମଇଁଷିଟା ଖୁଣ୍ଟାରୁ ଫିଟେଇବା କ'ଣ ଏତେ ସହଜ ହୋଇଛି ? ମୋ ସ୍ତ୍ରୀ ଛଡ଼ା ସେ ଆଉ କାହାରିକୁ ପାଖ ପୂରିବ ଦିଏନା ।

ସ୍ୱାମୀକୁ ବିଦା କରିଦେବା ପରେ ସ୍ତ୍ରୀ ପୁରୁଷ ବେଶ ହେଲା । ମୁଣ୍ଡରେ ଗୋଟାଏ ବଡ଼ ଠେକା ବାନ୍ଧିଲା । କାନ୍ଧରେ ବନ୍ଧୁକ ପକାଇଲା । ତା'ପରେ ଘୋଡ଼ା ଉପରେ ବସି ଅଲଗା ବାଟରେ ଯାଇ ସେହି ବଣ ପାଖେ ପହଞ୍ଚିଲା । ବାଘକୁ ଶୁଣେଇ ପାଟିକଲା— "କଉ ପଧାନେ ! ବାଘଟିଏ କେଉଁଠି ମିଳିବ ମୋତେ ଦୟାକରି କୁହ । ବହୁଦିନ ହେଲା ପାଟି ବାଘ ମାଂସ ଚାଖିନାହିଁ । ପଅରଦିନ ଯାହା ତିନିଟା ମିଳିଥିଲା । ସତ କହୁଛି, ଯଦି ବାଘଟାଏ ହାବୁଡ଼ରେ ପଡ଼ନ୍ତା, ତେବେ ବନ୍ଧୁକ କୁନ୍ଦାରେ ସବୁ ଠିକ୍ ହୋଇଯାଆନ୍ତା ।"

ଏହାଶୁଣି ବାଘ ଡ଼ରିଗଲା । ଅତର୍କିତରେ ସେଠାରୁ ପଳେଇ ପଳେଇ ଚମ୍ପଟ କଲା । ଯାଉ ଯାଉ ବାଟରେ ମନ୍ତ୍ରୀ ଶିଆଳ ସଙ୍ଗେ ତା'ର ଦେଖା ହୋଇଗଲେ । ବାଘ ରଜା ଜନ୍ତୁ ଶିକାର କଲେ ତା' ଭାଗ୍ୟରେ ନିଶ୍ଚୟ କିଛି ଚମଡ଼ା, କଣ୍ଟା ମିଳିଯିବ । ସେଇ ଆଶାରେ ସେ ରଜାଙ୍କ ପଛେ ପଛେ ଥାଏ । ମାତ୍ର ବାଘ ରଜା ଓଲଟି ଧାଇଁ ପଳାଇବା ଦେଖି ସେ ପଚାରିଲା— "ମହାରାଜ ! ଏ କି କଥା ? ଆପଣ ପଳାଇ ଯାଉଛନ୍ତି କାହିଁକି ?"

ଉତ୍ତରରେ ବାଘ ପଛକୁ ଚାହିଁ ଚାହିଁ କହିଲା— "ବାପ୍‌ରେ ବାପ୍ ! ଏଠି ଘଡ଼ିଏ ରୁହନା ! ଶୀଘ୍ର ପଳାଅ ! ପଳାଅ ! ଆରେ ଏ ଜଙ୍ଗଲକୁ ଗୋଟିଏ ଗୋଟିଏ ଭୟଙ୍କର ଶିକାରୀ ଆସିଛି । ସେ ଏକାଥରକେ ତିନିଟା ବାଘର ମାଂସ ଜଳଖିଆ କରେ । ଆଉ ଏଠି ରହିବା କଥା ନୁହେଁ ।"

ଶିଆଳ ହସିକରି କହିଲା— "ଦେଖୁଛି ଆଜି ଆପଣଙ୍କର କ'ଣ ହେଇଯାଇଛି । ଘୋଡ଼ା ଉପରେ ବସି ଆସିଥିବା ସେଇ ଲୋକଟିକୁ ଦେଖି ଆପଣ ପୁଣି ଡ଼ାବୁରେଇ ଯାଉଛନ୍ତି ! ସେଇଟା କ'ଣ ଶିକାରୀ ? ସେ ସବୁ ଚୋରର ସ୍ତ୍ରୀ । ଆପଣ ଦେଖିପାରିଲେ ନାହିଁ ତା' ପିଠିରେ ସବୁ ବାଳ ଝୁଲୁଛି । ଏଇଟା କି ଲଜ୍ଜାର କଥା । ଗୋଟାଏ ସ୍ତ୍ରୀ ଲୋକକୁ ଦେଖି ଆପଣ ରାଜ୍ୟ ଛାଡ଼ି, ଶିକାର ଛାଡ଼ି ପଳାଇବାକୁ ବସିଛନ୍ତି !

ହେତେ ବୁଝାଇଲେ ବି ବାଘର ବିଶ୍ୱାସ ନ ହେବାରୁ ଶିଆଳ କହିଲା— "ଆଚ୍ଛା ମୋ ଲାଙ୍ଗୁଡ଼ରେ ଆପଣଙ୍କ ଲାଙ୍ଗୁଡ଼କୁ ବାନ୍ଧି ସେଠାକୁ ଚାଲନ୍ତୁ; ସବୁ ବୁଝିପାରିବେ । ଶିଆଳ ସାଥିରେ ଯିବା ଶୁଣି ବାଘର ସାହସ ହେଲା । ଦୁହିଁଙ୍କ ଲାଙ୍ଗୁଡ଼ ଖୁବ୍ ଜୋରରେ ଗଣ୍ଠି ପକେଇ ବନ୍ଧାଗଲାରୁ ଦୁହେଁ ଚାଷୀର ବିଲଆଡ଼େ ଚାଲିଲେ ।"

ତରକେଇବା ଫଳରେ ବାଘଟା ପଳେଇ ଯିବାରୁ ଚାଷୀ ଓ ତା' ସ୍ତ୍ରୀ ବହେ ହସିଲେ । ଦୁହେଁ ଖୁସିହୋଇ ଘରକୁ ଫେରୁଥାନ୍ତି । ଏହି ସମୟରେ ଚାଷୀପୁଅର ନଜର ପଡ଼ିଗଲା । ଦେଖିଲା, ବାଘ ଶିଆଳକୁ ଲାଙ୍ଗୁଡ଼ରେ ବାନ୍ଧି ନେଇଆଡ଼କୁ ଆସୁଛି । ସେ ବାପାକୁ କହିଲା— "ଆରେ ଆମ କଥା ସରିଗଲା । ଏବେ ଦେଖ, ବାଘ ପୁଣି ଫେରିଲାଣି । ଲାଙ୍ଗୁଡ଼ରେ ପୁଣି ଶିଆଳକୁ ବାନ୍ଧିକରି ତୁ ତ ପଟେଇ ଖୋଲ ସାରିଲୁଣି । ଏଥର ସେ ତୋତେ ନିଶ୍ଚୟ ଚିହ୍ନିଦେବ ।"

ଏବେ କ'ଣ କରିବାକୁ ପଡ଼ିବ ତା' ସ୍ତ୍ରୀ ସଙ୍ଗେ ସଙ୍ଗେ ଠିକ୍ କରିନେଲା । ଭୟରେ ଥରୁଥିବା ସ୍ୱାମୀକୁ ସେ ଧୀରେ କହିଲା— "କାହିଁକି ମିଛରେ ଏମିତି ଡରୁଛ ? ଦେଖୁଛି ସାହସ ହରାଇ ତୁମେ ସବୁ ଗୋଳମାଳ କରିଦେବ । ତମେ ଚୁପ୍ କରି ଦେଖ । କେମିତି ମଜା ହେଉଛି । ମୁଁ ଏଇନେ ଏ ଦୁହିଁଙ୍କୁ ନ ନଚାଉଛି ତ ତମେ ମୋତେ କହିବ । ଡରରେ ବାଘଟିର ଅକଲ ଗୁଡୁମ୍ ହୋଇଯାଇଛି । ଏବେ ଏଇ ଶିଆଳଟାକୁ ମୁଁ ଏମିତି ପାଠ ଶିଖାଇବି, ସେ ବଞ୍ଚିବା ଯାଏ ମନେ ରଖିଥିବ ।"

ଶିଆଳ ଓ ବାଘ ନିକଟକୁ ଆସିବାରୁ ସ୍ତ୍ରୀ ବଡ଼ ପାଟିରେ କହିଲା— "ବାଃ ବାଃରେ ଶିଆଳ ବେଟା ! ତୁ ତ ବେଶ୍ ହୁସିଆର । ଆପଣା କାମଟାତ ତୁ ବେଶ୍ କରି ଜାଣୁ । ମୁଁ ଭାବିଲି, ତୋ ବାପଘରେ ବହୁତ ବାଘ ଅଛନ୍ତି; ଏଠିକି ଦି' ଚାରିଟା ଧରିକରି ଆଣିବୁ । କ'ଣ ମୋତେ ଗୋଟାଏ ଆଣିଛୁ ? ତାକୁ ପୁଣି କୌଣସିମତେ ଲାଙ୍ଗୁଡ଼ରେ ଟାଣି ଓଟାରି ଆଣିଛୁ । ଗୋଟାଏ ବାଘରେ ଭଲା କ'ଣ ମୋର ପେଟ ପୂରିବ ।

ଏହାଶୁଣି ବାଘ ଶିଆଳକୁ ସନ୍ଦେହ କରିବାକୁ ଆରମ୍ଭ କଲା । ଭାବିଲା

ଶିକାରୀ ସଙ୍ଗେ ଏହାର ମଲସୁଡ଼ବା ହୋଇଛି । ଆଜ ସେଥିପାଇଁ ସିଏ ମୋତେ ଭୁଲେଇ କରି ଆଣିଛି ।

ସ୍ତ୍ରୀ ଦେଖିଲା ବାଘଟା ଏକଦମ୍ ଉତ୍ତରଗଲାଣି । ସେ ଶିଆଳକୁ ଆହୁରି ଟେକା ଟେକ କରି କହିଲା— "ଆରେ ଭାଇ ଶିଆଳ ! ସେଠି ରହିଯାଉଛୁ କାହିଁକି ? ଟାଣି ଟାଣି ଆଣ ସେ ବାଘଟାକୁ । ତାକୁ ଗୁଳିମାରିବା ବୃଥା । ପ୍ରଥମେ ମୁଁ ତା'ର କାନ କାଟିବି । ତା'ପରେ ତା' ତଣ୍ଟି ଚିପିବି । ଏଇ ବଦମାସ୍ ମୋତେ ଦେଖି ଲୁପ୍ ଚୁପ୍ ଖସି ପଳାଇଥିଲା । ତୋ'ର ଗୁଳିକପାଇଁ ସିନା ଆସିଲା । ତୁ'ଟା ବେଶ୍ ସିଆଣିଆ । ସ୍ତ୍ରୀ'ର ଲାଙ୍ଗୁଡ଼କୁ ବାନ୍ଧି ଆଛା କରିଛୁ ।

ବାଘର ଆଉ ସନ୍ଦେହ ରହିଲା ନାହିଁ । ସେ ପ୍ରାଣ ବଞ୍ଚେଇବାକୁ ଜଙ୍ଗଲ ଆଡ଼କୁ ଧାଇଁଲା । ବିଚରା ଶିଆଳ ତା' ଲାଙ୍ଗୁଡ଼ରେ ବନ୍ଧା ହୋଇଥିବାରୁ ବୁଦା ଓ ମାଟି ଉପରେ ଘୋଷାଡ଼ି ହୋଇ ଅଣନିଶ୍ୱାସୀ ହୋଇଗଲା । ପ୍ରାଣ ବିକଳରେ ସେ ଖାଲି ପାଟି କରୁଥାଏ, "ମହାରାଜ ଟିକଏ ରହିଯାଅ । ଟିକଏ ରୁହ । ବାଘ ହୋଇ ଏପରି କରିବାଟା କ'ଣ ତୁମକୁ ସାଜେ ? ରୁହ ରୁହ, ତୁମକୁ ଭଗବାନଙ୍କ ରାଣ । ମୋ ହାତ ଗୋଡ଼ ଜାଣ ଚୂନା ହୋଇଗଲାଣି । ଟିକଏ ମୋ କଥା ଶୁଣ ।"

ମାତ୍ର ବାଘ ତା' କଥାରେ ମୋଟେ କାନ ଦେଉ ନ ଥାଏ । ବରଂ ଶିଆଳଟାକୁ ଲହୁଲୁହାଣ ହେବା ଦେଖି ସେ ଖୁସି ହେଉଥାଏ । ସେ ଧାଇଁ ଧାଇଁ ଯାଇ ପାଖ ଜଙ୍ଗଲରେ ଆପଣା ସ୍ତ୍ରୀ ପାଖେ ପହଞ୍ଚିଲା । ସେତେବେଳକୁ ବିଚରା ଶିଆଳ ଧୁକୁରି ଧୁକୁରି ମରି ସାରିଥାଏ ।

ବାଘ ଭୟରେ ଥରୁଥିବା ଦେଖି ବାଘୁଣୀ କହିଲା— "କ'ଣ ହୋଇଛି ? ତୁମ ଲାଙ୍ଗୁଡ଼ରେ ଏଇ ମଲା ଶିଆଳଟାକୁ ବାନ୍ଧିଲା କିଏ ?"

ବାଘ ମୁହଁରୁ ଝାଳ ପୋଛୁ ପୋଛୁ କହିଲା— "ଆଲୋ ତତେ ସେକଥା କ'ଣ କହିବି ? ତୋ କପାଳ ଭଲ । ସେଇଥିପାଇଁ ମୁଁ ଆଜ ବଞ୍ଚିଗଲି । ଆଜ ଜଙ୍ଗଲକୁ ଗୋଟାଏ ବଡ଼ ଶିକାରୀ ଆସିଛି । ସେ ଏକା ଗୁଳିରେ ଦଶଟା

ବାଘଙ୍କୁ ଖତମ୍ କରିଦେଉଛନ୍ତି । ସେ ବଡ଼ ମାସର ଜଳଖିଆ ଲାଗି ପୁଣି ଥରେକ ତିନୋଟି ବାଘ ଦରକାର । ବାପ୍‌ରେ ବାପ୍, ତା କଥା ଶୁଣିଲେ ମୋ ଗୁଡ଼ିରୁ ରକ୍ତ ଶୁଖିଯାଉଛି । ଆମ ଓସ୍ତାଦ୍ ଜୀ ତାଙ୍କୁ ଆଉ ସେ ଗୃହୀର ବଳଆଉକୁ ଛାଡ଼ିବୁ ନାହିଁ । ଏଇ ଶିଆଳଟା ତ ମୋତେ ମରେଇ ଦେବାକୁ ବସିଥିଲା । କାଲି ଏଇ ଜଙ୍ଗଲରୁ ସବୁ ଶିଆଳଙ୍କୁ ନିପାତ କଲେ ଯାଇ ମୋ ମନ ଶାନ୍ତି ହେବ ।"

ବାଘ ସେଇଦିନଠୁ ଆଉ କେବେ ଭୁଲ୍‌ରେ ବି ସେଇ ଗୃହୀର ବଳଆଡ଼େ ଯାଏ ନାହିଁ ।

ଚତୁର ସ୍ତ୍ରୀ ଯୋଗୁ ଚଷାପୁଅର ଦୁଇଟି ବଳଦ ଓ ମଇଁଷିଟି ରକ୍ଷା ପାଇଗଲେ । ଯେଉଁଠି ବଳ ନ କାମେ ସେଇଠି ବୁଦ୍ଧିରେ ହିଁ କାମ ହାସଲ ହୁଏ ।

( ଉତ୍ତର ପ୍ରଦେଶ )



# ଜଗତର ଶ୍ରେଷ୍ଠ ବିଷୟ

ବନାରସର ରାଜା ମରିଗଲେ । ତାଙ୍କର ତିନିପୁଅ । ସେମାନଙ୍କ ମଧ୍ୟରୁ ବଡ଼ପୁଅ ରାଜା ହେବା କଥା; ମାତ୍ର ସେ ଦେଶର ସେନାପତି କୁଟ କମ୍ପଟରେ ରାଜଗାଦି ମାଡ଼ି ବସିଲେ । ତିନି ରାଜପୁତ୍ର କିପରି ବା ଆଉ ସେ ଦେଶରେ ରହିବେ ? ସେନାପତିଙ୍କ ଭୟରେ ସେମାନେ ରାତି ଅଧରେ ଘୋଡ଼ାଚଢ଼ି ରାଜ୍ୟ ଛାଡ଼ି ଚାଲିଗଲେ । କେତେବାଟ ଗଲାପରେ ଗୋଟାଏ ପର୍ବତ ପଡ଼ିଲା । ତା'ପରେ

ମରୁଭୂମି, ପର୍ବତ ଡେଇଁ ତିନିଆଡ଼କୁ ତିନୋଟି ରାସ୍ତା ପଡ଼ିଛି । ସେଇ ଛକ ପାଖରେ ଚଟି ଘରଟିଏ । ଭାଇମାନେ ଯାଇ ସେଇଠି ରାତିରେ ବିଶ୍ରାମ ନେଲେ । ମାତ୍ର ଏତେ ଦୁର୍ଯୋଗ ପରେ ସେମାନଙ୍କୁ ନିଦ ହେଉଛି ବା କେଉଁଠୁ ? ସେନାପତିଠାରୁ କିପରି ରାଜ୍ୟ ଫେରିପାଇବେ, ସେଇକଥା ସେମାନଙ୍କ ମଧ୍ୟରେ ବିଚାର ପଡ଼ିଲା ।

ରାତିପାହି ସକାଳ ହେଲା । ତଥାପି ସେମାନେ କିଛି ଠିକଣା କରିପାରିଲେ ନାହିଁ । ବଡ଼ଭାଇଙ୍କ ନାଁ ଦେବ । ସେ ହଠାତ୍ କହିଲେ— 'ଆଚ୍ଛା, ଏ ସମ୍ପର୍କରେ ମୋ ମନକୁ ଗୋଟାଏ ପ୍ରଶ୍ନ ଆସୁଛି । ଜଗତରେ ସବୁଠାରୁ ବଡ଼ କଥାଟି କ'ଣ ?'

ଏତିକବେଳେ ଚଟି ଘର ମାଲିକର ସୁନ୍ଦର ସାନ ଝିଅଟି ରୁଟି ଲଗାଇବାକୁ ଆସିଲା । ସାନଭାଇ ଅମଳ ତା'ର ଆଡ଼କୁ ଚାହିଁ କହିଲେ— 'ବାସ୍ତବିକ ଜଗତରେ କେଉଁଟି ସବୁଠାରୁ ବଡ଼ ତାହା ମୁଁ ଏପର୍ଯ୍ୟନ୍ତ ଜାଣିନି । ଏଣୁ ସେ ବିଷୟରେ ମୁଁ କିଛି କହିପାରିବି ନାହିଁ ।'

ମଝିଆ ଭାଇଙ୍କ ନା ଶଙ୍ଖ । ସେ କହିଲେ— "ମୋ ମତରେ, ପୃଥିବୀରେ ସବୁଠାରୁ ପ୍ରଧାନ ବିଷୟ ହେଉଛି କ୍ଷମତା, ଶକ୍ତି । ଜୋର ଯାର ମୂଲ୍‌କ ତା'ର । ଆମ ନିଜ ଅବସ୍ଥାରୁ ମୋର ଏଇ ଧାରଣା ହୋଇଛି । ବାପାଙ୍କର ସବୁ କ୍ଷମତା ସେନାପତି ଅଧିକାର କରିବାରୁ ତ ଆମେ ଆଜି ସର୍ବହରା, ଦାଣ୍ଡର ଭିକାରୀ ।"

ଦେବ କହିଲେ— "ମୁଁ ଭାବୁଛି, ଧନ ଦଉଲତ ହେଉଛି ଜଗତରେ ସବୁଠାରୁ ବଡ଼ ବଳ । ସେନାପତି କେମିତି ଆମ ରାଜ୍ୟ ଅଧିକାର କଲା ଜାଣିଥିବ । ମୁଁ ଜାଣେ, ସୈନ୍ୟମାନଙ୍କୁ ବହୁତ ଟଙ୍କା ଲାଞ୍ଚ ଦେଇଥିଲା ।"

ବଡ଼ ଓ ମଝିଆଭାଇଙ୍କ ମଧ୍ୟରେ ଏ ସମ୍ପର୍କରେ ବହୁତ ତର୍କ ହେଲା । ଅମଳ ତାହା ଚୁପ୍ ଚାପ୍ ଶୁଣୁଥାଏ; ମାତ୍ର ସେ ବିଷୟରେ କିଛି ଠିକ୍ କରିପାରୁ ନ ଥାଏ ।

ସକାଳର ଖାଇବା ଜିନଷ ତିଆର ହୋଇଗଲା । ଭାଇମାନେ ନଦୀଏକମ ପାଣ ଖାଇ ପିଇ ଘେରଭଡ଼ା ଲୁଚାଇ ଦେଲେ ଓ ମରୁଭୂମି ଭିତରକୁ ଯିବାଲାଗି ଘୋଡ଼ାରେ ବସିଲେ । ସମସ୍ତଙ୍କୁ ଠିକଏ ରହିବାକୁ ନିର୍ଦ୍ଦେଶ ଦେଇ ଦେବ କହିଲେ— 'ପାଖରେ ଧନ ଦଉଲତ ନ ଥିଲେ ଜଗତରେ କିଛି କହିହେବ ନାହିଁ । ଭାବୁଛି, ମୁଁ ଏଠାରୁ ପୂର୍ବପଟେ ଚୀନ ଦେଶକୁ ଯିବି । ସେଠାରୁ ପ୍ରଚୁର ଧନ ରତ୍ନ ଉପାର୍ଜନ କରି ଫେରିଲେ ଯାହା କରିବାର କରିବ ।'

ଶଙ୍ଖ କହିଲେ— 'ମୁଁ ତା'ହେଲେ ପଶ୍ଚିମପଟେ ତୁର୍କିସ୍ଥାନ ରାଜ୍ୟକୁ ଯିବି । ସେଠାରୁ ବହୁ ସୈନ୍ୟ ଆଣିବାକୁ ଯୋଗାଡ଼ କରିବି । ନିଜ ଅଧୀନରେ ସୈନ୍ୟଦଳ ନ ରହିଲେ କିଛି କରିବା ସମ୍ଭବ ନୁହେଁ ।'

ଅମଳ କୁଆଡେ ଯିବ ତା' ସେ ନିଜେ ଠିକ୍ କରିପାରିଲା ନାହିଁ । ଭାଇ-ମାନଙ୍କୁ ପଚାରିଲା, ବଡ଼ ଓ ମଝିଆଁ ଭାଇ ଏକଥା କହିଲେ— 'ତୋ'ର ଯାହା ଇଚ୍ଛା ତା' କର । ଏଠି ରହିବୁ ତ ରହ, ନଚେତ୍ ତୁ ଶ୍ୟାମ ଦେଶକୁ ଯାଇପାରୁ ।'

ଅମଳ ପଚାରିଲା—'ଆମର ପୁଣି କେବେ ଓ କେଉଁଠି ଦେଖା ହେବ ?''

ଶଙ୍ଖ କହିଲେ— 'ଆଜିଠାରୁ ଦଶବର୍ଷ ପରେ ବସନ୍ତ ଋତୁର ପ୍ରଥମ ଦିନ ଆମେ ଆସି ଏଇ ଚାରି ଘର ପାଖେ ଏକାଠି ହେବା । ସେହି ଦିନ ଜଣା-ପଡ଼ିବ ଆମ ଭିତରୁ କିଏ ଜଗତର, ସବୁଠାରୁ ଭଲ ଜିନିଷଟି ପାଇଛି । ତାହାରି ସାହାଯ୍ୟରେ ହୁଏତ ଆମେ ଆମ ରାଜ୍ୟ ଉଦ୍ଧାର କରିବାକୁ ସମର୍ଥ ହେବା ।'

ତିନିହେଁ ଏଥିରେ ରାଜି ହେଲେ । ପରସ୍ପରକୁ ଆଲିଙ୍ଗନ କରି ସେମାନେ ବିଦାୟ ନେଲେ । ଦେବ ତା' ଘୋଡ଼ାରେ ବସି ମରୁଭୂମିରେ ଯାଉଥିବା ଚୀନର ବଣିକମାନଙ୍କ ଓଟଦଳ ପଛେ ପଛେ ଚାଲିଲା ।

ଶଙ୍ଖ ମରୁଭୂମିର ଏକ ନିର୍ଜନ ବାଟରେ ତୁର୍କିସ୍ଥାନ ଆଡ଼କୁ ଆଗେଇଲେ । କ୍ରମେ ଦେବ ଓ ଶଙ୍ଖ ଆଉ ଦୃଷ୍ଟିରେ ପଡ଼ିଲେ ନାହିଁ ।

ବଚରା ଅମଳ ଏକୁଟିଆ ସେଇ ଚଟି ଘର ପାଖକୁ ଫେରିଆସିଲା । ଭାଇମାନଙ୍କ ଦିବା ବାଟକୁ ଚାହିଁ ତା' ଆଖିରୁ ଦୁଇଟୋପା ଲୁହ ବୋହିପଡ଼ିଲା ।

ଚାହୁଁ ଚାହୁଁ ଦଶ ବର୍ଷ ବିତିଗଲା । ବସନ୍ତର ପ୍ରଥମ ଦିନ ଆସିଲା । ପର୍ବତ ଘାଟିର ଶେଷରେ ଥିବା ସେଇ ଚଟି ଘରଟି ଏଇ କେତେ ବର୍ଷରେ ବହୁତ ବଦଳି ଯାଇଛି । ପୂର୍ବ ଅପେକ୍ଷା ଏହା ଅଧିକ ସୁନ୍ଦର ଦେଖାଯାଉଥାଏ । ଘର ଚାରିପଟେ ସୁନ୍ଦର ଲତାଟିଏ ମାଡ଼ି ତାକୁ ସବୁଜ କରିଦେଇଛି, ଚାରିପଟ ବାଡରେ ଫୁଟିଛି ନାଲି ଗୋଲାପ ଫୁଲ । ସେ ଦିନର ସେଇ ଗ୍ରେଟ ଝିଅଟି ଏବେ ବୋହୂଟିଏ । ଘର ଦୁଆର ମୁହଁରେ ସେ ଠିଆ ହୋଇଛି । କାଖରେ ତା'ର ଗ୍ରେଟିଆ ଝିଅଟିଏ, ଗ୍ରେଟପୁଅ ଦୁଇଟି ତଳେ ଠିଆହୋଇ ତା ଲୁଗା କାନିକୁ ଟାଣୁଥାନ୍ତି ।

ଏଇ ସମୟରେ ଦେଖାଗଲା, ଦୁଇଟି ଦଳ, ଗୋଟିଏ ପୂର୍ବପଟରୁ ଓ ଅନ୍ୟଟି ପଶ୍ଚିମରୁ ସେଇ ଘର ଆଡକୁ ଆସୁଛନ୍ତି । ପୂର୍ବପଟରୁ ଯାଇବା ଆଡ଼ୁ ଆସୁଥିଲେ ଧାଡ଼ି ଧାଡ଼ି ହୋଇ ନେଳି ପୋଷାକ ପିନ୍ଧା ବହୁଲୋକ, ଘୋଡ଼ା ଓ ଓଟ । ଦଳ ଆଗରେ ଆସୁଥିବା ହାତୀ ଉପରେ ପଡ଼ିଥାଏ ସୁନାର ହାଉଦା, ସେଥିରେ ମଣି ମୁକ୍ତା ଲଗିଥିବାରୁ ତାହା ଦୂରରୁ ଝଲମଲ କରୁଥାଏ; ମାତ୍ର ସେହି ହାଉଦା ଉପରେ ଯିଏ ବସିଥିଲେ, ତାଙ୍କ ମୁହଁ ଶୁଖି ଯାଇଥାଏ ଓ ସେ ବହୁତ ଚିନ୍ତିତ ଦେଖା ଯାଉଥିଲେ ।

ପଶ୍ଚିମ ଦିଗରୁ ଆସୁଥିବା ଦଳର ଲୋକେ ଥିଲେ ଯେପରି ଡେଙ୍ଗା ସେହିପରି ଭୟଙ୍କର । ଧନୁ, ବର୍ଚ୍ଛା ଧରି, ଘୋଡ଼ାରେ ବସି ଶହ ଶହ ସଂଖ୍ୟାରେ ସେମାନେ ଧାଇଁ ଧାଇଁ ଆସୁଥାନ୍ତି । ଅଦ୍ଭୁତ ଭାଷାରେ ଚିତ୍କାର ମଧ୍ୟ କରୁଥାନ୍ତି । ସେଇମାନଙ୍କ ମଝିରେ ଜଣେ ଡେଙ୍ଗା ଲୋକ ଉଜ୍ଜ୍ୱଳ ସାଜ ଓ ପଗଡ଼ି ପିନ୍ଧି ଘୋଡାରେ ଚାଲିଥାନ୍ତି, ହାତରେ ତାଙ୍କର ଥାଏ ଗୋଟାଏ ଖୋଲା ତରବାରି । ସେ ହଠାତ୍ ଦଳ ଆଗକୁ ଚାଲିଆସିଲେ ଓ ହାତୀ ଉପରେ ବସିଥିବା ବ୍ୟକ୍ତିଙ୍କୁ ଚାହିଁ କହିଲେ— 'ଭାଇ, ନମସ୍କାର ।'

ହାତୀ ଉପରେ ବସିଥିବା ବ୍ୟକ୍ତି କହିଲେ— 'କିରେ, ଶଙ୍ଖ ! ଯାହେଉ, ଭଲରେ ଫେରିଲୁ' ହାତୀ ଓ ଘୋଡ଼ାରୁ ଦୁହେଁ ଓହ୍ଲାଇ ପରସ୍ପରକୁ ଆଲିଙ୍ଗନ

କଲେ । ଶଙ୍ଖ କହିଲା—'ବଡ଼ଭାଇ, ତମେ ବହୁତ ବୁଢ଼ା ହୋଇଯାଇଛ । ତୁମ ମୁହଁରେ ଆଉ ପୂର୍ବର ସେଇ ପ୍ରସନ୍ନତା ନାହିଁ ।'

'ହଁ, ତା ହୋଇଥିବ । ଦଶ ବର୍ଷ ଧରି ମୋତେ ଦିନ ରାତି ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼ୁଛି । ଯା'ହେଉ, ମୁଁ ଏବେ ଜଗତର ସବୁଠାରୁ ଧନୀ । ମୋର ଏଇ ଯେଉଁ ଘୋଡ଼ା, ଓଟ ଦେଖୁଛୁ, ଏମାନଙ୍କ ଉପରେ ଲଦା ହୋଇଛି କେବଳ ସୁନା ଓ ମଣିମୁକ୍ତା ।' —ଦେବ ଉତ୍ତର ଦେଲା ।

ଶଙ୍ଖ ପଚାରିଲା— 'ଭାଇ, ତମେ ଜଗତରେ ସବୁଠାରୁ ଧନୀ ହୋଇଛ ସତ; ମାତ୍ର ପ୍ରକୃତରେ ତମେ କ'ଣ ମନେକରୁଛ ଧନ ହେଉଛି ପୃଥିବୀରେ ସବୁଠାରୁ ବଡ଼ ଜିନିଷ ! ମୁଁ ତା ଆଦୌ ବିଶ୍ୱାସ କରିପାରୁନି । ସୈନ୍ୟଦଳ ଓ ଅସ୍ତ୍ରଶସ୍ତ୍ର ନିକଟରେ ଧନ କିଛି ନୁହେଁ । ମୋର ସୈନ୍ୟମାନଙ୍କୁ ଟିକିଏ ଚାହଁ । ଏମାନଙ୍କୁ ଯୋଗାଡ଼ କରିବାକୁ ମୋତେ ଦଶବର୍ଷ ଲାଗିଲା । ସେଥିପାଇଁ ମୋତେ ପ୍ରାୟ ଶହେଥର ଯୁଦ୍ଧ କରିବାକୁ ପଡ଼ୁଛି ।'

ତୁ ଏତେ ସୈନ୍ୟଙ୍କୁ ଯୋଗାଡ଼ କଲୁ;ମାତ୍ର ଏମାନଙ୍କୁ କ'ଣ ଖାଇବାକୁ ଦେଇ ପୋଷି ପାରିବୁ ? ତୁ ସୈନ୍ୟମାନଙ୍କୁ ଯେତେ ଟଙ୍କା ବେତନ ଦେଉଛୁ, ମୁଁ ଇଚ୍ଛାକଲେ ତା'ଠାରୁ ବେଶି ଟଙ୍କା ଦେଇ ତୋ ସୈନ୍ୟମାନଙ୍କୁ ହାତେଇ ନେଇ ପାରିବି । ବେଶି ଟଙ୍କା ପାଇଲେ ସେମାନେ ନିଶ୍ଚୟ ତୋତେ ଛାଡ଼ି ମୋ ପାଖକୁ ଚାଲି ଆସିବେ । ସେଥିପାଇଁ କହୁଥିଲି, ଟଙ୍କା ହେଉଛି ଜଗତରେ ସବୁଠାରୁ ବଡ଼ । ଟଙ୍କା ବଳରେ କ'ଣ କରି ନ ହେବ ?' —ଦେବ କହିଲେ ।

ଶଙ୍ଖ ରାଗିଯାଇ କହିଲା— 'ତୁମ କଥା ଠିକ୍ ନୁହେଁ । ମୋର ଏଇ ଭୂରୀକୁ ଚାହଁ— ଯାକୁ ମୁଁ ବଜାଇ ଦେବା ମାତ୍ରେ ମୋ ସୈନ୍ୟମାନେ ମୁହୂର୍ତ୍ତିକ ମଧ୍ୟରେ ତୁମର ସମସ୍ତ ଲୋକଙ୍କୁ ମାରି ଶୁଆଇ ଦେବେ । ତୁମର ସମସ୍ତ ଧନ ସମ୍ପତ୍ତିକୁ ଅଧିକାର କରିବାକୁ ମୋତେ ପାଞ୍ଚ ମିନିଟ୍‌ରୁ ଅଧିକ ଲାଗିବ ନାହିଁ ।'

ଏହା ଶୁଣି ବଡ଼ଭାଇ ଦେବର ମୁହଁ ମଳିନ ହୋଇଗଲା । ସେ ତତ୍‌କ୍ଷଣ

ଦୃଷ୍ଟିରେ ଭାଇ ଆଡ଼କୁ କିଛି ସମୟ ଚାହିଁ କହିଲା—ଆଚ୍ଛା, ହେଉ, ତୋ କଥା ହୁଏତ ଠିକ୍ । ତେବେ, ଅମଳଟା ଏପର୍ଯ୍ୟନ୍ତ କାହିଁକି ଆସିଲା ନାହିଁ ! ସେ ଆସିଲେ, ଜଗତରେ କଏ ବଡ଼ ସେ ସମ୍ପର୍କରେ ହୁଏତ ଆଉ କିଛି କହିପାରେ ।'

ଶଙ୍ଖ କହିଲା— ସିଏ ବଡ଼ରୀ କାହାରି ସ୍ରେଷ୍ଠ । ସେ ଏ ବିଷୟରେ ଯେ କିଛି ଜାଣିପାରିବ ତାହା ମୋର ମନେ ହେଉନାହିଁ । ମୋର ଜନବଳ ଓ ତୁମର ଧନବଳ ଅଛି । ଏଥର ଆମ ରାଜ୍ୟ ଅଧିକାର ଲାଗି ଆମକୁ ଆଉ କିଛି ଭାବିବାକୁ ପଡ଼ିବ ନାହିଁ ।"

ଏହି ସମୟରେ ଜଣେ ଦେଙ୍ଗା ସୁନ୍ଦର ଯୁବକ ସେଇ ଚଟିଘର ଭିତରୁ ବାହାରିଲେ । ମୁହଁ ତାଙ୍କର ପ୍ରସନ୍ନ ଓ ହସ ହସ, ଆଖି ଉଜ୍ଜ୍ୱଳ । ସାଧାରଣ ପୋଷାକ ସେ ପିନ୍ଧିଥାନ୍ତି । ଦୁଆର ମୁହଁରେ ତରୁଣୀଟିଏ ଦୁଇଟି ପିଲାଙ୍କୁ ଧରି ତାଙ୍କୁ ଚାହିଁ ରହିଥାଏ ।

ଦେବ କହିଲେ— "ହେଇଟି ଅମଳ ଆସିଲାଣି । ଅମଳ ଧାଇଁ ଯାଇ ଭାଇମାନଙ୍କୁ କୁଣ୍ଢାଇ ପକାଇଲା ।"

ଦେବ କହିଲେ— "କିରେ ଅମଳ ! ତୁ ଏଇଠି ଅଛୁ । ଯା ହେଉ, ତୋତେ ଦେଖିଲେ ମନେହୁଏ ଜଗତର କିଛି ଭଲ ଜିନିଷ ତୁ ବୋଧହୁଏ ପାଇଛୁ ।"

ଅମଳ ହସି ହସି କହିଲା— "ଭାଇ, ସତରେ ତା ମୁଁ ପାଇଛି । ଦଶବର୍ଷ ପୂର୍ବେ ମୁଁ ଶ୍ୟାମନନ୍ଦଣ ଆଡ଼କୁ ବାହାରିଥିଲି; ମାତ୍ର ସେଠିକି ଯିବା ଆଉ ହୋଇପାରିଲା ନାହିଁ । ମୁଁ ପୁଣି ଏଠାକୁ ଫେରିଆସିଲି । ସେହିଦିନୁ ଆଉ ଏଇ ସ୍ଥାନ ଛାଡ଼ି କୁଆଡ଼େ ଯାଇନାହିଁ । ହେଇଟି ! ମୋ ସ୍ତ୍ରୀ ଓ ଦୁଇଟି ପିଲା ସେଇଠି ଠିଆ ହୋଇଛନ୍ତି । ଏଇମାନଙ୍କ ସହ ମୁଁ ଏଠି ଖୁସିରେ ଅଛି ।"

ଦେବ କହିଲେ— "ଅମଳ ! କ'ଣ ଗୁଡ଼ାଏ ତୁ ବୋକା ପିଲାଙ୍କ ପରି କଥା କହୁଛୁ ? ତୁ କ'ଣ ଭାବୁଛୁ ଏଇ ପାରିବାରିକ ସୁଖ, ସ୍ନେହ, ମମତା ଜଗତର ଶ୍ରେଷ୍ଠ ବିଷୟ ।"

ଧୀର କଣ୍ଠରେ ଅମଳ କହିଲା— "ଖାଲି ସୁଖ ବା ସ୍ନେହ-ମମତା ପାଇଁ ଏଇ କ୍ଷୁଦ୍ର କୁଟୀରକୁ ମୁଁ ଫେରିଆସିଲି ତା ନୁହେଁ । ସ୍ନେହ, ମମତା ପ୍ରଭୃତି ମୋତେ ପରେ ମିଳିଛି; ମାତ୍ର ମୁଁ ଏପରି ଜିନିଷ ପାଇଛି, ଯାହା ନିକଟରେ ଭଲପାଇବା, ଧନ, ଶକ୍ତି ପ୍ରଭୃତି ମୋତେ ଧୂଳି ପାଉଁଶ ଭଳି ତୁଚ୍ଛ ମନେ-ହେଲା ।"

ସେ ଜିନିଷଟା କ'ଣ ? ବଡ଼ ଓ ମଝିଆଁ ଭାଇ ଦୁହେଁ ଅତ୍ୟନ୍ତ ଆଗ୍ରହରେ ଏକା ସଙ୍ଗେ ପଚାରିଲେ ।

"ଜଗତରେ ସବୁଠାରୁ ସାର ବସ୍ତୁ ହେଉଛି ଆନନ୍ଦ," —ଅମଳ କହିଲା । ବଡ଼ ଓ ମଝିଆଁ ଭାଇ ଦୁଇଜଣଯାକ ଚୁପ୍ ହୋଇଗଲେ । ଦୁହେଁ କିଛିକ୍ଷଣ ପରସ୍ପରକୁ ଓ ତା'ପରେ ଆପଣାର ଦଳବାଳଙ୍କୁ ଚାହିଁ ଧୀରେ ଧୀରେ ଅମଳ କୁଟୀର ଆଡ଼କୁ ଚାଲିଲେ । ଯାଉ ଯାଉ ଦେବ ହଠାତ୍ ଶଙ୍ଖର ହାତକୁ ଧରି କହିଲା— "ଛୋକାଟା ବୟସରେ ସାନ ହେଲେ କ'ଣ ହେବ । ଯାହା କହିଲା ତା ଠିକ୍ ! ଏକଦମ୍ ଠିକ୍ । ଜାଣିଛୁ ଶଙ୍ଖ ! ସବୁ ଧନରତ୍ନ ସତ୍ତ୍ୱେ ମୋ ମନରେ ସୁଖ ନାହିଁ । ସତ କହୁଛି ମୋ ମନ କଳୁଷିତ ହୋଇଯାଇଛି । ତୋର ସୈନ୍ୟମାନଙ୍କୁ ଲଗାଇଦେଇ ମୁଁ ହାତ କରିବାକୁ ମନେ ମନେ ପାଞ୍ଚୁଥିଲି ।"

ଶଙ୍ଖ କହିଲା— "ମୁଁ ମଧ୍ୟ ସେଇଆ ଭାବୁଥିଲି । ଆଜି ରାତିରେ ମୋ ଲୋକଙ୍କଦ୍ୱାରା ତୁମର ସମସ୍ତ ଧନ ସମ୍ପଦ ଲୁଟିନେବି ।"

ଅମଳ ସେମାନଙ୍କ ସଙ୍ଗେ ଚାଲୁଥାଏ । ଦୁଇଭାଇଙ୍କ କଥାଶୁଣି କହିଲା— "ତୁମେମାନେ କାହିଁକି ପରସ୍ପର ବିରୁଦ୍ଧରେ ମନେ ମନେ ଏପରି ଚକ୍ରାନ୍ତ କରିବାକୁ ଆରମ୍ଭ କରିଦେଲ ତା ମୁଁ ବୁଝିପାରୁ ନାହିଁ ।"

ଦେବ କହିଲା— "ଆମ ରାଜ୍ୟ ଫେରି ପାଇବାଲାଗି ଆମକୁ ଏପରି ହେଉ ଚେଷ୍ଟା କରିବାକୁ ପଡ଼ିବ । ଏଣୁ ଧନ ସଙ୍ଗେ ମୁଁ ଶକ୍ତିଶାଳୀ ସୈନ୍ୟ-ମାନଙ୍କୁ ମୋ ଅଧିକାରକୁ ଆଣିବାକୁ ଇଚ୍ଛା କରୁଥିଲି ।"

ଶଙ୍ଖ ସେହିପରି ସ୍ୱୀକାର କଲା, ରାଜ୍ୟ ଫେରି ପାଇବା ଲାଗି ଅଧିକ ଶକ୍ତି ଓ ଧନର ଅଧିକାରୀ ହେବା ଇଚ୍ଛାରେ ସେ ନିଜ ସୈନ୍ୟମାନଙ୍କ ସାହାଯ୍ୟରେ ପ୍ରଥମେ ବଡ ଭାଇଙ୍କର ଧନରତ୍ନ ଲୁଟି ନେବାକୁ ତତ୍ପର ଥିଲା ।

ଅମଳ କହିଲା— 'ଭାଇ, ! ଆପଣ ଦୁହିଁଙ୍କଠାରୁ ମୁଁ ବୟସରେ ସାନ, ହେଲେ ମୁଁ ବୁଝିଛି; ଧନ ବା ଶକ୍ତିର ଅଧିକାରୀ ହେଲେ ସନ୍ତୋଷ ମିଳେନାହିଁ । ଧନ ଓ ଶକ୍ତିର ଅଧିକାରୀ ହେବାକୁ ବହୁତ କାମ କରିବାକୁ ପଡେ଼ । ବହୁତ କଥା ମଧ୍ୟ କହିବାକୁ ହୁଏ; ମାତ୍ର ସେ କଥାର ମୂଲ୍ୟ ବା କ'ଣ ? ମୋ ମତରେ କୃଷୀର ଜୀବନ ଏହାଠାରୁ ଅଧିକ ମୂଲ୍ୟବାନ୍ । ଏଇ କେତେବର୍ଷ ମଧ୍ୟରେ ଆମ ରାଜ୍ୟର କ'ଣ ହେଲାଣି ଆପଣମାନେ ବୋଧହୁଏ ତା ଜାଣନ୍ତି ନାହିଁ । ଯେଉଁ ମନ୍ତ୍ରୀ ଆମ ରାଜ୍ୟ ଅଧିକାର କରିଥିଲେ, ଇତିମଧ୍ୟରେ ତାଙ୍କୁ ମଧ୍ୟ ହରାଇବାକୁ ପଡ଼ିଛି । ମାଳବ ରାଜାଙ୍କ ସହ ବିବାଦ ହେବାପରେ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ସେ ମୃତ୍ୟୁ ମୁଖରେ ପଡ଼ିଲେ । ଏବେ ମାଳବ ରାଜାହିଁ ଆମ ରାଜ୍ୟର ରାଜା, ତେବେ ସେ ମଧ୍ୟ ଏବେ ଦୁଶ୍ଚିନ୍ତା-ଗ୍ରସ୍ତ ।"

ଦେବ ଓ ଶଙ୍ଖ କହିଲେ— "ଦୁଶ୍ଚିନ୍ତାରୁ କିଏ ବା ମୁକ୍ତି ପାଇଛି ? ରାଜା ହେଲେ ତ ନିଶ୍ଚୟ ନାନା ବିଷୟରେ ଚିନ୍ତିତ ହେବାକୁ ପଡ଼ିବ ।"

ସାନ ଭାଇ ନମ୍ର ଭାବରେ କହିଲେ— "ଭାଇମାନେ ! ମୁଁ ଏତିକି ଜାଣିଛି, କେବଳ କୃଷକ ହିଁ ନିଶ୍ଚିନ୍ତ ଜୀବନଯାପନ କରେ । କଥା କହିବାକୁ ତା'ର ଫୁର୍‌ସତ୍ ନ ଥାଏ କିମ୍ବା ସେ ବଡ଼ ହେବ ବୋଲି ଇଚ୍ଛା କରେନା । ବର୍ଷସାରା ସେ କ୍ଷେତରେ ହିଁ ଖଟେ— ଯାହା ଶସ୍ୟ ମିଳେ ସେଇଥିରେ ସନ୍ତୋଷରେ କାଳ କଟାଇ ଦିଏ । ତା ଯୋଗୁ ସିନା ଅନ୍ୟମାନେ ଆହାର ପାଆନ୍ତି, ବଡ଼ ବଡ଼ କଥା କହନ୍ତି । କିଏ ରାଜା ହେବ ବା ଲକ୍ଷପତି ହେବ ବୋଲି ଭାବନ୍ତି । ଏହା ଜାଣିବା ପରେ ମୁଁ ଆଉ ରାଜ୍ୟଲାଭର ଆଶା ନ ରଖି କୃଷକ ଭାବେହିଁ ଏଠାରେ ରହୁଛି । ଏଇ ଯେଉଁ କ୍ଷେତ ଘର ଗୃହପାଖେ ଦେଖୁଛ, ସେଗୁଡ଼ିକରେ ମୁଁ ଦିନସାରା ପରିଶ୍ରମ କରେ । ସଞ୍ଜରେ ଘରକୁ ଫେରେ । ରାତିରେ ଗୋରୁଗାଈଙ୍କ କଥା ବୁଝେ । ପିଲାମାନଙ୍କ ସହ ଖେଳେ । ଗୀତ

ବୋଲି ଶୋଇପଡ଼େ । ରାଜ୍ୟର ରାଜା ହୋଇ ଦୁଶ୍ଚିନ୍ତାରେ କାଳ କଟାଇବା-ଠାରୁ ଏପରି ଚଳିବା କ'ଣ ଭଲ ନୁହେଁ ? ମୋ ମତରେ ଏହିପରି ଅଧିକ ଶ୍ରମ ଓ ସନ୍ତୋଷ ହିଁ ଜଗତର ଶ୍ରେଷ୍ଠ ବିଷୟ ।"

ବଡ଼ ଦୁଇ ଭାଇଙ୍କ ପାଟିରୁ କଥା ବାହାରିଲା ନାହିଁ । ଦୁହେଁ ବିସ୍ମୟରେ ହାଁ କରି ଆଉଙ୍କୁ ଚାହିଁ ରହିଲେ । ଦେବ କହିଲେ— "ମୁଁ କୃଷକଟିଏ ହୋଇ ରହିବାକୁ ଚାହେଁ । ଯାବୁଛି ଏତେ କଷ୍ଟରେ ଆଣିଥିବା ମୋର ସବୁ ଧନରତ୍ନ ଲୋକମାନଙ୍କ ମଧ୍ୟରେ ବିତରଣ କରିଦେବି ।"

ଶଙ୍ଖ କହିଲେ— "ମୁଁ ମୋର ସୈନ୍ୟମାନଙ୍କୁ କୃଷି କାମରେ ଲଗାଇ-ଦେବି । କୃଷିକାମ କଲେ ସେମାନେ ନିଶ୍ଚୟ ଭଲରେ ରହିବେ ।"

ବ୍ରଜଭୂମି ( ଉତ୍ତର ପ୍ରଦେଶ )



# ବୁଦ୍ଧିର ଖେଳ

ଦୁଇ ବନ୍ଧୁ; ଜଣଙ୍କ ନାଁ ମୁକୁନ୍ଦ, ଆଉ ଜଣଙ୍କ ନାଁ ଚନ୍ଦ୍ରଧର । ଦୁହେଁ-ଯାକ ଖୁବ୍ ଚାଲାକ; କେହି କାହାକୁ ଊଣା ନୁହନ୍ତି । ଦୁହିଁଙ୍କର ଘର ପାଖାପାଖି ଗାଁରେ । ବେଳ ମିଳିଲେ ଦୁହେଁ ଦୁହିଁଙ୍କ ଘରକୁ ବୁଲିବାକୁ ଯାଆନ୍ତି ।

ଥରେ ମୁକୁନ୍ଦ ସନ୍ଧ୍ୟାବେଳେ ଯାଇ ଚନ୍ଦ୍ରଧର ଘରେ ପହଞ୍ଚିଲା । ତାକୁ ଦେଖି ଚନ୍ଦ୍ରଧର ଖୁବ୍ ଖୁସି । ବନ୍ଧୁକୁ ଚର୍ଚ୍ଚା କରିବାରେ ଟିକିଏ ବି ହେଳା କଲା ନାହିଁ । ରାତିରେ ଦୁହେଁ ଖାଇବାକୁ ବସିଲେ । ଗୋଟିଏ ରୂପା ଥାଳିରେ

ମୁକୁନ୍ଦ ପାଇଁ ଖାଇବା ଜିନିଷ ପରଷା ଯାଇଥାଏ । ଥାଳିଟି ଖୁବ୍ ସୁନ୍ଦର ଓ ଦାମିକା । ଏହାକୁ ଦେଖି ମୁକୁନ୍ଦର ଲୋଭ ହେଲା । ଚନ୍ଦ୍ରଧର ତା'ର ମନୋଭାବ ବୁଝିପାରିଲା । ଏଣୁ ସେ ସାବଧାନ ହୋଇଗଲା । ଖାଇବା ଥାଳିଟିକୁ ଧୋଇ ସେଥିରେ ପାଣି ପୂର୍ଣ୍ଣକରି ତାକୁ ନେଇ ଗୋଟିଏ ଶିକାରେ ଥୋଇଦେଲା । ସେଇ ଶିକା ତଳେ ନିଜେ ଖଟିଆଟିଏ ପକେଇ ଶୋଇଲା । ଶିକାରୁ କେହି ଥାଳଟି କାଢିଲେ ସେଥିରୁ ପାଣି ଖସି ତା ଉପରେ ପଡ଼ିବ ଓ ତା'ର ନିଦ ଭାଙ୍ଗିଯିବ । ଏଣୁ ଥାଳିଟିକୁ କିଏ ନେଇ ପାରିବ ନାହିଁ । ନିଶ୍ଚିନ୍ତ ହୋଇ ସେ ଶୋଇଲା । ତା' ପାଖରେ ଆଉ ଗୋଟିଏ ଖଟିଆରେ ମୁକୁନ୍ଦର ଶୋଇବାପାଇଁ ବ୍ୟବସ୍ଥା କରିଦେଲା ।

ଏଣେ ଥାଳିଟିକୁ ନେବାକୁ ମୁକୁନ୍ଦ ବ୍ୟାକୁଳ । ସେ ଖାଲି ଗାଲ ପାରି ଶୋଇଥାଏ । କିଛି ସମୟ ପରେ ଚନ୍ଦ୍ରଧରକୁ ନିଦ ହୋଇଗଲା । ଏହା ଦେଖି ମୁକୁନ୍ଦ ଖଟିଆରୁ ଉଠିଲା । ଅଗଣାକୁ ଆସି ଚୂଲିରୁ କିଛି ଟିକେ ପାଉଁଶ ନେଲା । ତାହାକୁ ନେଇ ପାଣିଥିବା ରୂପା ଥାଳରେ ପକାଇଲା । ପାଉଁଶ ପାଣିତକ ଶୋଷିନେବା ପରେ ସେ ଚୁପ୍ କରି ଥାଳିଟିକୁ ଶିକାରୁ ଉଠାଇ ଆଣିଲା । ତା'ପରେ ଘର ବାହାରକୁ ଚାଲିଗଲା । ବାଡ଼ିରେ ଥିବା ଗୋଟାଏ ପଙ୍କ ଖାତରେ ଥାଳିଟିକୁ ପୋତି ଦେଇ ଚୁପ୍‌ଚାପ୍ ଆସି ଖଟିଆରେ ଚଦର ଘୋଡ଼େଇ ହୋଇ ଶୋଇପଡ଼ିଲା ।

ପାହାନ୍ତିଆରୁ ଚନ୍ଦ୍ରଧରର ନିଦ ଭାଙ୍ଗିଲା । ଉପରକୁ ଚାହିଁ ସେ ଦେଖିଲା, ଶିକାରେ ଥାଳ ନାହିଁ । ମୁକୁନ୍ଦ ଛଡ଼ା ବା ଆଉ ଏ କାମ କିଏ କରିବ ? ସିଏ ନିଶ୍ଚୟ କେତେବେଳେ ଉଠି ଥାଳିଟିକୁ କୌଶଳରେ ଉଠେଇ ନେଇଛି; ତାକୁ କେଉଁଠି ଲୁଚେଇ ଦେଇ ଆସି ଏଠି ଚଦର ଘୋଡ଼େଇ ହୋଇ ଶୋଇଯାଇଛି । ଚନ୍ଦ୍ରଧର ଦେଖିଲା ମୁକୁନ୍ଦର ଗୋଟିଏ ଗୋଡ଼ ଚଦର ବାହାରକୁ ବାହାରିଛି ଓ ସେଥିରେ ପଙ୍କ ଲାଗିଛି । ସଙ୍ଗେ ସଙ୍ଗେ ସେ ପଙ୍କ ଖାତ ପାଖକୁ ଗଲା । ଯେଉଁଠି ପାଦଚିହ୍ନ ପଡ଼ିଥିଲା, ସେଇ ପାଖରେ ଖାତ ଦରାଣ୍ଡିବାରୁ ଥାଳିଟିକୁ ପାଇଲା । ଥାଳିଟିକୁ ଆଣି ସେ ଧୁଆଧୋଇ କରି ଘରେ ଥୋଇଦେଲା ।

ଏଣେ କେତେବେଳ ପରେ ମୁକୁନ୍ଦର ନିଦ ଭାଙ୍ଗିଲା । ସେ ଚନ୍ଦ୍ରଧରକୁ କହିଲା, "ଭାଇ, ମୋତେ ଏଥର ବିଦାୟ ଦିଅ । ମୁଁ ଘରକୁ ଯିବି ।"

ଚନ୍ଦ୍ରଧର କହିଲା— "ଏତେ ତରବର କାହିଁକି ? କୋଉ ଗୁଣ୍ଡଘରେ ପିମ୍ପୁଡ଼ି ଖାଇ ଯାଉଛି । ଆଜି ଦିନଟା ଏଠି ରହ, କାଲି ସକାଳେ ଯିବ ।"

ମୁକୁନ୍ଦର ରହିବାକୁ ଇଚ୍ଛା ନ ଥିଲା । ରୂପା ଥାଳିରେ ତା'ର ମନ । କେମିତି ସେଇଟିକୁ ଖାତରୁ ନେଇ ଘରେ ପହଞ୍ଚିବ, ଏଥିପାଇଁ ବହୁତ ଚଞ୍ଚଳ ହେଉଥାଏ । ଯାହାହେଉ, ଚନ୍ଦ୍ରଧର ବହୁତ ଅନୁରୋଧ କରିବାରୁ ସେ ରହିବାକୁ ବାଧ୍ୟହେଲା ।

ବେଳ ହେବାରୁ ଦୁହେଁ ଖାଇ ବସିଲେ । ଚନ୍ଦ୍ରଧରର ବ୍ୟବସ୍ଥା କ୍ରମେ ସେଇ ରୂପା ଥାଳିରେ ଖାଇବା ଜିନିଷ ଆସି ମୁକୁନ୍ଦ ଆଗେ ଥୁଆ ହେଲା । ଥାଳିଟି ଦେଖି ମୁକୁନ୍ଦ ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲା— "ଭାଇ, ତୁମ ଘରେ ଏମିତିକା କେତୋଟି ରୂପା ଥାଳି ଅଛି ? କାଲିର ଥାଳି ତ ମୁଁ ରାତିରେ ଚୋରାଇ ନେଇଛି ।"

ଚନ୍ଦ୍ରଧର ହସି ହସି କହିଲା— "ମୁଁ ତା ଜାଣିଛି । ତୁମେ ରାତିରେ ରୂପା ଥାଳିଟି ନେଇ ତାଙ୍କ ବାଡ଼ିଆରେ ପୋତିଥିଲ । ପରେ ମୁଁ ଯାଇ ସେଇଟି ନେଇ ଆସିଛି । ଏଇଟା ସେଇ ଥାଳି ।"

ମୁକୁନ୍ଦ ଟିକିଏ ଅପ୍ରସ୍ତୁତ ହୋଇଗଲା; ମାତ୍ର ପରେ ଖୁସୀ ହୋଇ କହିଲା— "ଭାଇ, ମୁଁ ଭାବିଥିଲି ମୋତେ କେହି ଠକେଇ ପାରିବେନି; ମାତ୍ର ତମେ ମୋ'ଠୁ ବଳିଗଲ । ଆଜିଠୁ ତମେ ମୋର ଗୁରୁ । ଚାଲ ଆମେ ଦୁହେଁ ଆପଣା ବୁଦ୍ଧିରେ କିଛି କାମ କରି ଧନ କମେଇବା ।"

ଚନ୍ଦ୍ରଧର ପ୍ରସ୍ତୁତ ହୋଇଗଲା । ଦୁହେଁ ବହୁତ ଧନ କମେଇବା ଆଶାରେ ବିଦେଶ ବାହାରିଲେ । କେତେଦିନ ପରେ ଦୁହେଁ ଯାଇ ଗୋଟାଏ ସହରରେ ପହଞ୍ଚିଲେ । ଦିନେ ରାସ୍ତାରେ ଯାଉ ଯାଉ ଦେଖିଲେ ଗୋଟାଏ ମୁର୍ଦ୍ଦାରକୁ ଲୋକେ କାନ୍ଧେଇ ଶ୍ମଶାନକୁ ନେଉଛନ୍ତି । ତା' ପଛରେ ଅନେକ ଲୋକ ଚାଲିଥାନ୍ତି ।

ମୁର୍ଦ୍ଦାରକୁ ଦେଖି ମୁକୁନ୍ଦ ମନରେ ଗୋଟାଏ ଦୁଷ୍ଟବୁଦ୍ଧି ଖେଳିଗଲା ।

ସେ କହିଲା— "ମନେ ହେଉଛି, ଏଇଟା ଗୋଟାଏ ସେଠ୍‌ର ଶବ । ଚାଲ ଗୋଟାଏ ଫିକର କରିବା ।"

ଦୁହେଁ ଯାକ ଶବ ପଛେ ପଛେ ଯାଇ ଶ୍ମଶାନରେ ପହଞ୍ଚିଲେ । ଦୂରରେ ଛିଡ଼ା ହୋଇ ବସି ଶବଦାହ ଦେଖିଲେ । ଶେଷ । ପୋଡ଼ା ପାଉଁଶ ହୋଇଗଲା ଓ ଶବ ସହ ଆସିଥିବା ଲୋକମାନେ ଫେରିଗଲେ । ଦୁହେଁ ଯାଇ ଯେଉଁଠି ଶବକୁ ପୋଡ଼ା ଯାଇଥିଲା ସେଇଠି ପହଞ୍ଚିଲେ । ମୁକୁନ୍ଦ କହିଲା— "ଏବେ ମୁଁ ଯାହା କହୁଛି ସେଇଆ କରିଯାଉ ।" ମୁକୁନ୍ଦର କଥା ଅନୁସାରେ ଦୁହେଁ ସେଇଠି ଗୋଟାଏ ସୁଡ଼ଙ୍ଗ ଖୋଳିଲେ । ତା ମୁହଁଟିକୁ ଏପରି ବନ୍ଦ କଲେ, ତଳେ ଥିବା ସୁଡ଼ଙ୍ଗଟି ଆଦୌ ଜଣାପଡୁ ନ ଥାଏ । ମୁକୁନ୍ଦ କହିଲା— "ଭାଇ ତୁମେ ଏବେ ଏଇ ସୁଡ଼ଙ୍ଗ ଭିତରେ ଲୁଚିକରି ରୁହ । ମୁଁ ଏଠିକି ଅଳ୍ପ ସମୟ ମଧ୍ୟରେ ସେଠ୍‌ର ପୁଅକୁ ନେଇକରି ଆସିବି । ମୁଁ ଯାହା ପଚାରିବି ତୁମେ ସୁଡ଼ଙ୍ଗ ଭିତରୁ ତା'ର ଉତ୍ତର ଦେବ ।" ଏହା କହି ଚନ୍ଦ୍ରଧର କ'ଣ କହିବ ତାହା ସେ ତାକୁ ବୁଝାଇକରି ବତାଇ ଦେଲା ।

ମଲା ଲୋକଟି ଥିଲା ପ୍ରକୃତରେ ଜଣେ ଧନୀ ଲୋକ । ମୁକୁନ୍ଦ ତା'ର ଠିକଣା ବୁଝି ସେଇ ଲୋକ ଘରେ ଯାଇ ପହଞ୍ଚିଲା । ସେଠ୍‌ର ପୁଅକୁ ପଚାରିଲା- 'ଆରେ ଭାଇ, ସେଠ୍‌ଜୀ କାହାନ୍ତି ।'

ପୁଅ କହିଲା— 'ତାଙ୍କର ଗତକାଲି ଦେହାନ୍ତ ହୋଇଗଲା ।'

ଏହା ଶୁଣିବା ମାତ୍ରେ ମୁକୁନ୍ଦ ବଡ଼ ପାଟିରେ କାନ୍ଦିବାକୁ ଲାଗିଲା । ସେଠ୍‌ର ପୁଅ ଆଶ୍ଚର୍ଯ୍ୟ ହୋଇ ପଚାରିଲା— "ଭାଇ, ତମେ ବାପାଙ୍କ ମରିବା ଖବର ଶୁଣି କାହିଁକି ଏତେ କାନ୍ଦୁଛ ?"

ମୁକୁନ୍ଦ ଆହୁରି ଜୋରରେ କାନ୍ଦିବାକୁ ଲାଗିଲା । କାନ୍ଦୁ କାନ୍ଦୁ କହିଲା— "ହାୟରେ କପାଳ ! ମୋର ତ ସର୍ବନାଶ ହୋଇଗଲା । ମୁଁ ସେଠ୍‌ଜୀଙ୍କ ପାଖରେ ଦଶ ହଜାର ଟଙ୍କା ରଖିଥିଲି । ମୋ ଟଙ୍କା ଆଉ ମୋତେ କିଏ ସେ ଦେବ ?" ଏହା କହି ସେ ପୁଣି ସକେଇବାକୁ ଲାଗିଲା ।

ତା'ର ଅବସ୍ଥା ଦେଖି ସେଠ୍ ପୁଅର ଦୟା ହେଲା । ସେ କହିଲା— 'ଭାଇ ତୁମେ ଆଉ ବିକଳ ହୁଅନା । ଯଦି ମୋ ବାପା ତୁମଠୁଁ ଟଙ୍କା ନେଇ-ଥିବେ, ତେବେ ସେ ତାହା ଜମା ଖାତାରେ ଲେଖିଥିବେ । ଖାତାରେ ଲେଖା ଥିଲେ ମୁଁ ତୁମକୁ ଟଙ୍କା ଫେରାଇ ଦେବି ।'

ପୁଅ ବାପାଙ୍କ ଜମାଖାତା ବହି ଆଣି ଓଲଟେଇଲା । ମାତ୍ର ସେଥିରେ କେଉଁଠି ଦଶହଜାର ଟଙ୍କା ଜମା ହୋଇଥିବାର ଲେଖା ମିଳିଲା ନାହିଁ । ମୁକୁନ୍ଦ ତ ଜମା ଦେଇନ । ମିଳିବ ବା କପରି ?

ମୁକୁନ୍ଦ ଟିକିଏ ଚିଡ଼ିଲା ଭଳି ସ୍ୱରରେ କହିଲା— "ମୁଁ ତ ସେଠ୍‌ଙ୍କୁ ଦଶହଜାର ଟଙ୍କା ଜମା ଦେଇଛି । ସେ କାହିଁକି ତାଙ୍କ ଖାତାରେ ନ ଲେଖିଲେ ତା ମୁଁ କହିପାରିବି ନାହିଁ । ବୋଧହୁଏ ଭୁଲି ଯାଇଛନ୍ତି । ତୁମେମାନେ ତା' ହେଲେ ମୋ ସାଙ୍ଗରେ ଶ୍ମଶାନକୁ ଚାଲ । ସେଠ୍‌ଙ୍କୁ ମୁଁ ଟଙ୍କା ଦେଇଛି କି ନାହିଁ ତାଙ୍କ ନାଁ ଧରି ଡ଼ାକି ପଚାରି । ଯଦି ମୁଁ ପ୍ରକୃତ ଦେଇଥିବି, ତେବେ ସେଠ୍‌ଙ୍କ ଆତ୍ମା ନିଶ୍ଚୟ ତା'ର ଉତ୍ତର ଦେବ ।"

ଏକଥା ଶୁଣି ସେଠ୍‌ଙ୍କ ପୁଅ କିଛି କହିପାରିଲା ନାହିଁ । ମୁକୁନ୍ଦକୁ ସାଙ୍ଗରେ ନେଇ ସେ ଶ୍ମଶାନକୁ ଆସିଲା । ଶ୍ମଶାନରେ ମୁକୁନ୍ଦ ବଡ଼ ପାଟିରେ କହିଲା— "ସେଠ୍‌ଜୀ, ମୁଁ ଆପଣଙ୍କ ପାଖେ ଦଶହଜାର ଟଙ୍କା ଜମା ଦେଇ-ଥିଲି । ଆପଣ ସେ ଟଙ୍କା ଜମାଖାତାରେ ଲେଖିନାହାନ୍ତି । ମୁଁ ଟଙ୍କା ଜମା ଦେଇଥିବା ଯଦି ଠିକ୍, ତେବେ 'ହଁ' କହି ଦିଅନ୍ତୁ । ନ ହେଲେ ନାହିଁ ।"

ପୂର୍ବରୁ ସୁଡ଼ଙ୍ଗ ଭିତରେ ଚନ୍ଦ୍ରଧର ପ୍ରସ୍ତୁତ ହୋଇ ବସିଥିଲା । ମୁକୁନ୍ଦର କଥା ଶୁଣି ସମସ୍ତେ ଶୁଣିପାରିଲା ଭଳି ଏକ ବିଚିତ୍ର ସ୍ୱରରେ କହିଲା— ହଁ, ହଁ, ଇଏ ଠିକ୍ କଥା କହୁଛି । ଇଏ ଦଶହଜାର ଟଙ୍କା ମୋ ପାଖରେ ରଖିଥିଲା । ତା ଟଙ୍କା ତାକୁ ଦେଇ ଦିଅ, ନ ହେଲେ ମୁଁ ନରକରେ ପଡ଼ିବି ।'

ସେଠ୍‌ଙ୍କ ପୁଅ ମୁକୁନ୍ଦକୁ ଘରକୁ ନେଇ ତାକୁ ଦଶହଜାର ଟଙ୍କା ଦେଇ ଦେଲା ।

ଏତେଗୁଡ଼ାଏ ଟଙ୍କା ପାଇ ମୁକୁନ୍ଦର ଲୋଭ ହେଲା । ସେ ତାଙ୍କୁ ନେଇଥିରୁ ଭାଗ ଦେବାକୁ ଚାହିଁଲା ନାହିଁ । ଚନ୍ଦ୍ରଧର ପାଖକୁ ନ ଯାଇ ସିଧା ନିଜ ଘରକୁ ଚାଲିଲା ।

ଏଣେ ଚନ୍ଦ୍ରଧର ଅନେକ ସମୟ ପର୍ଯ୍ୟନ୍ତ ଗାଁରେ ଅପେକ୍ଷା କଲା । ମୁକୁନ୍ଦ ନ ଆସିବାରୁ ତା' ମନରେ ସନ୍ଦେହ ହେଲା । ବୁଝିପାରିଲା, ମୁକୁନ୍ଦ ତାକୁ ଠକିଦେଇ ପଳାଇଛି । ସୁଡ଼ଙ୍ଗରୁ ବାହାରି ସେ ବଜାରରୁ ହଳେ ଭଲ ଯୋତା କିଣିଲା । ସେଇ ଜୋତାକୁ ନେଇ ଚନ୍ଦ୍ରଧର ଗାଁକୁ ପଡ଼ିଥିବା ରାସ୍ତାରେ ଆଗେଇଲା । କେତେବାଟ ଚାଲିସାରେ ଦୂରରୁ ଦେଖିଲା, ଚନ୍ଦ୍ରଧର ତା ଗାଁ ଆଡ଼କୁ ତରତର ହୋଇ ଚାଲିଛି । ସେ ଆଉ ଗୋଟାଏ ବାଟରେ ଶୀଘ୍ର ଯାଇ ଚନ୍ଦ୍ରଧର ଆଗରେ ପହଞ୍ଚିଗଲା ଓ ପଟେ ଯୋତା ତା ଯିବା ବାଟରେ ପକେଇ ଦେଲା । ତା'ପରେ ପୁଣି ଲୁଚିକରି ଅନ୍ୟ ବାଟରେ ଯାଇ ଆଉ କେତେ ଦୂରରେ ଆଉପଟେ ଯୋତା ରାସ୍ତାରେ ପକାଇ ଦେଲା । ସେଇ ରାସ୍ତା ପାଖ ଗୋଟାଏ ଗଛ ପଛଆଡ଼େ ସେ ଲୁଚିକରି ବସିରହିଲା ।

ମୁକୁନ୍ଦ ଯାଉ ଯାଉ ରାସ୍ତା ଉପରେ ଯୋତା ପଟେ ପଡ଼ିଥିବା ଦେଖିଲା, ଚମଡ଼ା ଯୋତା ପଟିଏ ବିଲ୍‌କୁଲ୍ ନୂଆ; ଖୁବ୍ ଚକ୍‌ଚକ୍ କରୁଥାଏ । ପଟେ ଯୋତା ନେଇ ବା ସେ କ'ଣ କରିବ ? ଏଣୁ ତାକୁ ଛାଡ଼ିଦେଇ ସେ ବାଟେ ବାଟେ ଚାଲିଲା । ପୁଣି କେତେଦୂର ଚାଲିସାରେ ସେ ସେଇ ଯୋତାର ଅନ୍ୟ ପଟଟି ଦେଖିବାକୁ ପାଇଲା । ଏଇଟିକୁ ଦେଖି ସେ ଖୁସି ହୋଇଗଲା । ଭାବିଲା, ପଛକୁ ଫେରିଯାଇ ଯୋତା ପଟକ ନେଇ ଆସିଲେ ତା'ର ବଢ଼ିଆ ଯୋତା ହଳେ ହୋଇଯାଆନ୍ତା ।

ମୁଣ୍ଡରେ ଟଙ୍କା ବୋଝଟି ଧରି ଏତେ ବାଟ ପଛକୁ ଫେରି ପୁଣି ଏଠାକୁ ଆସିବ ବା କାହିଁକି ? ତା' ଅପେକ୍ଷା ଏଇ ନିର୍ଜନ ସ୍ଥାନରେ କେଉଁଠି ଟଙ୍କା ବୋଝଟି ରଖିଦେଲେ ଭଲ । ଚାରିପଟକୁ ଚାହିଁ ଦେଖିଲା, କେହି ଲୋକବାକ ନାହାଁନ୍ତି । ରାସ୍ତାପାଖ ବଣ ଭିତରକୁ ଯାଇ ଗୋଟାଏ ଗଛ ଉହାଡ଼ରେ ସେ ଗଣ୍ଠିଲିଟି ଓ ଯୋତା ପଟକ ଥୋଇଦେଲା । ଅନ୍ୟ ଯୋତା ପଟକ ଆଣିବାଲାଗି ପଛକୁ ଫେରିଲା ।

ମୁକୁନ୍ଦ କେତେବାଟ ଗ୍ଭଲିଯିବା ପରେ ଚନ୍ଦଧର ଆସି ଟଙ୍କା ଗଣ୍ଡିଲିଟି ଧରି ଆପଣା ଗାଁ ଆଡକୁ ମୁହାଁଇଲା ।

ଘରେ ପହଞ୍ଚି ସେ ସ୍ତ୍ରୀକୁ ସବୁକଥା କହିଲା ଓ ଟଙ୍କାଟକ କୋଠି ତଳେ ଗାତକରି ପୋତିଦେଲା । ସ୍ତ୍ରୀକୁ କହିଲା—"ଯଦି ମୁକୁନ୍ଦ ଆସି ମୋତେ ଖୋଜେ, କହିବୁ ସେ ତ ତୁମ ସଙ୍ଗେ ଯାଇଥିଲା, ଆଜଯାଏ ଘରକୁ ଫେରିନ ।" ମୁଁ ଯାଉଛି ଆମ ବାରିପଟ ଶୁଖିଲା କୂଅ ଭିତରେ ଲୁଚି ରହିବି । ତୁ ମୋପାଇଁ ରୁଟି ଗୁଡ଼ପଟ ପୋଟଳା କରି ଦି ବେଳା କୂଅରେ ପକାଇ ଦେଇ ଯାଉଥିବୁ । ସାବଧାନ, ଏକଥା ଯେପରି କେହି ଜାଣି ନ ପାରନ୍ତି ।" ଏହା କହି ସେ ବାରିଆଡ଼ କୂଅ ଭିତରେ ଯାଇ ଲୁଚିରହିଲା ।

ଏଣେ ମୁକୁନ୍ଦ ଯୋଡା ପଟକୁ ଧରି ଗଛ ପାଖକୁ ଆସି ଦେଖିଲା, ତା ଟଙ୍କା ଗଣ୍ଡିଲିଟି କିଏ ନେଇ ଗ୍ଭଲିଯାଇଛି । ସେ ଠିକ୍ କଲା, ଏହା ସେଇ ଚନ୍ଦଧରର କାମ । ତା' ନୋହିଲେ ତାକୁ ବୁଦ୍ଧିରେ ବଳାଇବ ବା କିଏ ? ସେ ଖୁବ୍ ଶୀଘ୍ର ଆସି ଚନ୍ଦଧର ଘରେ ପହଞ୍ଚିଲା । ତାକୁ ଦେଖିବା ମାତ୍ରେ ଚନ୍ଦଧର ସ୍ତ୍ରୀ କହିଲା—"କିଓ ? ଟଙ୍କା କମେଇ ଆସିଗଲ ! ତମ ସାଙ୍ଗ ଗଲେ କୁଆଡ଼େ ?"

ମୁକୁନ୍ଦ ଆଶ୍ଚର୍ଯ୍ୟ ହୋଇ ଚନ୍ଦଧର ସ୍ତ୍ରୀକୁ ଗ୍ଭହିଁଲା । ପଚାରିଲା— "କଣ ହେଲା ? ଏ ପର୍ଯ୍ୟନ୍ତ ଚନ୍ଦଧର ଫେରିନାହିଁ ?"

ଚନ୍ଦଧର ସ୍ତ୍ରୀ କହିଲା— "ନାଁ । ଆଉ କ'ଣ ମୁଁ ତାଙ୍କୁ ଘରେ ଲୁଚେଇ ତୁମକୁ ପଚାରୁଛି ?"

ଏକଥା ଶୁଣିଲେ ବି ମୁକୁନ୍ଦର ବିଶ୍ୱାସ ହେଲା ନାହିଁ । ଚନ୍ଦଧର ସ୍ତ୍ରୀର ବ୍ୟବହାରରୁ ତା'ର ମନେହେଲା ସେ ମିଛ କହୁଛି । ଟଙ୍କା ଓ ଚନ୍ଦଧରର ସନ୍ଧାନ ନ ପାଇଲା ପର୍ଯ୍ୟନ୍ତ ସେ ଚନ୍ଦଧର ଘରେ ରହିବାକୁ ସ୍ଥିର କଲା । ତା' ଘରେ ରହି ସେ ତା ସ୍ତ୍ରୀର ଗତିବିଧି ଉପରେ ନଜର ରଖିଥାଏ । ଚନ୍ଦଧର ସ୍ତ୍ରୀ ବା କ'ଣ କରିବ ? ବାଧ୍ୟ ହୋଇ ସ୍ୱାମୀର ବନ୍ଧୁକୁ ଘରେ ଆଶ୍ରୟ ଦେଇଥାଏ । ସବୁଦିନ ସେ ବେଷେଇ କରିସାରି ପ୍ରଥମେ ମୁକୁନ୍ଦକୁ ଖାଇବାକୁ ଦେଇଦିଏ ।

ତା ପରେ ପାଣି ଆଣିବା ବାହାନାରେ ରୁଟି ପୋଟଳାଟିଏ ନେଇକରି ଶୁଖିଲା କୂଅ ଭିତରକୁ ପକେଇ ଦିଏ । ତା'ପରେ ଅନ୍ୟ କୂଅରୁ ପାଣି ଆଣି ଘରକୁ ଫେରେ ।

ମୁକୁନ୍ଦ ଭାବିଲା ମୋତେ ଖାଇବାକୁ ଦେଇସାରି ଚନ୍ଦ୍ରଧର ସ୍ତ୍ରୀ ସବୁଦିନେ ପାଣି ଆଣିବାକୁ କାହିଁକି ଯାଉଛି ? ଏଥିରେ ନିଶ୍ଚୟ କିଛି ରହସ୍ୟ ଅଛି ।

ଦିନେ ଚନ୍ଦ୍ରଧରର ସ୍ତ୍ରୀ ପାଣି ଆଣିବାକୁ ଯାଇଥିଲା ବେଳେ ମୁକୁନ୍ଦ ତା ପଛେ ପଛେ ଚୁପ୍ ଚୁପ୍ ଗଲା । ଦେଖିଲା, ସ୍ତ୍ରୀ ପ୍ରଥମେ ଶୁଖିଲା କୂଅ ଭିତରକୁ ପୋଟଳାଟିଏ ପକେଇ କହିଲା—'ହେଇ ରୁଟି ନିଅ ।' ତା ପରେ ସେ ଅନ୍ୟ କୂଅରୁ ପାଣି କାଢିଲା ।

ମୁକୁନ୍ଦ ଏତିକିରୁ ବୁଝିପାରିଲା, ଚନ୍ଦ୍ରଧର ଟଙ୍କାକୁ କେଉଁଠି ରଖି କୂଅ ଭିତରେ ଲୁଚିଛି ।

ତା ପରଦିନ ସେ ବାହାରୁ କିଛି ରୁଟି ଯୋଗାଡ଼ କଲା । ଶୁଖିଲା କୂଅପାଖେ ପହଞ୍ଚି ମାଇପି ସ୍ୱରରେ କହିଲା— "ହେଇଟି ରୁଟି ନିଅ । ତମେ ତ ଏଠି ଲୁଚିକରି ରହିଲ, ଏଣେ ମୋ ଅବସ୍ଥା କାଇଲି କେତେଦିନ ହେଲା ମୁକୁନ୍ଦ ଆସି ଆମ ଘରେ ଅଛନ୍ତି । ଘରେ ଯାହାଥିଲା ସବୁ ସରିଲାଣି । ଏବେ ମୁଁ କେମିତି ଘର ଚଳେଇବି ?"

ନିଜ ସ୍ତ୍ରୀ ଏକଥା କହୁଛି ଭାବି କୂଅ ଭିତରୁ ଚନ୍ଦ୍ରଧର କହିଲା, "ଆଲୋ, ତୁ କାହିଁକି ଭାବୁଛୁ ? କୋଠି ତଳେ ପରା ମୁଁ ଟଙ୍କା ପୋତିଛି । ସେଠୁ ତୋର ଯାହା ଦରକାର ନେଇ ଘର ଖର୍ଚ୍ଚ କରୁଥା ।" ମୁକୁନ୍ଦ ତ ଏତିକି ଜାଣିବାକୁ ଚାହୁଁଥିଲା । ସଙ୍ଗେ ସଙ୍ଗେ ସେ ଘରକୁ ଫେରିଆସିଲା । ଚନ୍ଦ୍ରଧର ସ୍ତ୍ରୀ ତାକୁ ଖାଇବାକୁ ଦେଇ ଯେମିତି ବାରିଆଡ଼କୁ ପାଣି ଆଣିବାକୁ ଯାଇଛି, କୋଠିତଳୁ ସେ ସବୁତକ ଟଙ୍କା ଖୋଳିନେଇ ନିଜ ଘରକୁ ଚାଲିଗଲା ।

ଏଣେ ଚନ୍ଦ୍ରଧର ସ୍ତ୍ରୀ ଶୁଖିଲା କୂଅ ଭିତରକୁ ପୋଟଳାଟି ପକାଇ

ଦେବାରୁ ଭିତରୁ ଚନ୍ଦ୍ରଧର କହିଲା— "ଏଇ ଅଳ୍ପ ସମୟ ପୂର୍ବରୁ ତ ଛୁଟି ଦେଇ ଯାଇଥିଲୁ । ପୁଣି ଆଉଥରେ କାହିଁକି ଆଣିଲୁ ?"

ସ୍ତ୍ରୀ କହିଲା—"ମୁଁ ତ ଏହା ଆଗରୁ ଏଠିକି ଛୁଟି ନେଇ ଆସିନି ।"

ଚନ୍ଦ୍ରଧର ବୁଝିପାରିଲା । ମୁକୁନ୍ଦ କୌଶଳରେ ଆସି ସେ କେଉଁଠି ଟଙ୍କା ରଖିଛୁ ବୁଝି ଚାଲିଗଲା ।

ଚନ୍ଦ୍ରଧର ପାଟିକଲା— "ଆରେ, ମୋର ସବୁ ନେଇଗଲା । ଶୀଘ୍ର ଦଉଡ଼ିଟାଏ ମୋ ପାଖକୁ ପକେଇ ମୋତେ ଏଠୁ ଉଠା ।" ଘରକୁ ଆସି ଦେଖିଲା, ମୁକୁନ୍ଦ ତାର ସବୁ ଟଙ୍କାତକ ଖୋଳିକରି ନେଇ ଚାଲିଯାଉଛି ।

ଚନ୍ଦ୍ରଧର ମୁଣ୍ଡକୁ ଦୁଇ ହାତରେ ଧରି ବସିଗଲା । ଦୀର୍ଘ ନିଶ୍ୱାସ ପକାଇ କହିଲା — "ଭଗବାନ ଏଇ ମୁକୁନ୍ଦାକୁ ମୋ ଗୁରୁରୂପେ ସଂସାରକୁ ପଠାଇଛନ୍ତି ।

(ବ୍ରଜଭୂମି — ଉ: ପ୍ରଦେଶ)



# ଭାଲୁ ବାନ୍ଦରା

ଜଙ୍ଗଲରେ ଗୋଟିଏ ଗଛରେ ବସା କରିଥାଆନ୍ତି ଗୋଟିଏ ଭାଲୁଆ ଓ ଗୋଟିଏ ମାଙ୍କଡ଼ । ମାଙ୍କଡ଼ ରହେ ଗଛ ଉପରେ, ଭାଲୁଆ ରହେ ଗଛତଳେ, ଗୋଟିଏ ଗାତରେ । ଦିନେ ମାଙ୍କଡ଼ ପାଖ ଗାଁଆକୁ ଯାଇ ଜଣଙ୍କ ଘରୁ ଲଡ଼ୁଟିଏ ଚୋରି କରି ଆଣିଥିଲା । ଗଛ ଉପରେ ସେ ତାକୁ ଖୁସିରେ ଖାଇ ବସିଲା । ଭାଲୁଆ ଗଛମୂଳେ ଶୋଇଥିଲା । ଲଡ଼ୁରୁ ଟିକିଏ ଭାଙ୍ଗିଯାଇ ତା ମୁହଁ ଉପରେ ପଡ଼ିଗଲା । ଭାଲୁଆର ନିଦ ଭାଙ୍ଗିଗଲା । ସେ ଉଠିପଡ଼ି ଜୋରରେ

ଆପଣା ଦେହକୁ ଗୃହିଁବାରୁ ମିଠା ଲଗିଲା । ଲଡ଼ୁର ଗୁଣ୍ଡ କୁଆଡୁ ଆସି ତା' ଦେହରେ ପଡ଼ିଲା ଭାବି ସେ ଏଣେ ତେଣେ ଗୃହିଁଲା । ଦେଖିଲା ମାଙ୍କଡ଼ ଗଛ ଉପରେ ବସି ଲଡ଼ୁ ଖାଉଛି ।

ବାଲୁଆ ପଗ୍ଚରିଲା—'ଆରେ ଭାଇ, ଏତେ ବଢିଆ ଲଡ଼ୁ କେଉଁଠୁ ପାଇଲୁ ? ଇଏତ ଖୁବ୍ ମିଠା ଲଗୁଛି ।'

ମାଙ୍କଡ଼ କହିଲା—'ପାଖ ଗାଁକୁ ଯାଇ ସବୁ ଜିନିଷ ମାଗି ଆଣିଲି । ସେଥିରେ ଲଡ଼ୁ ତିଆରି କରି ଖାଉଛି ।'

ବାଲୁଆ ପଗ୍ଚରିଲା—'ଗାଁରୁ କି ଜିନିଷ ଆଣି ଲଡ଼ୁ ତିଆରି କଲୁ ?'

ମାଙ୍କଡ଼ କହିଲା—'ବେଶୀ କିଛି ଜିନିଷ ଏଥିପାଇଁ ଦରକାର ନାହିଁ । କିଛି ଅଟା, କିଛି ଗୁଡ଼ ଆଉ ଅଳ୍ପ ତେଲରେ ତ ଲଡ଼ୁ ତିଆରି ହୋଇଯିବ ।'

ବାଲୁଆ ପଗ୍ଚରିଲା—'ଭାଇ, ଏଇ ଜିନିଷ ସବୁ କାହାପାଖରୁ ମିଳିବ ?'

ମାଙ୍କଡ଼ ବେପରୁଆ ଭାବରେ କହିଲା—'ଅଟା ତ ଚାଷୀଙ୍କ ଘରୁ ମିଳିବ, ଗୁଡ଼ ଗୁଡିଆ ଘରୁ, ଆଉ ତେଲ ତ ତେଲିଙ୍କ ଘରୁ ମିଳିଯିବ ।'

ବାଲୁଆ ଉତ୍ସାହର ସହିତ ପଗ୍ଚରିଲା—'କଅଣ କହି ମାଗିଲେ ଲୋକେ ଏଇ ଜିନିଷ ମୋତେ ଦେବେ ?'

ମାଙ୍କଡ଼ କହିଲା—'ଏଇଟା କୋଉ ବଡ଼ କଥାଟେ ? ଅତି ସହଜରେ ତୋତେ ଏଇ ସବୁ ମିଳିଯିବ । ଚାଷୀ ଘରକୁ ଯାଇ କହିବୁ—'ଆରେ ଚଷା-ପୁଅ ! ତୁ ମରିଯା, ତୋ ସ୍ତ୍ରୀ ମରିଯାଉ, ତୋ ପିଲାଏ ମରିଯାଆନ୍ତୁ — ତୋ ଭାଇ ବନ୍ଧୁ କୁଟୁମ୍ବ ଲୋପ ହୋଇଯାଆନ୍ତୁ—ମୋତେ କିଛି ଅଟା ଦେଇଦେ ।' ବାସ୍ ଏତିକି ଶୁଣିଲେ, ଚାଷୀ ତୋତେ ଢେର୍ ଅଟା ଦେଇ ଦେବ । ସେମିତି ଗୁଡିଆ ଓ ତେଲି ଘରକୁ ଯାଇ କହିବୁ ତ ସେମାନଙ୍କ ଘରୁ ଗୁଡ଼ ତେଲ ବି ମିଳିଯିବ । ତା'ପରେ ଲଡ଼ୁ ତିଆରି କରି ମଜାରେ ବସି ଖାଇବୁ ।'

ଲେଉ ତିଆରି କରି ଖାଇବା ଲାଗି ବିଲୁଆ ପାଣିରୁ ଲୋକ ବୋହିଲା । ସେ ସଙ୍ଗେ ସଙ୍ଗେ ଗାଁକୁ ବାହାରିଲା । ପ୍ରଥମେ ଗୃଷୀ ଘରକୁ ଗଲା । ମାଙ୍କଡ଼ ଯାହା ଶିଖାଇଥିଲା । ତାକୁ ଅବିକଳ ସେଇଆ କହିଲା । ଗୃଷୀ କହିଲା— 'ହଉ ରହ, ତୋତେ ଦଉଛି ।' ଏହା କହି ସେ ରୁପ୍ ରୁପ୍ ଘରୁ ଠେଙ୍ଗାଟିଏ ଆଣି ବିଲୁଆକୁ ପିଟିବା ଲାଗି ଗୋଡାଇଲା । ବିଲୁଆ ପ୍ରାଣ ବିକଳରେ ଧାଇଁ ପଳାଇଲା ।

ତା ପରେ ସେ ଯାଇ ଗୁଡ଼ିଆ ଘରେ ପହଞ୍ଚିଲା । ଗୃଷୀକୁ ଯାହା କହି-ଥିଲା ଗୁଡ଼ିଆକୁ ସେଇଆ କହି ଗୁଡ଼ ମାଗିଲା । ଗୁଡ଼ିଆ ରଗିଯାଇ ତା' ଉପରକୁ ଉଙ୍କାଟିଏ ଫୋପାଡ଼ିଲା । ପଡ଼ି ଉଠି ଯାଇ ତେଲି ଘରେ ପହଞ୍ଚିଲା । ତାକୁ ମଧ୍ୟ ପୂର୍ବପରି କହି ତେଲ ମାଗିଲା । ଏହାଶୁଣି ତେଲି ଘର ଭିତରକୁ ଚାଲି-ଗଲା । ବିଲୁଆ ଭାବିଲା, ଯା'ହେଉ ତେଲି ନିଶ୍ଚୟ ତେଲ ଦେବ । ନୋହିଲେ ସେ ତା କଥା ଶୁଣୁଶୁଣୁ ଘର ଭିତରକୁ ଯାଇ ନ ଥାନ୍ତା ।

ତେଲି ଘର ଭିତରକୁ ଯାଇ ତେଲ ଗରମ କରି ନେଇ ଆସିଲା ଓ ବିଲୁଆ ଉପରେ ଢାଳିଦେଲା । ବିଲୁଆର ଦେହ ପୋଡ଼ି ଫୋଟକା ହୋଇ-ଗଲା । ସେ ଉହଳ ବିକଳ ହୋଇ କାନ୍ଦି ବୋବାଇ ଜଙ୍ଗଲ ଆଡ଼କୁ ଧାଇଁ ପଳାଇଲା । ଗଛ ମୂଳକୁ ଆସି ଦେଖିଲା, ମାଙ୍କଡ଼ ଗଛ ଉପରେ ବସିଛି । ମାଙ୍କଡ଼କୁ ଦୋଷ ଦେଇ ସେ କାନ୍ଦି କୁନ୍ଥେଇ କହିଲା— 'ଆରେ ଭାଇ, ତୁ ତ ମୋତେ ଭଲ ପାଠ ଶିଖେଇଲୁ ! ମୋତେ ମାରି ଦେବାକୁ ବସିଥିଲୁ ନାଁ କଣ ?

ମାଙ୍କଡ଼ ମନେ ମନେ ହସିଲା । କହିଲା—"ତୁ ଠିକ୍ ଭାବେ ମାଗିପାରିଲୁ ନାହିଁ । ମୋତେ ଦୋଷ ଦେଉଛୁ କାହିଁକି ? ହଉ, ଯାହା ହେବାର ତ ହେଲାଣି । ଏଥର ନଈକୂଳକୁ ଯାଆ, ସେଠି ଲୁଣିଆ ମାଟି ଦେଖି ତା'ଉପରେ ଗଡ଼ିଯିବୁ । ତା'ହେଲେ ତୋ ଦେହରେ ଘାଆ ସବୁ ଶୀଘ୍ର ଭଲ ହୋଇଯିବ ।'

ମାଙ୍କଡ଼ ଯାହା ବତାଇଲା ବିଲୁଆ ସେଇଆ କରିବାକୁ ନଈକୂଳକୁ ଗଲା । ଲୁଣି ମାଟି ଉପରେ ଗଡ଼ିବାରୁ ଘାଆରେ ଲୁଣ ସବୁ ଭେଦିଗଲା ।

ବାଳୁଆର ଅବସ୍ଥା କହିଲେ ନ ସରେ । ଘାଆ ସବୁ ପଚିଯିବାରୁ ସେ ଛଟପଟ ହୋଇ ଅଳ୍ପଦିନ ପରେ ମରିଗଲା ।

(ଅଯୋଧ୍ୟା)



# ସୁନେଇ ଗାଈ

ଗୋଟିଏ ଦେଶରେ ଜଣେ ରଜା ଥିଲେ । ତାଙ୍କର ଗୋଟିଏ ଟୋକି ଝିଅ । ଦେଖିବାକୁ ଖୁବ୍ ସୁନ୍ଦର । ରଜାରାଣୀ ଝିଅକୁ ଖୁବ୍ ଭଲ ପାଉଥିଲେ । ଝିଅଟି ସାନ ହୋଇଥାଏ, ରାଣୀଙ୍କ ଦେହ ଖରାପ ହେଲା । ସମସ୍ତେ ତାଙ୍କ ବଞ୍ଚିବା ଆଶା ଛାଡିଦେଲେ । ରାଣୀଙ୍କ ମରିବା ଦିନ ପାଖେଇ ଆସିଲା । ସେ ଦିନେ ରଜାଙ୍କୁ କହିଲେ—"ମୁଁ ମରିଗଲେ ପରେ ତୁମେ ଯଦି ପୁଣି ବାହାହେବ, ସଉତୁଣୀ ଯୋଗୁଁ ମୋ ଝିଅଟା ନିଶ୍ଚେ ଦୁଃଖ ପାଇବ ।"

ରଜା କହିଲେ—"ରାଣୀ ! ତୁମେ କାହିଁକି ଏହା ଭାବୁଛ ? ମୁଁ କାହିଁକି ବା' ଆଉଥରେ ବାହାହେବି ? ତୁମ ଝିଅ କ'ଣ ମୋ ଝିଅ ନୁହେଁ ? ମୁଁ ତାକୁ ନିଶ୍ଚେ ଖୁବ୍ ହେ'ପାଜତରେ ପାଳିବି ।"

ମାତ୍ର ରାଣୀଙ୍କ ମନ ମାନିଲାନାହିଁ । ରଜା ଗୋଟିଏ ଗାଈ ପାଳିଥିଲେ । ତା ନାଁ ସୁନା । ରାଣୀ ସେଇ ଗାଈ ପାଖକୁ ଯାଇ ତାକୁ ବହୁତ ନେହୁରା ହୋଇ କହିଲେ—"ସୁନାଲୋ ! ମୁଁ ଆଉ ବଞ୍ଚିବି ନାହିଁ । ମୋ ଝିଅ ତୋତେ ଲାଗିଲା । ମୁଁ ମଲାପରେ ତା' ଭଲମନ୍ଦ ବୁଝିବୁ ।"

ଗାଈ କହିଲା—"ହଉ ।"

କେତେଦିନ ପରେ ରାଣୀ ସବୁଦିନ ପାଇଁ ଆଖି ମୁଦିଲେ । ରଜା ବହୁତ ଦୁଃଖ କଲେ । ସମୟ ଗଡ଼ି ଚାଲିଲା । କ୍ରମେ ରଜାଙ୍କ ଦୁଃଖ କମି ଆସିଲା । ରାଣୀଙ୍କୁ ସେ ଯାହା କହିଥିଲେ ତାହା ଭୁଲିଗଲେ । ଲୋକେ ତାଙ୍କୁ ବାହା ହେବାକୁ କହିଲାରୁ, ସେ ପୁଣି ଆଉଥରେ ବାହାହେଲେ । ନୂଆରାଣୀ ଆସିଲେ । ତାଙ୍କ ଯୋଗୁଁ କେତେ ନୂଆ କଥା ହେଲା । ରଜା ଏଣିକି ନୂଆ ରାଣୀଙ୍କ କଥାରେ ଚାଲିଲେ । କିଛିଦିନ ପରେ ନୂଆ ରାଣୀଙ୍କର ଝିଅଟିଏ ହେଲା । ମାତ୍ର ଝିଅଟି ଥିଲା ଦେଖିବାକୁ ଅସୁନ୍ଦରୀ । ନୂଆରାଣୀ ସେଥିପାଇଁ ସାଉନ୍ତୁଣୀର ଝିଅ ଉପରେ ଚିଡ଼ିବାକୁ ଆରମ୍ଭ କଲେ । ଦିନେ ସେ କହିଲେ—"ତୁ କାଲିଠାରୁ ଗାଈ ଜଗିବାକୁ ଯିବୁ ।" ଝିଅ ମାଆ କଥା ମାନି ଗାଈ ବାଛୁରୀଙ୍କୁ ନେଇ ବଣକୁ ଗଲା । ସଂଧ୍ୟା ହେବାରୁ ଫେରିଲା । ମାତ୍ର ମାଆ ତାକୁ କିଛି ଖାଇବାକୁ ଦେଲେ ନାହିଁ ।

ତା' ପରଦିନ ଝିଅ ଗାଈ ନେଇ ବଣକୁ ଗଲା । ବଣରେ ଭୋକ ହେଲାରୁ ଗାଈକୁ କହିଲା—"ଗାଈ ମା ! ମୋତେ ଭୋକ କରୁଛି ।" ଗାଈ କହିଲା—"ତୁ ମୋ ଶରୀରରେ ମୁହଁ ଲଗାଇ ଯେତେ ପାରୁଛୁ ଦୁଧ ପି ।" ଝିଅ ସେଇଆ କଲା । ଏମିତି ସବୁଦିନ ଗାଈଠାରୁ ଦୁଧ ପିଇ ଝିଅ ଖୁସିରେ ଥାଏ ।

କେତେଦିନ ପରେ ନୂଆରାଣୀ ଦେଖିଲେ, ସାଉନ୍ତୁଣୀ ଝିଅକୁ କିଛି ଖାଇବାକୁ ନ ଦେଲେ ବି ସେ ଗୋଲଗାଲ ହୋଇଯାଉଛି, ମାତ୍ର ନିଜ ଝିଅକୁ ଯେତେ ଖାଇବାକୁ ଦେଲେ ବି ସେ ଦୁର୍ବଳ ଓ ପତଳା ହୋଇଯାଉଛି । ସାଉନ୍ତୁଣୀ ଝିଅ ଭୋକ ବେଳେ ବଣରେ କ'ଣ କରୁଛି, ତାହା ବୁଝିବା ଲାଗି ଦିନେ ସେ ନିଜ ଝିଅକୁ ତା ସାଙ୍ଗରେ ଗାଈ ଚରାଇବା ଲାଗି ବଣକୁ ପଠାଇଲେ । ସଞ୍ଜବେଳକୁ ଦୁଇଭଉଣୀ ଫେରିଆସିଲେ । ଝିଅ ଆସି ମାଆକୁ କହିଲା—"ଆଲୋ ବୋଉ ! ଅପା ବଣରେ ଗୋଟାଏ ଗାଈଠାରୁ ଦୁଧ ପିଉଛି । "ଭୋକ ଲାଗୁଛି କହିବାରୁ ସେଇ ଗାଈଟା ପାହିଲା ଠିଆ ହୋଇଯାଉଛି । ଅପା ଚୁଁ ଚୁଁ କରି ଦୁଧ ପିଉଛି ।"

ରାଣୀ ଏହାଶୁଣି ଗମ୍ଭୀର ଘରେ ରୁଷିକରି ଶୋଇଲା । ଯିଏ ଯେତେ ଡାକିଲେ ଉଠିଲେ ନାହିଁ । ଶେଷରେ ରଜା ଆସି ବହୁତ ବୁଝାଇବାରୁ, ରାଣୀ

କହିଲେ—"ମୋ ମୁଣ୍ଡ ବଥାଉଛି । ତୁମ ଗାଈକୁ ମାରି ତା ଚର୍ବି ମୋ ମୁଣ୍ଡରେ ଘଷିଲେ ଏହା ଭଲ ହେବ ।"

ରଜା କହିଲେ—"ଆଚ୍ଛା ସେଇଆ ହେବ । ତୁମେ ଏବେ ଉଠି ଖିଆ-ପିଆ କର ।" ବଡ଼ଝିଅ ଏ କଥା ଶୁଣି ଗାଈ ପାଖକୁ ଦୌଡ଼ି ଗଲା । ଗାଈର ଗଳାକୁ ଧରି କାନ୍ଦି କାନ୍ଦି ସବୁ କଥା କହିଲା । ଗାଈ କହିଲା — "ହଉ, ତୁ ମନ ଦୁଃଖ କରନା, ମୋତେ ସେମାନେ ମାରି ଯେଉଁଠି ମୋ ହାଡ଼ ପୋତିଥିବେ, ମୁଁ ସେଇଠି ଆମ୍ବ ଗଛଟିଏ ହୋଇ ରହିବି । ଭୋକ ହେଲେ କେବଳ ତୋତେ ଆମ୍ବ ଖାଇବାକୁ ଦେବି ।"

ଗାଈକୁ ମରାଗଲା । ତା ଚର୍ବି ଲଗାଇବାରୁ ରାଣୀଙ୍କ ମିଛ ମୁଣ୍ଡବଥା ବି ଭଲ ହୋଇଗଲା । ଯେଉଁଠି ଗାଈର ହାଡ଼ ପୋତା ହୋଇଥିଲା, ସେଠି ମସ୍ତବଡ଼ ଆମ୍ବ ଗଛଟିଏ ହୋଇଗଲା । ଝିଅକୁ ଭୋକ ହେଲେ ସେ ସେଇ ଗଛ ପାଖକୁ ଯିବା ମାତ୍ରେ ସେଥିରୁ ଦଶ ପନ୍ଦରଟି ଆମ୍ବ ଖସି ପଡ଼େ । ସେ ତାକୁ ଖାଇ ଭୋକ ମାରେ । ଏମିତି କେତେଦିନ ଚାଲିଗଲା । ସାନରାଣୀ ନିଜ ଝିଅକୁ ଲଗେଇ ଧନେ ଏ କଥା ବି ଜାଣିପାରିଲେ । ସେଇଠୁ ସେ ପୂର୍ବ ପରି ଯାଇ ନ ଖାଇ ନ ପିଇ ରୁଷିକରି ଶୋଇଲେ । ରଜା ଆସି ଡାକିବାରୁ କହିଲେ—"ଆଗେ ସେଇ ଆମ୍ବ ଗଛକୁ ହାଣିଦିଅ, ତେବେ ଯାଇ ମୁଁ ଖାଇବି ।"

ବଡ଼ଝିଅ ଦୌଡ଼ିଯାଇ ଆମ୍ବ ଗଛକୁ କହିଲା,"ତତେ ତ ହାଣିଦେବେ । ମୁଁ ଆଉ କ'ଣ ଖାଇ ବଞ୍ଚିବି ?" ଆମ୍ବଗଛ କହିଲା—"ତୁ କିଛି ଚିନ୍ତା କରନା । ଏଥର ମୁଁ ଗୋଟାଏ ପୋଖରୀ ହୋଇଯିବି । ତାକୁ ଆଉ କେହି ଶୁଖେଇ ପାରିବେ ନାହିଁ । ତୋର ଖାଇବାରେ ଆଉ କିଛି କଷ୍ଟ ହେବ-ନାହିଁ ।"

ଆମ୍ବଗଛ କଟା ହେଲାପରେ ସତକୁ ସତ ସେଠାରେ ଗୋଟାଏ ପୋଖରୀ ହୋଇଗଲା । ଝିଅକୁ ଭୋକ ହେଲେ ସେ ପୋଖରୀକୁ ଯିବା ମାତ୍ରେ ତଟକା ମାଛଭଜା ତା' ପାଖରେ ଆସି ଥୁଆ ହୋଇଯାଏ । ସେ ତାକୁ ଖାଇ

ନଖିକ ମାରେ । କେତେଦିନ ପରେ ରାଣୀ ଏକଥା ବି ଜାଣି ପାରିଲେ । ପୁଣି ଚୁଷିକରି ଶୋଇଲେ । ରଜାଙ୍କୁ କହିଲେ—'ଏଇ ପୋଖରୀକୁ ଶୁଖେଇ ଦିଅ ।'

ରଜା କହିଲେ—"ରାଣୀ, ମୁଁ ତୁମ କଥା ମାନି ଦୁଧ ଦେଉଥିବା ଗାଈକୁ ମରେଇ ଦେଲି, ଫଳନ୍ତା ଆମ୍ବ ଗଛକୁ ହାଣେଇଲି, ମାତ୍ର ଏବେ ପୋଖରୀକୁ କିପରି ଶୁଖେଇବି ? ଏହା ତ ହୋଇ ପାରିବ ନାହିଁ ।" ରାଣୀ ଆଉ କ'ଣ କରିବେ ? ଭାବିଲେ, କୌଣସି ମତେ ଝିଅଟା ଏ ଘରୁ ଗଲେ ରକ୍ଷା । ତାକୁ ବାହା କରି ଦେଲେ କଣ୍ଟାଯିବ । ରଜାଙ୍କୁ କହିଲେ— "ଝିଅ ବଡ଼ ହୋଇ-ଗଲେଣି । ସେମାନଙ୍କ ପାଇଁ ବରପାତ୍ର ଖୋଜ ।"

ବରପାତ୍ର ଖୋଜାଗଲା । ସଉତୁଣୀ ଝିଅ ପାଇଁ ବନ୍ଧୁ କୁଟୁମ୍ବୀ ରଜା ଘରଟିଏ ଯୋଗାଡ଼ ହେଲା । ସେଠି ସବୁଦିନେ ଅଭାବ । ଦି'ବେଳା ପେଟ-ପୂରା ଖାଇବାକୁ ବି ମିଳେନା । ଆଉ ଜଣେ ଭଲ ଚଳନ୍ତ ରଜାପୁଅ ସଙ୍ଗେ ସାନଝିଅର ବାହାଘର ଠିକ୍ ହେଲା ।

ବାହା ହେବା ପୂର୍ବରୁ ବଡ଼ଝିଅ ପୋଖରୀକୁ ଯାଇ କହିଲା —"ମୁଁ ତ ଏଠୁ ଚାଲିଯିବି । ଏଥର ମୋର କ'ଣ ହେବ ? ଆଉ କାହାକୁ ବା' ମୋ ଦୁଃଖ କହିବି ?"

ପୋଖରୀ କହିଲା—"ଝିଅ, ତୁ କିଛି ଭାବନା । ମୁଁ ତୋତେ ଦୁଇଟି ଡ଼ବା ଦେଉଛି । ଗୋଟିକୁ ଖୋଲିଲେ ଭଲକି ଭଲ ଗହଣା ବାହାରିବ । ଅନ୍ୟଟିକୁ ଖୋଲିବାମାତ୍ରେ ସେଥିରୁ ଛପନ ପ୍ରକାର ତରକାରି ବାହାରିବ ।"

ଦୁଇଝିଅଙ୍କର ବାହାଘର ହୋଇଗଲା ଦୁଇଟି ରଜାପୁଅଙ୍କ ସାଥିରେ । ରାଣୀ ନିଜ ଝିଅକୁ ଅନେକ ଯଉତୁକ ଦେଲେ; ମାତ୍ର ସଉତୁଣୀ ଝିଅକୁ ଲୁଗା-ପଟା ବା ଗହଣାଗାଣ୍ଠି କିଛି ହେଲେ ଦେଲେ ନାହିଁ । ମଇଳା କୋଚଟ ଲୁଗା ପିନ୍ଧେଇ ବିଦା କରିଦେଲେ । ଝିଅ ଶ୍ୱଶୁର ଘରକୁ ଗଲା । ଶାଶୁ ଶ୍ୱଶୁର ଏପରି ହୀନମାନି ବୋହୂକୁ ଦେଖି ମନଦୁଃଖ କଲେ । ବୋହୂ ଗାଧେଇ କରି-ବାକୁ ଗଲା । ସେ ସାଥିରେ ନେଇଥିବା ଡ଼ବାଟି ଖୋଲିବାରୁ ସେଥିରୁ ନାନା

ଜାଉକା ତରକାରୀ ବାହାର୍ ଆସିଲା । ଘରର ସମସ୍ତ ଖାଇପିଇ ବୋହୂକୁ ପ୍ରଶଂସା କରିବାକୁ ଲାଗିଲେ । ବୋହୂ ଯୋଗୁଁ ଅଳ୍ପଦିନ ମଧ୍ୟରେ ଶ୍ୱଶୁର ଘରର ଅବସ୍ଥା ବଦଳିଗଲା । ସମସ୍ତେ ଭଲରେ ଚଳିଲେ ।

ଏଣେ ଅସୁନ୍ଦରୀ ରଜା ଝିଅ ଶ୍ୱଶୁର ଘରେ ପାଦ ଦେଲା ପରେ ସେମାନଙ୍କ ଅବସ୍ଥା କ୍ରମେ ଖରାପ ହେଲା । ସମସ୍ତେ କହିଲେ—‘ବୋହୂଟା ଅଲକ୍ଷଣୀ ।’ କେତେଦିନ ପରେ ରାଣୀ ରଜାଙ୍କୁ କହିଲେ—“ଦୁଇଝିଅ ଏବେ କିପରି ଅଛନ୍ତି ଯାଇ ସନ୍ଧାନ ନେଇ ଆସ ।” ରଜା ବଡ଼ଝିଅ ଘରକୁ ଯାଇ ବହୁତ ଆଦର ସତ୍କାର ପାଇଲେ । ସାନଝିଅ ଘରକୁ ଯାଇ ସମସ୍ତଙ୍କଠାରୁ କେବଳ ଛି-ଛି ଶୁଣିଲେ । କେତେଦିନ ପରେ ଦୁଇଝିଅ ବାପ ଘରକୁ ଆସିଲେ । ସାନଝିଅ କାନ୍ଦି କାନ୍ଦି ମାଆକୁ କହିଲା—“ବୋଉ,ମୋତେ ଆଚ୍ଛା ଭଲ ଘରେ ଦେଇଛୁ । ସେଠି ମୋତେ ଭଲକରି ଗଣ୍ଡିଏ ଖାଇବାକୁ ମଧ୍ୟ ମିଳୁନି ।” ବଡ଼ ଝିଅ କହିଲା—“ମୋ ଶ୍ୱଶୁର ଘର ବଡ଼ ସୁଖ— ବାସିଆ; କେଉଁଥିରେ ସେମାନଙ୍କର ଅଭାବ ନାହିଁ ।”

ବଡ଼ ଝିଅର କଥା ରାଣୀ ଆଉ ସହିପାରିଲେ ନାହିଁ । ତାଙ୍କ ମନରେ ଗୋଟାଏ ଦୁଷ୍ଟ ବୁଦ୍ଧି ଖେଳିଗଲା । ଦିନେ ସେ ସଉତୁଣୀ ଝିଅକୁ ଡାକି କହିଲେ “ଆଲୋ ଝିଅ, ଆ ମୁଁ ତୋ ମୁଣ୍ଡ ବାନ୍ଧିଦେବି ।” ମାଆଙ୍କଠାରୁ ଏପରି ଆଦର କଥା ଶୁଣି, ବଡ଼ଝିଅ ଆଶ୍ଚର୍ଯ୍ୟ ହୋଇଗଲା । ରାଣୀ ବଡ଼ଝିଅର ମୁଣ୍ଡବାଳ କୁଣ୍ଡାଇଲାବେଳେ କୁହୁକ କୋଳମଞ୍ଜି ଟିଏ ତା’ ବାଳ ମଝିରେ ରଖିଦେଲେ । ଗୁହଁ ଗୁହଁ ସେ ଗୋଟିଏ ଚଢ଼େଇ ହୋଇ ଉପରକୁ ଉଡ଼ିଗଲା ।

ସଉତୁଣୀ ଝିଅକୁ ନେବାଲାଗି ତା’ ଶ୍ୱଶୁର ଘରୁ ଲୋକ ଆସିଲେ । ରାଣୀ ଆପଣା ଝିଅକୁ ସେମାନଙ୍କ ସଙ୍ଗେ ପଠାଇ ଦେଲେ । ସେଠିକାର ସମସ୍ତ ବୋହୂର ରୂପ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମାଆ ଶିଖେଇବା ଅନୁସାରେ ଝିଅ କହିଲା—“ମୋତେ ବସନ୍ତ ହୋଇଥିବାରୁ, ମୋ ମୁହଁଟା ଏପରି ଅସୁନ୍ଦର ହୋଇଯାଇଛି । ସମସ୍ତେ ଏହା ସତ ବୋଲି ମାନିଗଲେ । ମାଆର ସବୁ କାରସାଦି ଝିଅକୁ ଜଣାଥାଏ ।

ଏଣେ ଚଢ଼େଇ ପାଲଟି ଯାଇଥିବା ବଡ଼ ଝିଅ, ଉଡ଼ ଉଡ଼ ଆପଣା ଶ୍ୱଶୁର ଘର ଗାଆଁକୁ ଆସିଲା । ସବୁଦିନ ରାତିରେ ସେ ସେଇ ଗାଁର ଧୋବା ଘରକୁ ଯାଏ । ତାକୁ ପଚାରେ "ତମେ ଶୋଇଛ ନା ଚେଇଁଛ ?" ଧୋବା କହେ—"ଚେଇଁଛି ।"

ଚଢ଼େଇ ପଚାରେ—"ପିଲାଏ ଖାଇଛନ୍ତି ?"

ଧୋବା କହେ—"ହଁ ଖାଇଛନ୍ତି ।"

ସେ ଏମିତି ଘରର ସବୁକଥା ବୁଝେ । ସେ ହସିଲାବେଳେ ତା ଥଣ୍ଟରୁ ନାଲିରଙ୍ଗ ସବୁ ଝରିପଡ଼େ । ଧୋବାଘର ଲୁଗାପଟାରେ ରଙ୍ଗ ଲାଗିଯାଏ । କାନ୍ଦିଲେ ସବୁ ମୁକୁତା ସବୁ ଝରିପଡେ । ରଜାଘର ଲୁଗାସବୁ ରଙ୍ଗ ହୋଇ-ଯିବାରୁ ଦିନେ ରଜା ପଚାରିଲେ—"ହଇରେ ଆମ ଲୁଗାରେ ରଙ୍ଗ ଲାଗୁଛି କପରି ?" ଧୋବା କହିଲା—"ହଜୁର ସବୁଦିନେ ଗୋଟାଏ ଚଢ଼େଇ ଆସି ଏମିତି କରିଦେଇ ଯାଉଛି ।"

ରଜା ଆଶ୍ଚର୍ଯ୍ୟ ହୋଇ କହିଲେ—"ଆଚ୍ଛା, ଏତ ବଡ଼ ଅଦ୍ଭୁତ କଥା । ମୁଁ ନିଜେ ଯାଇ ସେହି ବିଚିତ୍ର ଚଢ଼େଇଟିକୁ ଦେଖିବି ।" ଚଢ଼େଇଟା କଥା କହୁଛି ଶୁଣି ରଜା ଖୁସିହୋଇ ତାକୁ ଧରିବାକୁ ଚାହିଁଲେ । ଡ଼ାକିବା ମାତ୍ରେ ଚଢ଼େଇଟା ବି' ରଜାଙ୍କ ହାତକୁ ଆସିଲା । ରଜା ତାକୁ ପାଳିବା ଲାଗି ନିଜ ଘରକୁ ନେଇ ଆସିଲେ । ଅସୁନ୍ଦରୀ ରାଣୀ ଚଢେଇଟାକୁ ଦେଖି ଚିହ୍ନିପାରିଲା । ସେ ତାକୁ ମାରିଦେବାକୁ ପାଞ୍ଚୁଥାଏ, ମାତ୍ର ରଜା ସବୁବେଳେ ତାକୁ ନିଜପାଖରେ ରଖିଥାନ୍ତି, ଏଣୁ ସେ ତା' କରିପାରୁ ନଥାଏ ।

ଦିନେ ଯୋଗକୁ ରାଣୀକୁ ସୁଯୋଗ ମିଳିଗଲା । ସେଦିନ ରଜା ଶିକାର କରିବାକୁ ଯାଇଥିଲେ । ଏତିକବେଳେ ବର୍ଷା ହେଲା । ଅସୁନ୍ଦରୀ ରାଣୀ ପଞ୍ଜୁରୀ-ଟିକୁ ଘରୁଆଣି ଅଗଣାରେ ରଖିଦେଲା । ଚଢ଼େଇଟି ରାତିସାରା ବରଷା ପାଣିରେ ଓଦାହେଲା । ସକାଳେ ରଜା ଆସି ଚଢ଼େଇର ଅବସ୍ଥା ଦେଖି ଖୁବ୍ ଦୁଃଖକଲେ । ତା ମୁଣ୍ଡକୁ ଆଦରରେ ଆଉଁସିଲେ । ହଠାତ୍ ତାଙ୍କର ଦୃଷ୍ଟି

ପଡ଼ିଲା ଚଢ଼େଇ ମୁଣ୍ଡରେ କୋଳି ମଞ୍ଜିଟିଏ ଲାଗିଛି । ରଜା ସେଇଟିକୁ କାଢ଼ି-ଦେଲେ । ମଞ୍ଜିଟି ଖସି ପଡ଼ିବାରୁ ଚଢ଼େଇଟିର ରୂପ କୁଆଡ଼େ ଉଭେଇଗଲା । ରଜା ଦେଖିଲେ । ପୂର୍ବ ରାଣୀର ଝିଅ ତାଙ୍କ ଆଗରେ ଠିଆ ହୋଇଛି । ଝିଅ ରଜାଙ୍କୁ ସବୁକଥା କହିଲେ ।

ରଜା ରାଗରେ ଗୋଟାଏ ସିନ୍ଦୁକରେ ଅସୁନ୍ଦରୀ ରାଣୀକୁ ପୂରାଇ ତାକୁ ତା' ଝିଅ ପାଖକୁ ପଠାଇଦେଲେ । ରାଣୀ ତ ସଉତୁଣୀ ଝିଅକୁ ବାହାବେଳେ କିଛି ଦେଇ ନଥିଲେ ? ଏବେ ତା' ଶାଶୁ ଘର ସିନ୍ଦୁକଟି ପାଇ ଖୁବ୍ ଖୁସି ହୋଇଗଲେ । ଯେମିତି ସିନ୍ଦୁକଟି ଖୋଲିଦେଲେ, ଦେଖିଲେ, ତାଙ୍କ ସମୁଦୁଣୀ ମରିକରି ଶୋଇଛି । ଯେମିତି କାମକୁ ସେମିତି ଫଳ ।

( ଅଯୋଧ୍ୟା )



## କୃପଣ ବାଲୁ ସାହା

ବାଲୁ ସାହା ଲୋକଟା ଅତି କୃପଣ । ନିଜପାଇଁ ବା ନିଜ ଘର ଲୋକଙ୍କ ପାଇଁ ପଇସାଟିଏ ବି ସେ ଖର୍ଚ୍ଚ କରିବାକୁ ଚାହୁଁ ନଥାଏ । ଦିନେ ସେ ଯାଉଁ ଯାଉଁ ଦେଖିଲା, ଖଜୁରି ଗଛରେ କାନ୍ଦିଏ କୋଳି ପାଚି ନାଲି ଟହଟହ ଦିଶୁଛି । ଖଜୁରି କୋଳିକୁ ସେ ଭାରି ଭଲପାଏ । ପୁଣି ବିନା ପଇସାରେ ଗୁଡ଼ାଏ କୋଳି ମିଳିଯିବ । ଏଇ ଆଶାରେ ସେ ଝଟପଟ ଗଛମୂଳେ ବସିପଡ଼ିଲା, ଭାବିଲା, କିପରି ସେ କୋଳି କାନ୍ଦିକ ଗଛରୁ ପାରିବ । କାହାକୁ ଗଛରେ ଚଢ଼େଇଲେ ତାକୁ ନିଶ୍ଚେ ପଇସା ଦେବାକୁ ପଡ଼ିବ । ଏଣୁ ସେ ଗଛରେ ଚଢ଼ି କୋଳି ତୋଳିଦେବାଲାଗି କାହାକୁ କହିବାକୁ ଚାହୁଁ ନଥିଲା । ଶେଷରେ ସେ ନିଜେ ଗଛରେ ଚଢ଼ିବାକୁ ସ୍ଥିର କଲା ।

ପର୍ବନ୍ତୁ ସେ କେବେ ଖଜୁରି ଗଛରେ ଚଡି ନାହିଁ । ତଥାପି କୋଳ ଲୋଭରେ କୌଣସିମତେ ଖଜୁରିଗଛ ଅଗଯାଏ ଚଢିଗଲା; ବିଳମ୍ବ ନକରି ଗୁଡ଼ାଏ ପାଚିଲା ଦରପାଚିଲା କୋଳ ତୋଳି ପକାଇଲା । ମାତ୍ର ଏହାପରେ ତଳକୁ ଅନାଇ ଦେବାମାତ୍ରେ ତା'ର ତାଳୁକ ଶୁଖିଗଲା । ଓଃ, ସେ ଅଗ୍ନି କେତେ ଉପରେ । ଏତେ ଉପରୁ ପଡ଼ିଗଲେ ସେ ନିଶ୍ଚୟ ମରିଯିବ, ଭୟରେ ସେ ଥରିବାକୁ ଲାଗିଲା ।

ଏତେ ଉପରେ କିଏ ବା ତାକୁ ସାହାଯ୍ୟ କରିପାରିବ ! ତେଣୁ ଈଶ୍ୱରଙ୍କୁ ଡାକିହୋଇ ପ୍ରାର୍ଥନା କଲା—"ହେ ଭଗବାନ ! ମୋତେ ଏଠୁ ରକ୍ଷାକର । ମୁଁ ଯେପରି ନିରାପଦରେ ତଳକୁ ଓହ୍ଲାଇଯାଏ । ଆପଣଙ୍କ ସନ୍ତୋଷ ଲାଗି ମୁଁ ହଜାରେ ବ୍ରାହ୍ମଣଙ୍କୁ ଖାଇବାକୁ ଦେବି ।" ଏପରି ସଂକଳ୍ପ କରିବାରୁ ତା' ମନରେ କିଛି ସାହସ ଜନ୍ମିଲା । ଧୀରେ ଧୀରେ ସେ ଗଛର ତଳକୁ ଓହ୍ଲାଇ-ବାକୁ ଆରମ୍ଭକଲା । ଗଛ ଅଧାରେ ପହଞ୍ଚି ସେ ପୁଣି ତଳକୁ ଅନାଇଲା, ଗଛ ଆଗରୁ ତଳଟା ଯେତେ ବିପଦ-ଜନକ ମନେ ହେଉଥିଲା, ତାହା ଆଉ ସେପରି ଦେଖାଗଲାନାହିଁ । ସେ ଗୋଟିଏ ଦୀର୍ଘଶ୍ୱାସ ପକାଇ ମନେ ମନେ ଭାବିଲା, ସେ ଯେଉଁ ମାନସିକ କରିଛି,ତାକୁ ପାଳିବାକୁ ଗଲେ ବହୁତ ଖର୍ଚ୍ଚାନ୍ତ ହେବାକୁ ପଡ଼ିବ । ବର୍ତ୍ତମାନ ଅବସ୍ଥାରେ ତା'ପକ୍ଷେ ଏତେ ବ୍ରାହ୍ମଣଙ୍କୁ ଖାଇବାକୁ ଦେବାଟା ସମ୍ଭବ ହେବ ନାହିଁ । ପାଞ୍ଚ ଶହ ବ୍ରାହ୍ମଣଙ୍କୁ ଖାଇବାକୁ ଦେଇ ଦେଲେ ଭଗବାନ୍ ନିଶ୍ଚୟ ସନ୍ତୁଷ୍ଟ ହୋଇଯିବେ ।

ଏହାପରେ ସେ ଗଛ ଅଧାରୁ ପୁଣି କିଛିବାଟ ତଳକୁ ଓହ୍ଲାଇ ଆସିଲା ସେଠାକୁ ଆସି ଭାବିଲା, ପାଞ୍ଚ ଶହଙ୍କୁ ଖାଇବାକୁ ଦେବାଟା ବହୁତ ହୋଇ-ଯାଉଛି । ଏତେ ବ୍ରାହ୍ମଣଙ୍କୁ ନ ଖୁଆଇ ଅଳ୍ପ କେତେ ଜଣଙ୍କୁ ଖୁଆଇଲେ ବି ଭଗବାନ ସନ୍ତୁଷ୍ଟ ହୋଇଯିବେ ।

ଏହିପରି ସେ ଯେତେ ତଳକୁ ତଳକୁ ଆସୁଥାଏ, ସେତେ ଅଳ୍ପ ବ୍ରାହ୍ମଣଙ୍କୁ ଖୁଆଇବ ବୋଲି ମନେ ମନେ ଠିକ୍ କରୁଥାଏ ।

ଶେଷରେ ସେ ତଳକୁ ପହଞ୍ଚିଲାବେଳକୁ ତା'ର ଦାନର ପରିମାଣ କେତେ

କମିଯାଇଥାଏ । ମାତ୍ର ଗୋଟିଏ ବ୍ରାହ୍ମଣଙ୍କୁ ଖୁଆଇବାକୁ ସେ ମନେ ମନେ ସ୍ଥିର କରିଥାଏ ।

ଏପରି ନିଷ୍ପତ୍ତି କରି ବାଲୁ ସାହା ଘରକୁ ବାହାରିଲା । ଗୋଟିଏ ବ୍ରାହ୍ମଣକୁ ଖାଇବାକୁ ଦେଲେ କେତେଖର୍ଚ୍ଚ ହେବ ସେ ସେଇକଥା ବାଟଯାକ ଭାବୁଥାଏ । ତା' ପୁଣି କିପରି କମ୍ ଖର୍ଚ୍ଚରେ ହୋଇଯିବ, ଏହାହିଁ ଥିଲା ତାର ଚିନ୍ତାର ବିଷୟ । ଭାବି ଭାବି ସେ ଠିକ୍ କଲା, ଖର୍ଚ୍ଚ କମ୍ ହେବାର ସବୁଠାରୁ ସୁବିଧା ଉପାୟ ହେଉଛି, ସବୁଠାରୁ କମ୍ ଖାଉଥିବା ବ୍ରାହ୍ମଣଟିଏ ଖୋଜି ବାହାର କରିବା ତା'ପର ଦିନ ସେହିପରି ଲୋକଟିଏ ଖୋଜିବାକୁ ସେ ବାହାରି ପଡ଼ିଲା । ଗାଁ ସାରା ତନ୍ନ ତନ୍ନ କରି ଖୋଜିଲା । ଶେଷରେ ଭଜନ ଦାସ ବୋଲି ଗୋଟିଏ ବ୍ରାହ୍ମଣଙ୍କୁ ଠିକ୍ କଲା । ଲୋକଟି ଅଳ୍ପ ଖାଏ ବୋଲି ସମସ୍ତେ କହିଲେ । ସେ ମଧ୍ୟ ସେବିଷୟ ଆଗରୁ ଜାଣିଥିଲା । ସେ ଖୁସିରେ ଯାଇ ଭଜନ ଦାସଙ୍କୁ ଖାଇବାକୁ ନିମନ୍ତ୍ରଣ କଲା । ଭଜନ ଦାସ ବେଶ୍ ଚଲାକ୍ ଓ ବୁଦ୍ଧିମାନ୍ । ବାଲୁ ସାହା ଖାଇବାକୁ ନିମନ୍ତ୍ରଣ କରିବାରୁ ସେ ଆନନ୍ଦରେ ରାଜି ହୋଇଗଲା ।

ବାଲୁ ସାହା ଘରକୁ ଫେରି ସ୍ତ୍ରୀକୁ ନିଜ ସଂକଳ୍ପ ବିଷୟ ବୁଝାଇଦେଇ କହିଲା—"ଆସନ୍ତା କାଲି ମୁଁ ଭଜନ ଦାସଙ୍କୁ ଆମ ଘରେ ଆସି ଖାଇବାକୁ ନିମନ୍ତ୍ରଣ କରିଆସିଛି । ବିପଦରେ ପଡ଼ି ସଂକଳ୍ପ କରିଥିଲି । ଏଣୁ ଠାକୁରଙ୍କୁ ସନ୍ତୁଷ୍ଟ କରିବା ଲାଗି ଆମକୁ କିଛି ଦାନ କରିବାକୁ ହେବ; ମାତ୍ର ତା ଯେତେ କମ୍ ରେ ହୋଇପାରେ ତାହା ଦେଖିବା କଥା ।"

ପରଦିନ ହାଟପାଳି । ବ୍ରାହ୍ମଣଙ୍କୁ ଖୋଇବାରେ ଯାହା ଖର୍ଚ୍ଚ ହେବ, ସେତିକ ବେପାର କରି ସେଇ ଲାଭରୁ ମଜୁରାହେବା ଦରକାର । ସେଥିପାଇଁ ବାଲୁ ସାହା ହାଟକୁ ବାହାରିଲା । ସ୍ତ୍ରୀକୁ ବ୍ରାହ୍ମଣ ଭୋଜନ କରାଇବା ସଂପର୍କରେ ସାବଧାନ ହେବା ଲାଗି କହିଲା—"ପ୍ରକୃତରେ ଏଇଟା ମୋ କାମ; ମାତ୍ର ହାଟକୁ ନଗଲେ ନଚଳେ । ମୋତେ ତ ପୁଣି ଟଙ୍କା କଥା ଭାବିବାକୁ ପଡ଼ିବ ।"

ଭଜନ ଦାସ ଦେଖିଲା, ବାଲୁ ସାହା ସକାଳୁ ବଜାରକୁ ଧପାଇଛନ୍ତି । ତେଣୁ ସେ ନିଶ୍ଚିନ୍ତରେ ବାଲୁସାହା ଘରଆଡ଼କୁ ଗଲା । ବାଲୁ ସାହା ଘରେ କପଟ ତା ଲାଗି ଭୋଜନର ବ୍ୟବସ୍ଥା ହେଉଛି, ସେ ବିଷୟ ଜାଣିବାକୁ ତା'ର ଖୁବ୍ ଇଚ୍ଛା । ଅତିଥି ଏତେ ଶୀଘ୍ର ପହଞ୍ଚି ଯିବାରୁ ବାଲୁ ସାହାର ସ୍ତ୍ରୀ ଟିକିଏ ଘାବରେଇଗଲା । ସେ ତାଙ୍କୁ ବସିବା ଲାଗି ଆସନ ଦେଲା ।

ଭଜନ ଦାସ କହିଲା—"ମା' ମୁଁ ମନ୍ଦିରକୁ ଯାଉଛି । ଦେଖିଲି, ବାଲୁ ସାହା କୁଆଡ଼େ ଜୋରରେ ଯାଉଛନ୍ତି । ଭାବିଲି, ମୋର ଭୋଜନ ସମ୍ପର୍କରେ ହୁଏତ ତୁମେ କିଛି ଜାଣିବାକୁ ଚାହୁଁଥିବ । ଏଣୁ ବାଟରେ ଏଠି ଟିକେ ଅଟକିବାକୁ ବାଧ୍ୟ ହେଲି ।"

ବାଲୁ ସାହାର ସ୍ତ୍ରୀ ନାଁ ଶାମଳୀ । ସେ କହିଲା—"ବହୁତ ଧନ୍ୟବାଦ । ବିଧି ବିଧାନ ଅନୁଯାୟୀ ମୁଁ ସବୁ ଯୋଗାଡ଼ କରୁଛି, ତେବେ ଆପଣ ଯାହା କହିବେ, ଆମେ ତା କରିବାକୁ ପ୍ରସ୍ତୁତ ।"

ଅତିଥି କହିଲେ—"ଗୋଟିଏ କଥା ତମକୁ ମନେ ରଖିବାକୁ ପଡ଼ିବ । ଜଣେ ମାତ୍ର ବ୍ରାହ୍ମଣକୁ ଖୋଇବ ବୋଲି ସିନା ବାଲୁ ମାନସିକ କରିଛନ୍ତି; କିନ୍ତୁ ପ୍ରକୃତ ପକ୍ଷେ ତୁମର ଦଶଜଣ ବ୍ରାହ୍ମଣଙ୍କ ପାଇଁ ଖାଇବା ଜିନିଷ ଯୋଗାଡ଼ କରିବା କଥା । ତମେ କ'ଣ କ'ଣ ଖାଇବାକୁ ଯୋଗାଡ଼ କରିବ, ମୁଁ ତାହାର ଗୋଟିଏ ତାଲିକା କରିଦେଉଛି ।" ଏହା କହି କେତେ ପରିମାଣରେ କେଉଁ ଜିନିଷ ଯୋଗାଡ଼ କରିବାକୁ ହେବ, ତାହା ସେ କହିଗଲା । ଶେଷରେ କହିଲା - "ହଁ,ଗଣପତିଙ୍କ ପୂଜାଲାଗି ଏହା ସାଙ୍ଗକୁ ତିନୋଟି ବଡ଼ ମିଠା ମଧ୍ୟ ଯୋଗାଡ଼ କରିଥିବ ।" ଏହା କହି ଭଜନ ଦାସ ବିଦାୟ ନେଲା ।

ଶାମଳୀ ସବୁ ଖାଇବା ଜିନିଷ ଯୋଗାଡ଼ କଲା । ଗୋସେଇଁଙ୍କ ଆସିବାରେ ମଧ୍ୟ ବିଳମ୍ବ ହେଲାନାହିଁ । ଠିକ୍ ସମୟରେ ପହଞ୍ଚି ଯାଇ ସେ କହିଲେ, "ଭୋଜନ ସାମଗ୍ରୀ ସବୁ ବୋଧେ ପ୍ରସ୍ତୁତ ହୋଇଯାଇଛି । ହଉ, ଆଗ ଗୃହଦେବତାଙ୍କୁ ପୂଜାର ବ୍ୟବସ୍ଥା କର ।"

ଶାମଳୀ ପାପଟିଏ ଲଗାଇଲା । ଭୋଜନ ସାମଗ୍ରୀ ଗୃହ ଦେବତାଙ୍କ

ସାମନାରେ ସଜାଡ଼ି ରଖିଲା । ପାଖରେ ଭଜନ ଦାସଙ୍କ ଲାଗି ମଧ୍ୟ ଗୋଟିଏ ଆସନ ପଡ଼ିଥିଲା । ଭଜନ ଦାସ ଆସନରେ ବସି ସବୁ ଭୋଜନ ସାମଗ୍ରୀକୁ ଠାକୁରଙ୍କୁ ସମର୍ପଣ କରିଦେଇ କହିଲେ,"ଦେଖୁଛି ତମେ ସବୁ କାମ ବିଧିମତେ କରିଛ । ଏଥର ଭୋଜନ ସାମଗ୍ରୀ ମୋ ହାତକୁ ଟେକିଦିଅ ।

ଶାମଳୀ ତାହା କରିବାକୁ ଯାଉଛି ଏହି ସମୟରେ ଭଜନ ଦାସ ଖାଇବା ଜିନିଷକୁ ଚାହିଁଦେଇ କହିଲେ—"ଆହା, ଭୋଜନ ବ୍ୟବସ୍ଥାର ଅସଲ ଜିନିଷଟି ନାହିଁ ? ତୁମର ପ୍ରଥମରୁ ଏହା ତ ଜାଣିବା କଥା । ଥାଳରେ ଦୁଇଟି ସୁନା ମୋହର କାହିଁ ?"

ସ୍ୱାମୀ ସୁନା ମୋହର ରଖିବା ବିଷୟରେ ତାକୁ କିଛି କହିଥିବା ବିଷୟ ଶାମଳୀର ମନେପଡ଼ିଲାନାହିଁ । ସେ ଭାବିଲା, ଏହା ବି ହୁଏତ ଗୋଟିଏ ମୁଖ୍ୟ ବିଧି । ଯାହାହେଉ ଏପରି ଅବସ୍ଥାରେ ଗୋସେଇଁଙ୍କ ସଙ୍ଗେ ଯୁକ୍ତି କରିବାଟା ଠିକ୍ ନୁହେଁ । ସେ ଦୁଇଟି ସୁନା ମୋହର ଆଣି ଥାଳରେ ରଖିଲା । ଏଥର ଭଜନ ଦାସ ଭୋଜନରେ ବସିଲେ । ମନଇଚ୍ଛା ଆନନ୍ଦରେ ଖାଇଲେ । ତା'ପରେ ଯାହା ବଳିଲା ଗାମୁଛାଟିରେ ସେତକ ତାଙ୍କ ପିଲାମାନଙ୍କ ପାଇଁ ରଖିଲେ । ସୁନା ମୋହର ଦୁଇଟିକୁ ମୁଣିରେ ରଖୁରଖୁ କହିଲେ,"ଭୋଜନଟା ଆଜି ଭଲହେଲା । ଈଶ୍ୱର ବାଳୁ ସାହା ଉପରେ ନିଶ୍ଚୟ ସନ୍ତୁଷ୍ଟ ହେବେ । ତେବେ ଆଉ ଗୋଟିଏ ସାମାନ୍ୟ ବିଧି ବାକି ରହିଗଲା । ଭୋଜନ ଦକ୍ଷିଣାଟା ମୋତେ ମିଳନି ।" ଶାମଳୀ ବୁଝିପାରିଲାନି ଗୋସେଇଁ କ'ଣ ଚାହୁଁଛନ୍ତି ।

ଭଜନ ଦାସ ବୁଝେଇବାକୁ ଯାଇ କହିଲେ—"ଜଣେ ବ୍ରାହ୍ମଣକୁ ଖାଇବାକୁ ଦେଲେ ଭୋଜନ ଦକ୍ଷିଣା ଦେବାକୁ ପଡ଼େ । ଏକଥା କ'ଣ ମା' ତମେ ଜାଣିନା ! ସେତକ ନଦେଲେ ଭୋଜନ ଦାନର କିଛି ପୁଣ୍ୟ ମିଳେନାହିଁ । ତମ ଭଳି ସ୍ତ୍ରୀଲୋକଙ୍କର ଏହା ଜାଣିବା ଉଚିତ ।"

କୁଣ୍ଠିତ ଶାମଳୀ ଡରିଗଲା । ସ୍ୱାମୀତ ଭୋଜନ ଦକ୍ଷିଣା ପାଇଁ ତାକୁ କିଛି ଦେଇନାହାନ୍ତି । ଯଦି ଏଇଟା ଗୋଟିଏ ବିଧି, ତେବେ ଏହା ଦେବାକୁ

ହିଁ ପଡ଼ିବ । ଏଣୁ ଆଉ ଦୁଇଟି ମୋହର ଆଣି ଦକ୍ଷିଣାରୂପେ ବ୍ରାହ୍ମଣଙ୍କୁ ଦେଲା । ସବୁମତେ ସନ୍ତୁଷ୍ଟ ହୋଇ ଭଜନ ଦାସ ଘରକୁ ଫେରିଲେ । ସେ ଜାଣନ୍ତି, ବାଲୁ ସାହା ଘରକୁ ଫେରି ସ୍ତ୍ରୀଠାରୁ ସବୁକଥା ଶୁଣି ନିଶ୍ଚୟ ରାଗି ତାଙ୍କ ଘରକୁ ଆସିବ । ଏଣୁ ସେ ସ୍ତ୍ରୀକୁ କହିଲେ—"ଆଲୋ ଅଳ୍ପ ସମୟପରେ ବାଲୁ ସାହା ରାଗରେ ତମ ତମ ହୋଇ ଆମ ଘରକୁ ଆସିବ । ତୁ ତାକୁ ମୁଁ ଯାହା କହୁଛି ସେଇଆ କହିବୁ ।" ଏହା କହି ସେ ତା କାନ ପାଖେ କ'ଣ ଚୁପ୍ କରି କହିଲେ । ତା'ପରେ ଶୋଇବା ଘରକୁ ଯାଇ ଆରାମରେ ଶୋଇ-ପଡ଼ିଲେ । ଗୁଡ଼ାଏ ଖାଇ ଦେଇ ଥିବାରୁ ତାଙ୍କୁ ସଙ୍ଗେ ସଙ୍ଗେ ନିଦ ହୋଇଗଲା ।

ଏଣେ ବାଲୁ ସାହା ଘରକୁ ଫେରିଲା । ବ୍ରାହ୍ମଣଙ୍କୁ କପରି ଓ କଅଣ ଭୋଜନ ଦକ୍ଷିଣା ଦିଆଗଲା ଏଇସବୁ ବିଷୟ ଶାମଳୀ ତାକୁ କହିଲା ।

ଏହାଶୁଣି ବାଲୁ ସାହା ରାଗି ଏକାବେଳକେ ଲାଲ୍ । ଗୋଟିଏ ବଡ଼ ଠେଙ୍ଗାଧରି ସେ ଭଜନ ଦାସ ଘରକୁ ଧାଇଁଲା ।

ବ୍ରାହ୍ମଣୀ ଦେଖିଲା, ବାଲୁ ସାହା ତା ଘରକୁ ଠେଙ୍ଗାଟିଏ ଧରି ଧାଇଁ ଆସୁଛି । ସଙ୍ଗେ ସଙ୍ଗେ ସେ ମୁଣ୍ଡ ବାଡ଼େଇ କାନ୍ଦିବାକୁ ଆରମ୍ଭ କରିଦେଲା । ବାଲୁ ସାହା ଉପରେ ନଜର ପଡ଼ିବା ମାତ୍ରେ ସେ କାନ୍ଦୁ କାନ୍ଦୁ କହିଲା— "ଓଃ ! ତମେ ତ ଆଚ୍ଛା ଲୋକ । ମୋ ସ୍ୱାମୀଙ୍କୁ ତମେ କ'ଣ ନ କଲ ? ସେତ ତୁମର କିଛି ଅନିଷ୍ଟ କରି ନାହାନ୍ତି । ତମେ ତାଙ୍କୁ କାହିଁକି ଖାଇବା ପଦାର୍ଥରେ ବିଷ ଦେଲ ? ତାଙ୍କର ଏବେ ଅଚେତ ଉଠିଲାଣି । ମୁଁ ପୁଣି ଏବେ କ'ଣ କରିବି ? ଯଦି ସେ ମରିଯାଆନ୍ତି ପୋଲିସ୍ ତ ତମକୁ ଛାଡ଼ିବ ନାହିଁ । ବନ୍ଧା ହୋଇ ଶେଷରେ ଫାଶି କାଠରେ ଝୁଲିବ । ଲୁହ ପୋଛି ପୁଣି ସେ କହିଲା— "ତମେ ତ ନିସ୍ତାର ପାଇବନି । ମୋ ଦଶା, ମୋ ପିଲା ଛୁଆଙ୍କ ଦଶା କ'ଣ ହେବ କହିଲ ଦେଖି ?"

ବାଲୁ ସାହା କାବା ହୋଇ ଠିଆ ହୋଇଗଲା । ହାତରୁ ତା'ର ବାଡ଼ିଟା ଖସିପଡ଼ିଲା । ବିଚରା ସେ କ୍ଷମା ମାଗି କହିଲା—"ଆଉ ପାଟିକରି କାନ୍ଦନା ।

ସମସ୍ତେ ଜାଣିବେ । ଏବେ ତୁମେ ଜଣେ ଡ଼ାକ୍ତରଙ୍କୁ ଡ଼ାକ । ତାଙ୍କ ଦେହ କଷ୍ଟେ ଭଲ ହୋଇଯିବ ।"

ବ୍ରାହ୍ମଣୀ କପଟ କାନ୍ଦ କାନ୍ଦି କାନ୍ଦି କହିଲା—"ଓଃ, ଡ଼ାକ୍ତର ! ଆମ ପାଖରେ କେଉଁ ଟଙ୍କା ଅଛି ଯେ ଆମେ ଡ଼ାକ୍ତର ଡ଼କାଇବୁ ! ତମେ ଯଦି ଦଶଟି ଟଙ୍କା ଦିଅନ୍ତ, ତେବେ ଅବା ଜଣେ ଡ଼ାକ୍ତରଙ୍କୁ ସଙ୍ଗେ ସଙ୍ଗେ ଡ଼କାଇ ପଠାନ୍ତି । ଏପରି ଅବସ୍ଥାରେ ଡ଼ାକ୍ତରଙ୍କୁ ନ ଡ଼କେଇ ତାଙ୍କ ଚିକିତ୍ସା ନକଲେ ନିଶ୍ଚୟ ଫାଶୀ ।"

କୃପଣ ବାଲୁ ସାହା ବଡ଼ବଡ଼ ନିରୂପାୟ ହୋଇ କହିଲା—"ମୁଁ ତ ଟଙ୍କା ଆଣିନାହିଁ । ମୁଁ ଘରକୁ ବାହାରିଲି । ମୋ ସାଥିରେ ଜଣଙ୍କୁ ପଠାଅ, ଦଶଟି ଟଙ୍କା ସଙ୍ଗେ ସଙ୍ଗେ ପଠାଇଦେବି । ଠାକୁରଙ୍କ ନାଁ ନେଇ କହୁଛି, ଏକଥା କେବେ ଅନ୍ୟଥା ହେବନି । ତୁମେ ଭଲ ଡ଼ାକ୍ତର ଅଣାଇ ତାଙ୍କର ଚିକିତ୍ସା କରାଅ ।"

ବାଲୁ ସାହା ଭଜନ ଦାସର ପୁଅକୁ ସାଙ୍ଗରେ ନେଇ ଘରକୁ ଗଲା । ସେ ଧଇଁ ସଇଁ ହୋଇ ଘରେ ପହଞ୍ଚିବାରୁ ତା ସ୍ତ୍ରୀ କହିଲା—"କଅଣ କଣ ? ଏପରି ଧଇଁ ସଇଁ କାହିଁକି ହେଉଛ ?"

ବାଲୁ ସାହା କହିଲା—"ସବୁତ ଅଘଟଣ ତମେ ଘଟେଇ ଦେଲ । ଭଜନ ଦାସକୁ ଖାଇବା ଜିନିଷରେ ବିଷ ଦେଲ କାହିଁକି ? ସେପାଇଁ ମୋତେ ଏବେ ଫାଶୀ କାଠରେ ଝୁଲିବାକୁ ହେବ ।"

ବାଲୁ ସାହା ଆପଣା ବାକ୍ସ ଖୋଲି ସେଥିରୁ ଦଶଟି ଟଙ୍କା କାଢ଼ିଲା । ପିଲାଟିକୁ ସେତକ ଦେଇ କହିଲା—"ଯାଅ, ଶୀଘ୍ର ଘରକୁ ଦଉଡ଼ି ଯା । ଏଇ ଟଙ୍କାତକ ବୋଉକୁ ଦେବୁ । ଜଣେ ଭଲ ଡ଼ାକ୍ତର ଆଣିବାକୁ କହିବୁ ।"

ପିଲାଟି ଟଙ୍କା ନେଇ ଘରକୁ ଗଲା । ସେ ଚାଲିଯିବା ପରେ ବାଲୁ ସାହା ବାରଣ୍ଡା ଉପରେ ଥକ୍କା ହୋଇ ବସିପଡ଼ିଲା । ହାତ ଯୋଡ଼ି ଠାକୁରଙ୍କ

ପାଦେଖ ମାନସିକ କଲା- "ହେ ଭଗବାନ, ମୋତେ ଫାଶୀକାଠରୁ ରକ୍ଷାକର । ମୁଁ ନିଶ୍ଚୟ ହଜାରେ ବ୍ରାହ୍ମଣଙ୍କୁ ଖାଇବାକୁ ଦେବି ।"

( ଗୁଜରାଟ )

●

# ଭାଗ୍ୟ

ଭିନଓ୍ୱା ଓ ହିନଓ୍ୱା ଦୁଇଭାଇ । ଭିନଓ୍ୱା ବଡ଼ ଓ ଖୁବ୍ ଧନିକ । ସବୁବେଳେ ସେ ହିନଓ୍ୱାକୁ ଖଟାଏ । ହିନଓ୍ୱାକୁ ଗାଈ ଜଗିବାକୁ, ହଳ କରିବାକୁ, ସଉଦାପତ୍ର କରିବାକୁ ପଠାଏ । ଦିନସାରା ଏତେ କାମକରି ଖଟିଲେ ବି ତାକୁ ଭଲ କରି ଖାଇବାକୁ ଦିଏ ନାହିଁ । ସନ୍ଧ୍ୟାବେଳକୁ ଘୃରପଠ ଶୁଖିଲା ରୁଟି ହୁଏ ତାହାର ଆହାର ।

ଦିନେ ହିନଓ୍ୱା ହଳ କରିବାକୁ ବିଲକୁ ଗଲା । ବିଲରେ ପହଞ୍ଚି ଦେଖିଲା ଲଙ୍ଗଳ ଲୁହାଟି ସେ ଘରୁ ଆଣିବାକୁ ଭୁଲିଯାଇଛି । ତାକୁ ଆଣିବା ଲାଗି ସେ ଘରକୁ ଲେଉଟିଲା । ଘରେ ଆସି ଦେଖିଲା, ସେଦିନ ଘରେ ନାନା ପ୍ରକାର ଖାଇବା ଜିନିଷ ତିଆରି ହେଉଛି । ଭାବିଲା ଆଜି ତାକୁ ଭଲ ଜିନିଷ ଖାଇବାକୁ ମିଳିବ; ମାତ୍ର ସେ ଦିନ ସନ୍ଧ୍ୟାବେଳେ ସେ ଫେରି ଦେଖିଲା ତା' ଭାଗରେ ସେଇ ଘୃରପଠ ଶୁଖିଲା ରୁଟି । ସେ ଆଉ ସମ୍ଭାଳି ପାରିଲା ନାହିଁ । ବଡ଼ଭାଇକୁ ଯାଇ କହିଲା—"ଆଜି ମୁଁ ନିଜେ ଦେଖିଛି, ଘରେ କେତେ ପ୍ରକାର ଖାଇବା ଜିନିଷ ତିଆରି ହେଉଥିଲା । ସେ ସବୁ ଗଲା କୁଆଡ଼େ ? ମୋତେ କାହିଁକି ଏ ସବୁ ମିଳିଲାନି ? ମିଳିଲା, ଖାଲି ସବୁଦିନ ଭଳି ଶୁଖିଲା ରୁଟି ।"

ଭିନଓ୍ୱା କହିଲା—"ଆରେ ବାବୁ, ତୁ ଦୁଃଖ କଲେ କ'ଣ ହେବ ? ତୋ ଭାଗ୍ୟତ ସାତ ସମୁଦ୍ର ସେ ପାରିରେ ଶୋଇଛି । ତୁ ଭଲ ଜିନିଷ ପାଇବୁ

କୁଆଡ଼ୁ ? ସେଥିପାଇଁ ତୋତେ ମିଳୁଛି ଶୁଖିଲା ରୁଟି ।"

ବଡ଼ ଭାଇର କଥା ହ୍ୱନଓ୍ୱାକୁ ବାଧିଲା । ସେ ସ୍ଥିର କଲା, ତା' ଭାଗ୍ୟକୁ ଆଜି ଖୋଜି ଠାବ କରିବ । ତାକୁ ନିଦରୁ ଉଠେଇବ । ପଚାରି ବୁଝିବ ତା'ର ଦୁର୍ଭାଗ୍ୟର କାରଣ ।

କାହାକୁ କିଛି ନ କହି ହ୍ୱନଓ୍ୱା ସଙ୍ଗେ ସଙ୍ଗେ ଘର ଛାଡ଼ି ବାହାରି ପଡ଼ିଲା । କେତେବାଟ ଗଲାପରେ ଦେଖିଲା, ଗୋଟାଏ ମସ୍ତବଡ଼ ଗଛ ଉପରକୁ ସାପଟିଏ ଚଢ଼ୁଛି । ସେଇ ଗଛର ଗୋଟିଏ ଉଚ୍ଚ ଡାଳରେ ଚିଲଟିଏ ବସା କରିଥାଏ । ଚିଲ ଓ ମାଈଚିଲ ଛୁଆମାନଙ୍କ ପାଇଁ ଆହାର ଖୋଜିବାକୁ ଯାଇଥାନ୍ତି । ଏତିକିବେଳେ ସାପଟା ସେଇ ଛୁଆମାନଙ୍କୁ ଖାଇବା ଲାଗି ଉପରକୁ ଉଠୁଥିବା ଦେଖି ହ୍ୱନଓ୍ୱା ସାପଟାକୁ ମାରି ସେଇ ଗଛତଳେ ପକାଇଦେଲା । କେତେ ସମୟ ପରେ ଚିଲ ଓ ମାଈଚିଲ ଆସି ଗଛତଳେ ପଡ଼ିଥିବା ସାପଟିକୁ ଦେଖି ସବୁକଥା ବୁଝିପାରିଲେ । ସେମାନଙ୍କ ଛୁଆକୁ ରକ୍ଷା କରିଥିବାରୁ ହ୍ୱନଓ୍ୱାକୁ ବହୁତ ଧନ୍ୟବାଦ ଦେଲେ । ହ୍ୱନଓ୍ୱାକୁ ପଚାରିଲେ— "କହ, ଆମେ ତମ ପାଇଁ କଣ କରିବୁ ?"

ହ୍ୱନଓ୍ୱା କହିଲା—"ମୁଁ ମୋ ଭାଗ୍ୟକୁ ଖୋଜିବାକୁ ବାହାରିଛି ! ମୋ ଭାଗ୍ୟ କେଉଁଠି ସାତ ସାଗର ସେପାରିରେ ଶୋଇଛି ବୋଲି ମୁଁ ଶୁଣୁଛି । ତମେ କ'ଣ ମୋତେ ସେଠାକୁ ନେଇ ପାରିବ ?"

ଚିଲ କହିଲା—"ହଁ ମୁଁ ତୁମକୁ ମୋ ପିଠିରେ ବସାଇ ସମୁଦ୍ର ପାର କରେଇ ସେଠି ପହଞ୍ଚେଇ ଦେବ । ତମେ ମୋ ପିଠିରେ ବସ । ହ୍ୱନଓ୍ୱା ତା ପିଠି ଉପରେ ବସିବାକୁ ଯାଉଛି, ଏତିକିବେଳେ ପାଖରେ ଥିବା ଗୋଟିଏ ଶୁଖିଲା ଗଛ ହ୍ୱନଓ୍ୱାକୁ କହିଲା, "ଅନେକ ଦିନୁ ମୋ ପତ୍ର ସବୁ ଶୁଖିଯାଇଛି । ତମେ ସେଠାରୁ ଏହାର କାରଣ ବୁଝି ଆସିବ ।" ହ୍ୱନଓ୍ୱା ତାକୁ ଜବାବ ଦେଲା । ଚିଲ ହ୍ୱନଓ୍ୱାକୁ ସାତସାଗର ଆରପଟକୁ ନେଇଗଲେ । ଯେଉଁଠି ତାର ଭାଗ୍ୟ ଶୋଇଛି, ସେଇଠି ପହଞ୍ଚେଇ ଦେଲା । ହ୍ୱନଓ୍ୱା ତା ଭାଗ୍ୟକୁ ନିଦରୁ ଉଠାଇ ପଚାରିଲା—"ମୁଁ ବହୁ ଦୂରରୁ ଆସିଛି, ମୋତେ ସାହାଯ୍ୟ

କର । ମୁଁ ଏତେ ଖଟି ଖଟି ମଧ୍ୟ କାହିଁକି ପେଟପୂରା ମୁଠାଏ ଖାଇବାକୁ ପାଉ-ନାହିଁ । ମୋ ଭାଇ କହିଲା, ମୋ ଭାଗ୍ୟ ସାତସମୁଦ୍ର ସେପାଖରେ ଶୋଇଛି । ଏଣୁ ଏଇ କଥା ପଚାରିବ ବୋଲି, ମୁଁ ଏଠାକୁ ଆସିଛି । ହଁ, ଆଉ ଗୋଟିଏ କଥା । ଏ ଚାଲିଛି ମତେ ଯେଉଁ ଗଛ ମୂଳରୁ ଉଡ଼ାଇ ଆଣିଛି, ସେ ଗଛଟି ପଚାରିଛି, ତା ପତ୍ର କାହିଁକି ଝଡ଼ି ଯାଇଛି—ପଚାରି ଆସିବାକୁ ।"

ଏହା ଶୁଣି ହିନର୍ଓ୍ୱାର ଭାଗ୍ୟ କହିଲା, "ତୁ ଫେରିଯା, ତୋର ଦଶା ଆଜଠାରୁ ବଦଳିଯିବ । ଯେଉଁ ଗଛର ପତ୍ର ଝଡ଼ିଯାଇଛି ବୋଲି କହୁଛୁ—ସେ ଗଛମୂଳ ଖୋଳିଲେ ବହୁ ଧନରତ୍ନ ପାଇବୁ, ତାକୁ ନେଇ ସୁଖରେ ଚଳିବୁ । ସେଇ ଗଛତଳେ ବହୁ ଧନରତ୍ନ ପୋତା ହୋଇଛି ଓ ଗୋଟିଏ ସାପ ତାକୁ ଜଗିଛି । ସେଥିପାଇଁ ସେଇ ଗଛର ପତ୍ର ସବୁ ଜଳିଯାଇଛି । ସାପଟାକୁ ମାରି ସେଇ ଧନରତ୍ନକୁ ସେଠାରୁ ନେଇଗଲେ ଗଛରେ ପୁଣି ପତ୍ର କଅଁଳିବ ।"

ହିନର୍ଓ୍ୱା ତା ଭାଗ୍ୟଦେବତାକୁ ନମସ୍କାର ଜଣାଇ ତା'ଠାରୁ ବିଦାୟ ନେଲା । ଚିଲ ତାକୁ ପୁଣି ପିଠିରେ ବସାଇ ସେଇ ଗଛମୂଳକୁ ନେଇ ଆସିଲା । ହିନର୍ଓ୍ୱା ଗଛମୂଳେ ଥିବା ଧନରତ୍ନ ସଂଗ୍ରହ କଲା । ସଙ୍ଗେ ସଙ୍ଗେ ଗଛର ପତ୍ର କଅଁଳିଲା । ବାଟରେ ଯାଉ ଯାଉ ଦେଖିଲା ଗୋଟାଏ ଘୋଡ଼ା ବୁଲୁଛି । ସେ ତାକୁ ଧରି ପୋଷା ମନେଇଲା । କିଛିଦିନ ପରେ ସେଥିରେ ଚଢି ସେ ନିଜ ଘରକୁ ବାହାରିଲା । ବାଟରେ ଯାଉ ଯାଉ ଶୁଣିଲା ସେଠିକା ରଜାଙ୍କ ଝିଅ ଖୁବ୍ ଅସୁସ୍ଥ । ତାକୁ କେହି ଭଲ କରି ପାରୁନାହାନ୍ତି । ହିନର୍ଓ୍ୱାକୁ ଚେରମୂଳିକା ଔଷଧ ଜଣା ଥିଲା । ସେ ଯାଇ ରଜା ଝିଅକୁ ସେଇ ଔଷଧ ଦେଲା । ରଜାଝିଅ ଭଲ ହୋଇଗଲା । ରଜା ଖୁସି ହୋଇ ହିନର୍ଓ୍ୱା ସଙ୍ଗେ ନିଜ ଝିଅକୁ ବାହା ଦେଲେ । ବହୁ ଯାନ ଯଉତୁକ ନେଇ ହିନର୍ଓ୍ୱା ନିଜ ଦେଶକୁ ବାହୁଡ଼ିଲା । ଭିନର୍ଓ୍ୱା ସାନଭାଇ ହିନର୍ଓ୍ୱାର ଭାଗ୍ୟୋଦୟ ଦେଖି ବିଶେଷ ଲଜ୍ଜିତ ହେଲା । ହିନର୍ଓ୍ୱା ପଛକଥା ଭୁଲିଯାଇ ବଡ଼ଭାଇକୁ ଆଦର କଲା । ସେହିଦିନୁ ଦୁଇଭାଇ-ଯାକ ସୁଖରେ ରହିଲେ ।

( ହିମାଚଳ ପ୍ରଦେଶ )



# ବୁଦ୍ଧିନାଥର ବୁଦ୍ଧି

ହିମାଚଳ ପ୍ରଦେଶର କୁର୍ମାଚଳ ଗାଁରେ ରହୁଥିଲେ ତିନୋଟି ଭାଇ । ତିନିଭାଇଙ୍କ ନା ଯେପରି ଗୁଣ ବି ସେହିପରି । ବଡ଼ଭାଇ ନାଁ ସିଦ୍ଧିନାଥ । ସେ ଥିଲା କୃଷିକାମରେ ଧୁରନ୍ଧର । ପ୍ରେତ୍ୟକ ଜଅାରଟିରୁ ସେ ଛଅବସ୍ତା ଧାନ ଅମଳ କରିପାରୁଥିଲା । ଦ୍ୱିତୀୟ ଭାଇ ନାଁ ରୁଦ୍ଧିନାଥ । ସେ ପୁଣି କୌଣସି ଗାଈକୁ ଦୁହିଁ ତାଠୁ ମହଣେ ଦୁଧ ପାଇ ପାରୁଥିଲା । ତୃତୀୟ ଭାଇର ନାଁ ବୁଦ୍ଧିନାଥ, ସେ ଥିଲା ଖୁବ୍ ବୁଦ୍ଧିମାନ ଏବଂ ଗୀତ ଲେଖିବାରେ ଓ ଗାଇବାରେ ଧୁରନ୍ଧର । ସବୁବେଳେ ସେ ଏକୁଟିଆ ରହିବାକୁ ଭଲପାଏ । ଏଣୁ ଭାଇମାନେ ତାକୁ ବୋକା ଭାବି ଥଟ୍ଟା କରନ୍ତି । କହନ୍ତି—'ଏ ଟା ବୁଦ୍ଧିନାଥ ନୁହଁ, ପ୍ରକୃତରେ ବୁଦ୍ଧୁନାଥ ବା ବୋକାଙ୍କ ଶିରୋମଣି ।'

ତିନିଭାଇ ମିଳିମିଶି ଘର କଥା ବୁଝନ୍ତି । ଘରପାଇଁ ଯାଇ ଡ଼ାଲି, ତେଲ ପ୍ରଭୃତି ଦରକାର । ଏଥିପାଇଁ ସେମାନେ ଆଲମୋଡ଼ା ସହରକୁ ଯିବାକୁ ପଡ଼େ । ଦୁଇଟା ରାସ୍ତା । ଗୋଟାଏ ରାସ୍ତାରେ ଗଲେ ବାଟ କମ୍ । ଅନ୍ୟଟି ବୁଲାଣି । ଦିନେ ସିଦ୍ଧିନାଥ ଜିନିଷ କିଣିବାକୁ ବାହାରିଲା । ସେ କମ୍ ରାସ୍ତାଟିରେ ଗଲା । କେତେବାଟ ଗଲା ପରେ ଗୋଟାଏ ଗୁହା, ପାନ ଦୋକାନ ପଡ଼ିଲା । ସିଦ୍ଧିନାଥ ଭାବିଲା, ଏଇଠି ଟିକିଏ ବିଶ୍ରାମ ନେବ । ଦୋକାନୀ ବି ତାକୁ ବସିବାକୁ କହିଲା ଓ ଗୁହା ଦେଲା । ସିଦ୍ଧିନାଥ ଗୁହା ଖାଇଲାପରେ କଥା ପ୍ରସଙ୍ଗରେ ଦୋକାନୀ କହିଲା—"ବାବୁ, ଆମ ଭିତରେ ଗୋଟାଏ ବାଜି ରହିଲା, ମୁଁ ଯାହା କହିବି ତମେ ତା ଠିକ୍ ବୋଲି କହିବ । ନ ହେଲେ ମୁଁ ତମ ନାକ କାନ କାଟିଦେବି ।"

ସିଦ୍ଧିନାଥ ଭାବିଲା—"ଦୋକାନୀ ଯାହା କହିବ, ତା କଥାରେ ହଁ ମାରିଲେ ମୋ'ର କଣ ବା କ୍ଷତି ହୋଇଯିବ ? ଏହାଭାବି ସେ ତା' କଥାରେ ରାଜି ହୋଇଗଲା । ଦୋକାନୀ କହିଲା—"ମୋର ଗୋଟାଏ ବଳଦ ଅଛି ତାର ପାଞ୍ଚଟା ଶିଙ୍ଗ ।" ସିଦ୍ଧିନାଥ କହିଲା—"ହଁ ତା ସମ୍ଭବ, ଆମ ଗାଁରେ ତ ଜଣେ

ସ୍ତ୍ରୀ ଲୋକ ପାଞ୍ଚମୁଣ୍ଡିଆ ପିଲାଟିଏ ଜନ୍ମ କରିଥିଲା ।"

ଦୋକାନୀ କହିଲା— "ସେଇ ଶିଙ୍ଗରୁ ଗୋଟିଏ ହିମାଳୟକୁ ଯାଇ ବରଫ ଆଣେ, ଗୋଟିଏ ଦକ୍ଷିଣକୁ ଯାଇ ସମୁଦ୍ରରୁ ମୁକ୍ତା ନେଇ ଆଣେ, ଗୋଟିଏ ଯାଇ କାବୁଲରୁ ଶୁଖିଲା ଫଳ ଆଣିପାରେ ଓ ଶେଷଟି ଦିଲ୍ଲୀଯାଇ ପ୍ରଭୁଣା ମନୋହରୀ ଜିନିଷ ନେଇ ଆସେ ।"

ଦୋକାନୀ କଥା ନ ସରୁଣୁ ହଠାତ୍ ସିଦ୍ଧନାଥ କହିଲା— "ତୁମ ବଳଦର ପାଞ୍ଚୋଟି ଶିଙ୍ଗ ଥାଇପାରେ । ମାତ୍ର ଶିଙ୍ଗଗୁଡ଼ାକ ପକ୍ଷେ ଏସବୁ କାମ କରିବା ସମ୍ଭବ ନୁହେଁ ।"

ଦୋକାନୀ କହିଲା— "ବାସ୍, ବାଜିରେ ତୁମେ ହାରିଗଲ । ଏଥର ତୁମ ନାକ କାନ କଟା ହେବ ।" ସେ ତା ପୁଅକୁ ଡାକି ସିଦ୍ଧନାଥର ନାକ କାନ କାଟିବାକୁ କହିଲା । ସିଦ୍ଧନାଥ ତାକୁ ବହୁତ ନେହୁରା ହେଲା, ପାଖରେ ଟଙ୍କା ପଇସା ଯାହାଥିଲା ତାକୁ ଯାଚିଲା; ତେବେ ବି ଦୋକାନୀ ତା ନାକ କାନ ନ କଟାଇ ଛାଡ଼ିଲା ନାହିଁ । ବିଚରା ସିଦ୍ଧନାଥ ଆଉ କ'ଣ କରିବ ? ଏପରି ରୂପରେ ଆଉ ଆଲମୋଡ଼ା ବା ଯିବ କିପରି ? ଗାମୁଛାରେ ଆପଣାର କଟା ନାକ କାନ ଘୋଡ଼ାଇ ଘରକୁ ଖାଲି ହାତରେ ଫେରି ଆସିଲା । ଏଇ ଲଜ୍ଜାର ବିଷୟ କିପରି ବା କହିବ ? ମିଛରେ ଭାଇମାନଙ୍କୁ କହିଲା— 'ବାଟରେ ଡକାୟତଙ୍କ ହାତରେ ପଡ଼ି ମୋର ଏଇ ଦଶା । ଭାଗ୍ୟକୁ ଟଙ୍କା ପଇସା ଓ ଜୀବନ ନେଇ ଖସି ଆସିଲି ।'

ମାତ୍ର କ୍ରମେ ଏକଥା ଜଣା ପଡ଼ିଗଲା । ବଡ଼ମଝିଆଁ ରୁଦ୍ଧିନାଥ ବଡ଼-ଭାଇର ଦୁର୍ଦ୍ଦଶା ବିଷୟ ଶୁଣି ପ୍ରତିଶୋଧ ନେବାକୁ ବାହାରିଲା । ସେ ବଡ଼ଭାଇ ଯାଇଥିବା ସେଇ ରାସ୍ତାରେ ଗଲା । ସେ ମଧ୍ୟ ବାଟରେ ସେଇ ଦୋକାନୀ ହାବୁଡ଼ରେ ପଡ଼ିଲା ଓ ନାକ, କାନ ହରାଇ ଘରକୁ ଫେରିଆସିଲା ।

ଶେଷରେ ସବା ସାନ ବୁଦ୍ଧିନାଥ ଆଲମୋଡ଼ା ଯିବାକୁ ବାହାରିଲା । ଦୁଇଭାଇ କହିଲେ—'ହଉ ଯା ! ସେଇ ବଦମାସ୍ ଦୋକାନୀକୁ ଯଦି ବୁଦ୍ଧିରେ

ହ‌ାରଇ ଦେବୁ, ତେବେ ଆମ୍ଭ ମାନ ରହିବ ।" ବୁଦ୍ଧିନାଥ ସେଇ ବାଟରେ ଯାଇ ସେଇ ବୁଢ଼ା ଦୋକାନରେ ପହଞ୍ଚିଲା ।

ବୁଢ଼ା, ପାନ ଖାଇ ସାରିଲା ପରେ ଦୋକାନୀ ତା' ଆଗେ କଥା କହି-ବାକୁ ଆରମ୍ଭ କଲା । ଦୋକାନ ଘରକୁ ଲଗି ଦୋକାନୀର ରହିବା ଘର । ସେ କଥା କହିବାବେଳେ ବୁଦ୍ଧିନାଥ ତାର ସେଇ ଘର ଭିତରକୁ ନଜର ଦେଇଥାଏ । ଦୂରରୁ ସେ ଦେଖିବାକୁ ପାଇଲା, ସାତୋଟି ସ୍ତ୍ରୀଲୋକ ଆସି ହଳଦି ଗୁଣ୍ଡ କରିବାକୁ ବସିଗଲେ । ଏଣେ ବୁଦ୍ଧିନାଥ ଦୋକାନୀ କଥା ଶୁଣି 'ହଁ' କହି ମୁଣ୍ଡ ହଲାଉଥାଏ । ଦୋକାନୀର କଥା ଶେଷ ହେଲାପରେ ବୁଦ୍ଧି-ନାଥ କହିଲା—"ମଉସା, ମୋର ବି ଗୋଟିଏ କଥା କହିବାକୁ ଇଚ୍ଛା । ତମେ ଶୁଣିବ ଆଉ 'ହଁ' କହିବ । ଯଦି 'ନାହିଁ' କହିବ, ତେବେ ମୁଁ ତମ ନାକ, କାନ କାଟିବି ।"

ଦୋକାନୀ ଏଇଂ ସର୍ତ୍ତରେ ରାଜିହୋଇଗଲା । ବୁଦ୍ଧିନାଥ କହିଲା—'ଆମେ ହେଉଛୁ ସାତ ଭାଇ । ଆମେ ବାହାହେଲୁ । ସାତଟି ସୁନ୍ଦର ଝିଅ ଆମ ଘରକୁ ବୋହୂ ହୋଇ ଆସିଲେ । ସେଥିପାଇଁ ଆମେ ଖୁବ୍ ଖୁସି । ଦିନେ ଦମକାଏ ପବନ ଆସି ସାତଟି ଯାକ ବୋହୂଙ୍କୁ ଉଡ଼ାଇନେଲା ।'

ଦୋକାନୀ କହିଲା—'ହଁ' ଏସବୁ ସମ୍ଭବ । ଯାହାହେଉ, ତୁମମାନଙ୍କର ଗର୍ବ ଓ ଆନନ୍ଦ ବି ଏଥିରେ ଉଡ଼ିଗଲା ।'

ବୁଦ୍ଧିନାଥ କହିଲା—"ହଁ ମଉସା, ମୁଁ କାଲି ସେଇ ସାତ ଜଣଙ୍କୁ ଏଇଠି ଦେଖିଛି । କୁହ ଏକଥା ସତ କି ନୁହେଁ ?"

ଦୋକାନୀ ମହା ଅଡୁଆରେ ପଡ଼ିଗଲା । 'ହଁ' କହିଲେ ବିପଦ, 'ନାହିଁ' କହିଲେ ବି ବିପଦ । 'ହଁ' କହିଲେ ତାର ବୋହୂ ସାତଟିଙ୍କୁ ସେ ହରାଇବ, 'ନାହିଁ' କହିଲେ ନାକ କାନ ହରାଇବ । ଟିକିଏ ବିଚାରି ସେ କହିଲା—"ତୁମେ ସେଇ ସାତଟିଙ୍କୁ ଚିହ୍ନିପାରିବ ?'

ବୁଦ୍ଧିନାଥ କହିଲା—"ହଁ ! ଏବେ ସେମାନଙ୍କ ହାତ ହଳଦିଆ

ହୋଇଯାଇଛି ।" ଡୋକାମି ତ ଘର ଭିତରକୁ ନିନ୍ଦା କରନ୍ତି । ଏଣୁ ସେ କହିଲା—"ନା ! ସେମାନଙ୍କ ହାତ ସଫା ।"

ବୁଦ୍ଧିନାଥ କହିଲା — "ଆଚ୍ଛା, ଏକଥା ପରୀକ୍ଷା ହୋଇଯାଉ ।" ଡୋକାମି ବୋହୂମାନଙ୍କୁ ଡକାଇଲା । ଦେଖାଗଲା, ହଳଦିଗୁଣ୍ଡ କରୁଥିବାରୁ ସେମାନଙ୍କ ହାତ ହଳଦିଆ ହୋଇଛି । ଡୋକାମିର ମୁଣ୍ଡ ବଙ୍ଗିଡଗଲା । ପୁଅ-ମାନଙ୍କୁ ଡକାଇ ସେ ସେମାନଙ୍କୁ ଏଇ କଥା କହିଲା ।

ପୁଅମାନେ କହିଲେ—"ତୁମେ ତ ଜବାବ କରିଛ । ଲୋକଟିକୁ ତୁମେ ସାତ ବୋହୂଙ୍କୁ ଦେବାକୁ ବାଧ୍ୟ । ସାତ ବୋହୂଙ୍କୁ ଦେଇଦିଅ, ଆମେ ପୁଣି ବାହାହେବୁ । ତା'ଛଡ଼ା ତୁମେ ବୁଢ଼ା ଲୋକ । ତୁମ ନାକ, କାନ କଟା ହେବ—ଏହା ଆମେ ଚାହୁଁନା ।"

ବୁଦ୍ଧିନାଥ ଡୋକାର ସାତ ବୋହୂଙ୍କୁ ନେଇ ଘରକୁ ଫେରିଲା । ଡୋକାମି ସେଇ ଦିନଠୁଁ ଠକେଇବା ବୃତ୍ତି ଛାଡ଼ିଦେଲା । ହରି ନାମ କୀର୍ତ୍ତନରେ କାଳ କଟେଇଲା ।

( ହିମାଚଳ ପ୍ରଦେଶ )



# କର୍ମର ଫଳ

ଥରେ ଶିବ ପାର୍ବତୀ ପୃଥିବୀ ବୁଲି ନିଜ ଆଶ୍ରମକୁ ଫେରୁଥିଲେ । ଏଇ ସମୟରେ ପାର୍ବତୀ ଶିବଙ୍କୁ କହିଲେ—"ଆପଣଙ୍କୁ ଗୋଟାଏ କଥା ନ କହି ରହିପାରୁନାହିଁ । ଦେଖୁଛି, ଆପଣ ଭାରି ନିଷ୍ଠୁର । ଯେଉଁ ମଣିଷମାନେ ଦୁଃଖ ପାଉଛନ୍ତି, ସେମାନଙ୍କ ପ୍ରତି ଆପଣଙ୍କ ହୃଦୟରେ ଟିକିଏ ହେଲେ ଦୟାମାୟା ନାହିଁ । ସେମାନେ ଯେତେ ପ୍ରାର୍ଥନା କଲେ ବି ଆପଣ ସେମାନଙ୍କ କଥା ଶୁଣୁ

ନାହାନ୍ତି । କେତେ ଲୋକ ମୁଠାଏ ହେଲେ ବ ଖାଇବାକୁ ପାଉନାହାନ୍ତି । ଆପଣ କ'ଣ ସେମାନଙ୍କ ଦୁଃଖ ବୁଝୁଛନ୍ତି ?"

ଶିବ ଏହାଶୁଣି କହିଲେ—"ଏତ ଅଡଗହନ କଥା । ଆଚ୍ଛା ହେଉ, ଏବେ କାହାର କ'ଣ ହୋଇଛି ସେ କଥା କୁହ । କଏ ସେ ଏମିତି କଷ୍ଟ ପାଉଛି ?"

ପାର୍ବତୀ ଦେଖିଲେ, ଶିବଙ୍କର ଆଜ ମନ ଭଲ ଅଛି । ଏପରି ସୁଯୋଗ ହରାଇବା ଉଚିତ ନୁହେଁ । ବାଟ ଉପରେ ଠିଆ ହୋଇଥିବା ଜଣେ ଭିକାରୀକୁ ଦେଖାଇ ସେ କହିଲେ—"ହେଇ, ଏଇ ଲୋକଟିକୁ ଦେଖ, ବିଚାରୀ ଲୋକଟିର କିଛି ନାହିଁ । ତା'ପାଇଁ ଆମକୁ କିଛି କରିବାକୁ ହେବ ।"

ପୃଥିବୀରେ କେତେ ଲୋକ କାହିଁକି ଦୁଃଖ କଷ୍ଟ ପାଉଛନ୍ତି, ଶିବ ତାହା ପାର୍ବତୀଙ୍କୁ ବୁଝାଇ କହିଲେ—"ଦୁଃଖ ବା ସୁଖ ଭୋଗିବା ହେଉଛି କର୍ମର ଫଳ । ଅତୀତରେ ଯେ ଯାହା କରିଛି, ସେ ତାର ଫଳ ଏବେ ଭୋଗୁଛି । କିଏ ଏଇ ଜନ୍ମର କର୍ମ ଫଳ ଭୋଗୁଛି ତ ଆଉ କଏ ପୂର୍ବ ଜନ୍ମର କର୍ମ ଫଳ ଭୋଗୁଛି ।"

ଯାହାହେଉ ପାର୍ବତୀଙ୍କର ସେଇ ଗୋଟାଏ କଥା—"ଏଇ ଭିକାରୀଟି କଥା ତୁମେ ଟିକଏ ବୁଝ ।"

ଶିବ କହିଲେ—"ଆଚ୍ଛା ହେଉ, ମୁଁ ତୁମ କଥା ରଖିଲି ।" ଏହାକହି ସେ ଭିକାରୀ ଯାଉଥିବା ରାସ୍ତାରେ ସୁନା ମୁଣ୍ଡାଟିଏ ପକାଇଦେଲେ ।

ଭିକାରୀଟି କାନ୍ଧରେ ଝୁଲିଟି ପକାଇ ଆପଣା ଅଭାବ ବିଷୟ ଭାବ ଭାବ ଘରକୁ ଫେରୁଥାଏ । ଯାଉ ଯାଉ ବିଚାରିଲା, ଏମିତି ହାତ ଗୋଡ଼ ଚଳୁଥିବା-ବେଳେ ହିଁ ମୋର ମରିଯିବା ଭଲ । ବୁଢ଼ା ହେଲା ପରେ ଆଖି କ ତ ଆଉ ଦେଖାଯିବ ନାହିଁ; ସେତେବେଳେ ମୋ ଦୁର୍ଦ୍ଦଶା କହିଲେ ସରିବ ନାହିଁ । ଏହା ଭାବ ଅନ୍ଧ ହୋଇଗଲେ ସେ କେମିତି ଚାଲିବ ଏହା ପରୀକ୍ଷା କଲା । ଆଖି ବୁଜ ବାଡ଼ିରେ ଅଣ୍ଡାଳ ଅଣ୍ଡାଳ କେତେବାଟ ଚାଲିବାକୁ ଆରମ୍ଭ କରିଦେଲା ।

ଏପରି ଖୁଲିବାବେଳେ ବାଟରେ ପଡ଼ିଥିବା ସୁନା ମୁଣ୍ଡାଟିକୁ ସେ ଆଉ ଦେଖି-ପାରିଲା ନାହିଁ ।

ପାର୍ବତୀ ଏହା ଦେଖୁଥାନ୍ତି । ଭିକାରିର ଯିବା ବାଟରେ ସୁନା ମୁଣ୍ଡାଟି ପଡ଼ିଥିଲେ ବି ସେ ତାହା ପାଇପାରିଲା ନାହିଁ । ଏହା ଦେଖି ପାର୍ବତୀଙ୍କ ମନରେ ଦୁଃଖ ହେଲା ।

ଶିବ ପାର୍ବତୀଙ୍କୁ କହିଲେ—"ହେଉ ଦେଖିଲ ତ । ଭିକାରି ଲାଗି ମୁଁ ସୁନାମୁଣ୍ଡାଟିଏ ପକାଇଲି; ମାତ୍ର ସେ ତାକୁ ନିଜ ଦୋଷରୁ ଦେଖିପାରିଲା ନାହିଁ । ଏମିତି ମଣିଷ ନିଜେ ସୁବିଧା ସୁଯୋଗ ପାଇଲେ ବି ତାହା ହରାଇ ବସେ । ସେଥିପାଇଁ ମୁଁ କହୁଥିଲି ଯେ ଭଲ କାମ କଲେ ଭଲ ଫଳ ମିଳେ । ଏଥର ମୋହର କଥାର ରହସ୍ୟ ବୁଝିଲ ତ ?"

ପାର୍ବତୀ ସ୍ୱାମୀଙ୍କ କଥାରେ ମୁଣ୍ଡହଲାଇ ହଁ ଭରିଲେ । ଭିକାରି ପ୍ରତି ତାଙ୍କ ହୃଦୟରେ ଅସୀମ କରୁଣା ଥିଲେ ବି ସେ କିଛି ସାହାଯ୍ୟ କରିପାରିଲେ ନାହିଁ ।

( ହିମାଚଳ ପ୍ରଦେଶ )



## କାମନା ହାତ

ବହୁଦିନ ତଳେ ଗୋଟିଏ ଦେଶରେ ଜଣେ ରଜା ଥିଲେ । ତାଙ୍କ ନାଁ ଉଦୟଗିରି । ବିଖ୍ୟାତ ହେବାଲାଗି ତାଙ୍କର ପ୍ରବଳ ଇଚ୍ଛା । ସେଥିପାଇଁ ସେ ରାଜ୍ୟ ପରେ ରାଜ୍ୟ ଜୟ କରିବାକୁ ଲାଗିଲେ । ଏଇ ନିଶାରେ ସେ ପାଗଳ ହୋଇଗଲେ । ଆପଣା ରାଜ୍ୟ ଚାରିପଟେ ଯେତେ ଛୋଟ ରାଜ୍ୟ ଥିଲା, ସେଗୁଡ଼ିକ ସେ ଜୟକଲେ । କ୍ରମେ ତାଙ୍କର ରାଜ୍ୟର ସୀମା ବଢ଼ି ଯାଇଥିଲା ।

ଦିନେ ରଜା ଉପରବେଳା ଖୁବ୍ ଆଡ଼ମ୍ବରରେ ଶିକାର କରିବାକୁ ବାହାରିଲେ । ସାହାଯ୍ୟ କରିବାକୁ ତାଙ୍କ ପଛେ ପଛେ ବହୁ ଲୋକ ବି ଗଲେ । ବଣରେ ପହଞ୍ଚି ରଜା ପ୍ରଥମେ ଗୋଟିଏ ହରିଣ ଦେଖିଲେ । ରଜାଙ୍କୁ ଦେଖିବା ମାତ୍ରେ ହରିଣଟି ଧାଇଁବାକୁ ଲଗିଲା । ସେ ଯେତେ ଧାଇଁବାକୁ ଲଗିଲା, ରଜା ତା ପଛେ ପଛେ ସେତିକି ଜୋର୍‌ରେ ଘୋଡ଼ା ଛୁଟାଇ ଦେଲେ । ହରିଣ ପିଛୁ ଧାଇଁ ଧାଇଁ କେତେବେଳେ ପରେ ରଜା ଆସି ଗୋଟିଏ ସୁନ୍ଦର ନଈ-କୂଳରେ ପହଞ୍ଚିଲେ । ସୂର୍ଯ୍ୟାସ୍ତବେଳର ଗୋଲପି କିରଣରେ ନଈର ନୀଳପାଣି ଚକ୍ ଚକ୍ କରୁଥାଏ । ନଈ ଆରପଟେ ଗୋଟିଏ ପାହାଡ଼, ତାର ତଳୁ ଅଂଶରେ ଛୋଟିଆ ସହରଟିଏ । ସନ୍ଧ୍ୟା ହୋଇ ଆସୁଥିବାରୁ ଗାଈ ଗୋରୁ ସେଇ ସହରକୁ ଫେରୁଥାନ୍ତି । ସେମାନଙ୍କ ବେକରେ ଘଣ୍ଟି ସବୁ ଚମତ୍କାର ଭାବେ ବାଜୁଥାଏ । ସହରର ଗୋଟିଏ ଗୋଟିଏ ଘରେ ଦୀପ ଜଳିବାକୁ ଆରମ୍ଭ କଲା । ଏପରି ଏକ ଚମତ୍କାର ଦୃଶ୍ୟ ଦେଖି ରଜା ବିମୋହିତ ହୋଇଗଲେ । ହରିଣଟା ସେତେବେଳକୁ ନଈକୁ ଡେଇଁ ପଡ଼ିଲାଣି । ମୁହୂର୍ତ୍ତକ ମଧ୍ୟରେ ପାଣିରେ ପହଁରି ପହଁରି ସେ ଆରପଟ ଜଙ୍ଗଲରେ କୁଆଡ଼େ ଅଦୃଶ୍ୟ ହୋଇ-ଗଲା ।

ନଈଆଡ଼କୁ ଯାଉଥିବା ଜଣେ ଲୋକକୁ ଦେଖି ରଜା ସେଇ ସହରଟାର ନାମ ଓ ତାହା କେଉଁ ରାଜ୍ୟର ପଚାରିଲେ । ଲୋକଟି ରଜାଙ୍କୁ ଚିହ୍ନେ । ସେ କହିଲା—"ମହାରାଜ ! ଏଇ ସହରର ନାଁ ବସ୍ତୁପୁର । ଏଇଟି ଆପଣଙ୍କ ରାଜ୍ୟର ନୁହେଁ । ଏଇ ନଈ ପର୍ଯ୍ୟନ୍ତ ହିଁ ଆପଣଙ୍କର ରାଜ୍ୟର ସୀମା । ଏଇ ବସ୍ତିର ଲୋକମାନେ ପ୍ରାୟ ସମସ୍ତେ କେଉଟ । ଏଇ ନଈରୁ ମାଛ ମାରି ଚଳନ୍ତି ।"

ରଜା ଆଶ୍ଚର୍ଯ୍ୟ ହୋଇ ଭାବିଲେ—ଏଡ଼େ ସୁନ୍ଦର ସହରକୁ ସେ କିପରି ଏ ପର୍ଯ୍ୟନ୍ତ ତାଙ୍କ ଅଧୀନକୁ ଆଣିନାହାନ୍ତି । ଏହାକୁ ନିଜ ଅଧିକାରକୁ ଆଣିବା ଲଗି ରଜାଙ୍କର ଲୋଭ ହେଲା । ସଙ୍ଗେ ସଙ୍ଗେ ସେ ନିଜ ରାଜପ୍ରାସାଦକୁ ଫେରି ଆସିଲେ । ଆପଣାର ସୈନ୍ୟ ବାହିନୀକୁ ଆଦେଶ ଦେଲେ—"ଏଇ ମୁହୂର୍ତ୍ତରେ ଯାଇ ନଈକୂଳେ ଥିବା ବସ୍ତୁପୁର ସହରକୁ ଅଧିକାର କର ।"

ରଜାଙ୍କ ସୈନ୍ୟମାନେ ବସ୍ତୁପୁରରେ ପହଞ୍ଚିଲେ । ସେଠି ରହୁଥିବା

କେଉଟମାନଙ୍କ ସହ ସେମାନଙ୍କର ଲଢେଇ ହେଲା । ରାଜାଙ୍କ ସୈନ୍ୟମାନଙ୍କ ପାଖରେ ନାନାପ୍ରକାର ଅସ୍ତ୍ରଶସ୍ତ୍ର ଥାଏ । ମାତ୍ର କେଉଟମାନଙ୍କର ସମ୍ବଳଥିଲା କେବଳ ଲାଠି । ତଥାପି ସେମାନେ ନିର୍ଭୟରେ ସୈନ୍ୟମାନଙ୍କ ସହ ଖୁବ୍ ଲଢିଲେ । ସହରର ବହୁତ ଲୋକ ମରି ତଳେ ଲୋଟିଲେ । ତଥାପି ସେମାନେ ଏକଯୁଟ ହୋଇ ନିଜ ରାଜ୍ୟକୁ ରକ୍ଷାକରିବାକୁ ପ୍ରାଣ ପଣ କରିଥାନ୍ତି । ଏପରିକି ରାଜ୍ୟର ସ୍ତ୍ରୀ ପିଲା ସମସ୍ତେ ଲଢ଼େଇ କରୁଥାନ୍ତି । ସେମାନଙ୍କ ରକ୍ତରେ ନଈପାଣି ଲାଲ ହୋଇଗଲା ।

ଏଣେ ରାଜା ଉଆସରେ ରହି ଘଡ଼ିକୁ ଘଡ଼ି ଦୂତଠାରୁ ଲଢ଼େଇର ଖବର ବୁଝୁଥାନ୍ତି । ଦୁଇ ତିନଦିନ ଧରି ଯୁଦ୍ଧ ଲାଗିଲା । ତଥାପି ବି ରାଜାଙ୍କ ସୈନ୍ୟମାନେ ବନ୍ଧୁସ୍ତ୍ରର ଅଧିକାର କରିପାରିଲେ ନାହିଁ । ଅସ୍ତ୍ରଶସ୍ତ୍ର ନଥିବା କେଉଟମାନେ ହାତ ହତିଆର ଥିବା ରାଜାଙ୍କ ସୈନ୍ୟମାନଙ୍କୁ ଏପରି ପ୍ରତିରୋଧ କରୁଛନ୍ତି ଜାଣି ରାଜା କ୍ରୋଧରେ ଲାଲ ପଡ଼ିଗଲେ । ଆପଣା ସୈନ୍ୟମାନଙ୍କୁ ଠିକ୍ ଭାବରେ ଚଳେଇବା ଲାଗି ସେ ଭୃଣାସ୍ତ ଦିନ ନିଜେ ଯାଇ ଯୁଦ୍ଧକ୍ଷେତ୍ରର ପହଞ୍ଚିଲେ । ଆବଶ୍ୟକ ହେଲେ ସହରର ସମସ୍ତଙ୍କୁ ହତ୍ୟା କରିବାକୁ ଓ ସେଇ ସହରଟାକୁ ପୋଡ଼ି ଜାଳି ଧ୍ୱଂସ କରିଦେବାକୁ ସେ ପ୍ରସ୍ତୁତ ।

ରାଜା ସୈନ୍ୟଦଳର ମୁଖିଆମାନଙ୍କୁ ନିଜ ପାଖକୁ ଡ଼କାଇ ଆଣିଲେ । କାପରି ସୈନ୍ୟଚାଳନା କରିବାକୁ ହେବ, ଏ ବିଷୟରେ ବିଚାର ଚାଲିଲା । ଠିକ୍ ଏତିକିବେଳେ ଜଣେ ବୁଢ଼ା ଲୋକ ଆସି ରାଜାଙ୍କୁ ଦେଖା କରିବାକୁ ଚାହିଁଲା । ରାଜା ତାକୁ ଆସିବାକୁ ଅନୁମତି ଦେଲେ । ଲୋକଟି ରାଜାଙ୍କ ପାଖକୁ ଆସିଲା । ତାର ଦାଢି, ମୁଣ୍ଡବାଳ ପାଚି ଧୋଟପରି ହୋଇଥାଏ । ରାଜା ପଚାରିଲେ— 'ମୁଁ ବ୍ୟସ୍ତ ଥିବାବେଳେ ତୁମେ କାହିଁକି ମୋ ପାଖକୁ ଆସିଛ ?'

ବୁଢ଼ା କହିଲା—''ମହାରାଜ, ଅସମୟରେ ଆସିଥିବାରୁ ମୋ ଦୋଷ ମାର୍ଜନା କରନ୍ତୁ ।'' ତା ପରେ ସେ ଆଙ୍ଗୁଠି ଭଳି ହାଡ଼ଟିଏ ରାଜାଙ୍କୁ ଦେଖାଇ କହିଲା—''ମହିମା ! ଆପଣ ଏଇ ହାଡ଼ଟି ରଖନ୍ତୁ । ଏହାର ଅଦ୍ଭୁତ ଗୁଣ । ଏହା ବଦଳରେ ମୋତେ ଏଇ ହାଡ଼ ଓଜନର ସୁନା ଦେବାକୁ ହୁକମ ହେଉ ।''

ରାଜା ସେଇ ଛୋଟିଆ ହାଡ଼ଟିକୁ ଧରି ବୁଢ଼ାକୁ ପୁଣି କହିଲେ—"ଆଚ୍ଛା ହେଉ ! ଏଇଟାର ଓଜନ ବା କେତେ ? ମଣାଏ ହେବକି ନାହିଁ ସନ୍ଦେହ । ଯାହାହେଉ ତୁମକୁ ଏହାର ଦୁଇଗୁଣ ସୁନା ଦିଆଯିବ ।"

ବୁଢ଼ା ରାଜାଙ୍କୁ ନମସ୍କାର ଜଣାଇ ବିନୟରେ କହିଲା, "ମହାରାଜ ! ଏଇ ହାଡ଼ ଓଜନରୁ ରତିଏ ଅଧିକ ସୁନା ବି ମୋର ଦରକାର ନାହିଁ । ଏଇ ହାଡ଼ ଓଜନର ସୁନା ହିଁ ମୋର ଦରକାର ।"

ରାଜା ଲୋକଟିକୁ ପାଗଳ ଭାବି ଶୀଘ୍ର ତାକୁ ହାଡ଼ ଓଜନର ସୁନା ଦେଇ ବିଦା କରିଦେବାକୁ ଖମାରୋଇଙ୍କୁ ଆଦେଶ ଦେଲେ ।

ଖମାରୋଇ ହାଡ଼କୁ ନିକିତିରେ ଓଜନ କରିବାକୁ ବାହାରିଲା । ଗୋଟାଏ ପଟେ ହାଡ଼ ଓ ଅନ୍ୟ ପଟେ ସୁନା ପକାଇ ଓଜନ କଲା । ମାତ୍ର ଓଜନ କରି-ବାକୁ ଯାଇ ସେ ଆଶ୍ଚର୍ଯ୍ୟ ହୋଇଗଲା । ଆରେ ବାପରେ ବାପ୍, ମଣାଏ, ଦିମଣା, ଦଶମଣା ଯେତେ ଓଜନର ସୁନା ରଖିଲେ ବି ହାଡ଼ର ଓଜନ ବେଶି ହୋଇଯାଉଛି । ରାଜା ବି ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ସେଇ ଗ୍ରେଟ ଜିନିଷଟିକୁ ହାତରେ ଧରି ଭଲଭାବେ ପରୀକ୍ଷା କଲେ । ତାହା ତାଙ୍କ ହାତକୁ ହାଲୁକା ବୋଧ ହେଲା, ମାତ୍ର କି ଆଶ୍ଚର୍ଯ୍ୟ କଥା । ହାତକୁ ନିକିତିରେ ଥୋଇବା ପରେ ଏପରି କାହିଁକି ହୋଇଯାଉଛି ? ଏହାପରେ କଲେ, ଦି'କଲେ, ତିନିକଲେ ଓଜନର ସୁନା ବି ସେଇ ଗ୍ରେଟ ହାଡ଼ର ଓଜନ ସଙ୍ଗେ ସମାନ ହୋଇପାରିଲା ନାହିଁ । ଜଣେ ସାମାନ୍ୟ ବ୍ୟକ୍ତିର ଅନୁରୋଧ ରକ୍ଷା-କରିବାକୁ ଅକ୍ଷମ ହେଉଛନ୍ତି ଭାବି ରାଜା ଲଜ୍ଜିତ ବୋଧକଲେ । ସେ ଯୁଦ୍ଧ ବନ୍ଦ କରିବାକୁ ଆଦେଶ ଦେଲେ । ଭଣ୍ଡାରରେ ଯେତେ ସୁନା ଥିଲା, ସବୁ ଆଣାଇ ହାଡ଼ ସଙ୍ଗେ ଓଜନ କରାଇଲେ । ତଥାପି ତାହା ସମାନ ହେଲାନାହିଁ । ପୁଣି ପୁଣି ଏଇକଥା ଚାରିଆଡ଼େ ପ୍ରଚାର ହୋଇଗଲା । ଯେଉଁ ସହର ପାଇଁ ଯୁଦ୍ଧ ଚାଲିଥିଲା, ସେଇ ସହରର ସ୍ତ୍ରୀ, ପୁରୁଷ, ପିଲା ବୁଢ଼ା ସମସ୍ତେ ଏଇ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ଧାଇଁ ଆସିଲେ । ନିର୍ଭୟରେ ଆସି ସେମାନେ ରାଜାଙ୍କ ଚାରିପାଖେ ଜମିଗଲେ । ରାଜାଙ୍କ ସୈନ୍ୟମାନଙ୍କ ଭିତରେ ଏକ ଭୟ ବ୍ୟାପି-ଗଲା । ସେମାନେ ମଧ୍ୟ ସେମାନଙ୍କ ଅସ୍ତ୍ରଶସ୍ତ୍ର ରଖିଦେଇ ସେଇ ଓଜନ ଦେଖି-ବାକୁ ଆସି ସେଇ ସ୍ଥାନରେ ପହଞ୍ଚିଲେ ।

ରାଜାଙ୍କ ଭଣ୍ଡାରରେ ଥିବା ସୁନାତକର ଓଜନ ମଧ୍ୟ ସେଇ ଶ୍ରେଷ୍ଠ ହାଡ଼ଠାରୁ କମ୍ ହେଲ୍ । ରାଜା ଏକ ଅଜଣା ଭୟରେ ଥର ଉଠିଲେ । ମନେ-ହେଲ, ଯେପରି ତାଙ୍କୁ ବିପଦ ମାଡ଼ିଆସୁଛି । ସେ ବୁଢ଼ାକୁ ପଚାରିଲେ, "ହଇଓ ବାବୁ ! ଏ କି ବିଚିତ୍ର କଥା । ଏଇଟା କି ହାଡ଼ ? ସବୁତକ ସୁନା କାହିଁକି ଏଇ ଶ୍ରେଷ୍ଠ ହାଡ଼ଟି ସଙ୍ଗେ ସମାନ ହୋଇପାରୁନାହିଁ ?"

ବୁଢା ହାଡ଼ଟିକୁ ନିକିତିରୁ ଉଠାଇ ଆଣିଲ । ତାକୁ କିଛି ସମୟ ଭଲ-କରି ନିରୀକ୍ଷଣ କରି ରାଜାଙ୍କ ହାତକୁ ପୁଣି ବଢ଼େଇ ଦେଇ କହିଲ — "ମହାରାଜ ! ମୋର ଆଉ ସୁନା ଦରକାର ନାହିଁ । ଆପଣ ଏଇ ହାଡ଼ଟି ରଖନ୍ତୁ । ଏଇଟି ହେଉଛି କାମନାର ହାଡ଼ । ମଣିଷ କେବେ ତାର ସମସ୍ତ କାମନାକୁ ପୂରଣ କରିପାରିବ ନାହିଁ । ଆପଣ ଏତେ ରାଜ୍ୟ ଜୟ କଲେ, ତଥାପି ଆପଣଙ୍କ ମନ ସନ୍ତୁଷ୍ଟ ହୋଇନାହିଁ । ତେବେ ବି ଆପଣ ନିର୍ଦ୍ଦୋଷ ସ୍ତ୍ରୀ ପିଲଙ୍କୁ ମାରି ରକ୍ତନଦୀ ବୁହାଇ ଗୋଟିଏ ସହର ଅଧିକାର କରିବାକୁ ଚାହାନ୍ତି ।" ରାଜାଙ୍କ ହୃଦୟ ନରମ ହୋଇଗଲ । ସେ କହିଲେ—"ଏଥର ମୁଁ ମୋ ଭୁଲ ବୁଝିପାରିଲି । ମୁଁ ଆଉ ଯୁଦ୍ଧ କରିବାକୁ ଚାହେଁନା ।" ମନ୍ତ୍ରୀଙ୍କୁ ଆଦେଶ ଦେଇ ରାଜା କହିଲେ, "ଏଇ ସୁନା ସବୁ ଯୁଦ୍ଧରେ କ୍ଷତଗ୍ରସ୍ତ ହୋଇ-ଥିବା ଲୋକଙ୍କ ମଧ୍ୟରେ ବାଣ୍ଟିଦିଅ ।"

ଅନୁତାପରେ ରାଜାଙ୍କ ମୁଣ୍ଡ ନଇଁ ପଡ଼ିଥାଏ । ସେ ଲମ୍ବିହୋଇ ବୁଢ଼ାର ପାଦତଳେ ପଡିଗଲେ । ବୁଢ଼ାର ପାଦଧୂଳି ନେବାକୁ ହାତ ବଢ଼ାଇ ଦେଖିଲା-ବେଳକୁ ବୁଢ଼ା ଆଉ ସେଠାରେ ନଥିଲେ । ରାଜାଙ୍କ ହାତରେ ଥିଲ କେବଳ ସେଇ ଶ୍ରେଷ୍ଠ ହାଡ଼ ଖଣ୍ଡିକ ।

ରକ୍ତରେ ଲାଲ ହୋଇ ଯାଇଥିବା ନଦୀର ପାଣି ପୁଣି ସଫା ହୋଇ-ଗଲ ! ରାଜା ତାଙ୍କ କଥା ରଖିଲେ । ରାଜ୍ୟତଳଭର ନିଶା ତାଙ୍କର ଛୁଟିଗଲ । ସେ ହେଲେ ଦୟାଳୁ ଓ ଧର୍ମପରାୟଣ । ଧାର୍ମିକ ରାଜା ଭାବେ ତାଙ୍କ ନାଁ ବିଖ୍ୟାତ ହୋଇଗଲ ।

( ହିମାଚଳ ପ୍ରଦେଶ )

# ସୁନ୍ଦର ସ୍ୱପ୍ନ

ଗୋଟିଏ ଗାଁରେ ତିନିଜଣ ମୂର୍ଖ ଥାନ୍ତି । ଦିନେ ତିନିହେଁ ସଉଦା କିଣିବା ଲାଗି ବଜାରକୁ ବାହାରିଲେ । ଯାଉ ଯାଉ ବାଟରେ ସନ୍ଧ୍ୟା ହୋଇଗଲା । ନିକଟରେ ଗୋଟିଏ ଚଟିଘର ଦେଖି ସେମାନେ ରାତିଟା ସେଇଠି ଆଶ୍ରୟ ନେଲେ । କାହାରିକୁ ଭଲ ରୋଷେଇ କରିବା ଜଣାନାହିଁ । ସ୍ଥିରହେଲା, ଖୀରି ତିଆରି କରି ଖାଇ ରାତିଟା ଚଳେଇନେବେ ।

ତିନିହେଁ ଖୀରି ତିଆରି ର ଲାଗିଲେ । କିଛି ସମୟ ପରେ ଖୀରି ତିଆରି ହୋଇଗଲା । ତିନିହେଁ ଖୁସିରେ ଦହଡ଼ି ଦହଡ଼ି ଖୀରି ଖାଇଲେ । ଖୀରି ବେଶୀ ତିଆରି ହୋଇଥିଲା, ଏଣୁ ଖାଇସାରିଲା ପରେ କିଛି ବଳିପଡ଼ିଲା । ବଳିଥିବା ଖୀରିତକ ଫିଙ୍ଗିଦେବାକୁ କାହାରି ଇଚ୍ଛା ହେଲା ନାହିଁ । ତିନିହେଁ ରାଜି ହୋଇ କହିଲେ, ଏହାକୁ ରଖିଦେବା, ସକାଳେ ଖାଇବା । ମାତ୍ର ସକାଳେ ଏହାକୁ କିଏ ଖାଇବ ତାହା ସ୍ଥିର ହୋଇପାରିଲା ନାହିଁ । ଏଥିପାଇଁ ସେମାନଙ୍କ ମଧ୍ୟରେ କଳି ଆରମ୍ଭ ହୋଇଗଲା ।

ଜଣେ କହିଲା—"ବର୍ତ୍ତମାନ ମୁଁ କମ୍ ଖୀରି ଖାଇଛି, ଏଣୁ କାଲି ସକାଳେ ମୁଁ ଏକା ସବୁତକ ଖୀରି ଖାଇବି ।"

ଆଉ ଜଣେ ସେହିପରି ନିଜେ ସବୁତକ ଖୀରି ଖାଇବ ବୋଲି କହିଲା । ତୃତୀୟ ଜଣକ ମଧ୍ୟ ନିଜେ ସବୁତକ ଖୀରି ଖାଇବା ପାଇଁ ଯୁକ୍ତି କଲା । ବହୁତ ସମୟ ପର୍ଯ୍ୟନ୍ତ ଏଥିପାଇଁ ଖୁବ୍ ପାଟିତୁଣ୍ଡ ଚାଲିଲା । ଶେଷରେ ସ୍ଥିରହେଲା, ରାତିରେ ଯେ ଭଲ ସପନ ଦେଖିବ, ସେଇ ଜଣକ ସକାଳୁ ଖୀରିତକ ଖାଇବ ।

କ୍ରମେ ରାତି ବେଶୀ ହେଲା । ସୁନ୍ଦର ସ୍ୱପ୍ନ ଦେଖିବା ଆଶାରେ ତିନିହେଁ ଚାଦର ଘୋଡ଼େଇହୋଇ ଶୋଇଲେ । ସୁନ୍ଦର ସପନ ଦେଖିବେ ବୋଲି ବିଶ୍ୱାସ କରି ଦୁଇ ଜଣଙ୍କୁ ନିଘୋଡ଼ ନିଦ ହୋଇଗଲା । ତୃତୀୟ ଜଣକ ଆଖିକୁ ଆଦୌ ନିଦ ମାଡୁନଥାଏ । ରାତି ଅଧହେଲା; ତଥାପି ସେ ସେମିତି ଚାହିଁରହିଥାଏ ।

ତାର ଆଶଙ୍କା ହେଲା, ଏଇ ବାଜରେ ସେ ବୋଧହୁଏ ହାରିଯିବ । ଏଣେ ଖିର ଖାଇବା ଲାଗି ତାର ଭାରି ଲୋଭ । ଶେଷକୁ ସେ ଆଉ ସ୍ଥିର ହୋଇ ଶୋଇ- ପାରିଲା ନାହିଁ । ଚୁପ୍‌କରି ଉଠିଯାଇ ସବୁତକ ଖିର ଖାଇଦେଲା । ତା ପରେ ଆସି ଆପଣା ଜାଗାରେ ଶୋଇପଡ଼ିଲା ।

ସକାଳ ହେଲା । କେହି ଆଗ ଉଠୁ ନଥାନ୍ତି । ନିଦ ଭାଙ୍ଗିଲେ ବି ଚେଇଁ- କରି ଶୋଇଥାନ୍ତି । କିଛି ସମୟ ପରେ ହଠାତ୍ ସତେ ଯେପରି ସମସ୍ତଙ୍କର ଏକାବେଳକେ ନିଦ ଭାଙ୍ଗିଗଲା । ତିନିଜଣଯାକ ପୂର୍ବ ବ୍ୟବସ୍ଥା ଅନୁସାରେ ସ୍ୱପ୍ନ ଦେଖିବା କଥା ପକାଇଲେ । ଯେଉଁ ଦୁଇଜଣ ପଣ୍ଡିତ ନିଦରେ ଶୋଇ ପଡ଼ିଥିଲେ, ସେମାନେ କୌଣସି ସ୍ୱପ୍ନ ଦେଖି ନଥିଲେ । ମାତ୍ର ମନେ ମନେ ସେମାନେ ଗୋଟାଏ ଗୋଟାଏ ସ୍ୱପ୍ନ ଗଢ଼ିନେଇଥିଲେ ।

ସେହି ଦୁହିଁଙ୍କ ମଧ୍ୟରୁ ଜଣେ କହିଲା— "ଆଚ୍ଛା ଭାଇ, ଏଥର ସମସ୍ତେ ଯେ ଯାହା ସ୍ୱପ୍ନକଥା କୁହ । ଦେଖିବା, କାହା ଗପ ସବୁଠାରୁ ସରସ ।"

ଅନ୍ୟ ଜଣକ ମୁଣ୍ଡ ହଲାଇ କହିଲା — ଆଚ୍ଛା, ମୁଁ ପ୍ରଥମେ ମୋ ସ୍ୱପ୍ନ କଥା ଆରମ୍ଭ କରୁଛି । ମୁଁ ସ୍ୱପ୍ନ ଦେଖିଲି—"ମୁଁ ଯେମିତି ଗୋଟାଏ ଘୋର ଅରଣ୍ୟରେ ରହିଛି । ସେଇଠି ମୋ ଘର ପାଖରେ ନାଲି, ନେଳି, ଧଳା, ହଳଦିଆ, ରଙ୍ଗଣି, ଏମିତି ନାନାପ୍ରକାର ଫୁଲ ଫୁଟିଥାଏ । ଭ୍ରମର ସବୁ ଗୁଣୁ- ଗୁଣୁ କରୁଥାନ୍ତି ! ସେଇଠି ମୁଁ ଗୋଟିଏ ଗୀତ ଗାଇଲି । ଏହି ସମୟରେ ପରୀଟିଏ ମୋ ଗୀତ ଶୁଣି ହଠାତ୍ ମୋ ଆଡ଼କୁ ଧାଇଁ ଆସିଲା । ମୋ ହାତକୁ ଧରି କହିଲା- ତୁମପରି ଏତେ ସୁନ୍ଦର ପୁରୁଷ ମୁଁ ଆଉ କାହାକୁ ଦେଖି ନାହିଁ । ଏହା କହି ପରୀଟି ମୋତେ ଦୁଇହାତରେ ତା ଆଡ଼କୁ ଟାଣିନେଲା ।"

ଏହାପରେ ସେ ତୃତୀୟକୁ କହିଲା—"ଆଚ୍ଛା, ଏଥର ତୁମେ ତୁମ ସ୍ୱପ୍ନ ବିଷୟ କୁହ ।"

ତୃତୀୟ ଜଣକ କହିଲା—"ନା, ଆଗ ମନ୍ଦିରରେ ଶୋଇଥିବା ପାଙ୍କଟି କଥା କହିସାରୁ, ମୁଁ ସବା ଶେଷରେ ମୋ ସ୍ୱପ୍ନକଥା କହିବ ।"

ମଝିରେ ଶୋଇଥିବା ଜଣକ କହିଲା—"ହଉ ତେବେ ମୋ ସ୍ୱପ୍ନ କଥା ଶୁଣ । ମୁଁ ଦେଖିଲି, ଯେପରି ମୁଁ ଜଣେ ରାଜା ହୋଇଯାଇଛି । ମୋ ଚାରିପଟେ ହାତୀ, ଘୋଡ଼ା, ସୈନ୍ୟ ସାମନ୍ତ ଢେର ରହିଛନ୍ତି ।"

ଏହାପରେ ତୃତୀୟ ଜଣଙ୍କର ସ୍ୱପ୍ନ ବିଷୟ କହିବା କଥା ସେ କହିଲା— "ଭାଇମାନେ, ତୁମେ ସବୁ ତ ଖୁବ୍ ଭଲ ସ୍ୱପ୍ନ ଦେଖିଲ; ମାତ୍ର ମୁଁ ଗୋଟାଏ ବଡ଼ ଭୟଙ୍କର ସ୍ୱପ୍ନ ଦେଖିଲି । ସ୍ୱପ୍ନରେ ମୁଁ ଗୋଟାଏ ଭୂତକୁ ଦେଖିଲି । ସେ ଆସି ମୋତେ ଖୁବ୍ ଜୋର୍‌ରେ ମାରିବାକୁ ଆରମ୍ଭ କଲା ।"

'କାହିଁକି ?' ଅନ୍ୟ ଦୁଇଜଣଯାକ ଏକାସାଙ୍ଗେ ପଚାରିଲେ । ଭୂତ ମୋତେ କହିଲା—"ଯାଇ ଖିରଟିକ ଖାଇଦେ । ନୋହିଲେ ମୋଠୁ ପ୍ରାଣ ପାଇବୁ ନାହିଁ । ତୋତେ ମାରୁ ମାରୁ ମାରିଦେବି ।"

'ତା ହେଲେ ତୁ କ'ଣ ଉଠିଯାଇ ଖିରତକ ଖାଇଦେଲୁ ?'

"ହଁ, ତା ନକରି ଆଉ କ'ଣ କରନ୍ତି ? ମୋତେ ପରା ଭୂତ ମାରି-ଦେବାକୁ ବସିଥିଲା । ଖିର ଖାଇଲି ବୋଲି ତ ତା' ହାବୁଡ଼ରେ ବଞ୍ଚିଗଲି ।"

ଅନ୍ୟ ଦୁଇଜଣଯାକ କହିପକାଇଲେ—"ଆମକୁ ଡ଼ାକିଲୁ ନାହିଁ ?"

ସେ କହିଲା—"ତୁମ ଦୁହିଁଙ୍କୁ କିପରି ବା ଡ଼ାକିଥାନ୍ତି ? ତୁମ ଭିତରେ ଜଣେ ତ ରାଜା ହୋଇଥିଲା, ଆଉ ଜଣକୁ ତ ପରୀ ଦୁଇ ହାତରେ ଜାବୁଡ଼ି ଧରିଥିଲା ।"

ଏହା ଶୁଣି ଅନ୍ୟ ଦୁଇଜଣ କାନ ମୁଣ୍ଡ ଆଉଁସି ରହିଲେ । ବେଳ ପଡ଼ିଲେ ମୂର୍ଖ ବି ଚାଲାଖ ହୋଇଯାଆନ୍ତି ।

( ହିମାଚଳ ପ୍ରଦେଶ )



# ମୂର୍ଖ ଖୋଜା

ଜ .ଣ ରାଜା ଥିଲେ । ଥରେ ସେ ତାଙ୍କ ମନ୍ତ୍ରୀଙ୍କୁ କହିଲେ—"ଯାଅ, ମୋ ରାଜ୍ୟରୁ ଶୀଘ୍ର ଚାରିଜଣ ମୂର୍ଖଙ୍କୁ 'ଖୋଜ ମ୍ୟେ । ମୋ ଆଖକୁ ନେଇ ଆସ ।" ରାଜାଙ୍କ ଆ .ଦେଶ । ମନ୍ତ୍ରୀ ସଙ୍ଗେ ସଙ୍ଗେ ମୂର୍ଖ ଖୋଜିବାକୁ ବାହାରି ପଡ଼ିଲେ । କେ.ତ ଅଞ୍ଚଳ ବୁଲି ବୁଲି ସେ ଦିନେ ଦେଖିଲେ ଜଣେ ଲୋକ ମସ୍ତ ବୋଝଟିଏ ମୁଣ୍ଡେଇ ଗୋଟାଏ ଟଟ୍ଟୁ ଘୋଡ଼ା ଉପରେ ବସିକରି ଯାଉଛି । ମନ୍ତ୍ରୀ ବୁଝି-ପାରିଲେ ଯେଉଁ ଲୋକ ଘୋଡ଼ା ଉପରେ ବୋଝ ନରଖି ତାକୁ ମୁଣ୍ଡେଇ ଘୋଡ଼ାରେ ବସିଛି ସେ ନିଶ୍ଚୟ ବୋକା । ମନ୍ତ୍ରୀ ଲୋକକୁ ଏକ ନମ୍ବର ବୋକା ବୋଲି ସ୍ଥିର କରି ତାକୁ କହିଲେ—"ଆରେ ହେ, ମହାରାଜାଙ୍କ ହୁକୁମ, ତୁ ମୋ ସାଙ୍ଗରେ ରାଜାଙ୍କ ପାଖକୁ ଚାଲ ।"

ଦୁଦଣ୍ଡ କଟିବା ଟ ଗଲାପରେ ମନ୍ତ୍ରୀ ଦେଖିଲେ, ଜଣେ ଲୋକ ରାସ୍ତାରେ ଲୋକଙ୍କୁ ମିଠେଇ ବାଣ୍ଟୁଛି । ମନ୍ତ୍ରୀ ଲୋକଟିକୁ ଡାକି ପଚାରିଲେ — "ହଇଓ ବାବୁ ! ତୁମେ କାହିଁକି ଏମିତି ମିଠେଇ ବାଣ୍ଟୁଛ ? ତୁମର କଣ ହୋଇଛି ?"

ଲୋକଟି କହିଲା—ଆଜ୍ଞା, ମୁଁ ମୋ ସ୍ତ୍ରୀକୁ ଛାଡ଼ପତ୍ର ଦେଇଥିଲି । ତା' ପରେ ସେ ଆଉ ଜଣକୁ ବାହା ହୋଇଗଲା । ଏବେ ତା'ର ଗୋଟିଏ ପୁଅ ହୋଇଛି । ଏହାଶୁଣି ମନ ଖୁସିରେ ମୁଁ ମିଠେଇ ବାଣ୍ଟୁଛି । ମନ୍ତ୍ରୀ ଦେଖିଲେ ଇଏ ପ୍ରକୃତରେ ଆଉ ଗୋଟିଏ ମୂର୍ଖ । ସେ ତାକୁ କହିଲେ—"ମହାରାଜାଙ୍କ ଆଦେଶ ତାକୁ ଦେଖା କରିବାକୁ ଏବେ ମୋ ସାଙ୍ଗରେ ଚାଲ ।"

ରାଜାଙ୍କ ଆଦେଶ ଶୁଣି ଲୋକଟି ମନ୍ତ୍ରୀଙ୍କ ସଙ୍ଗେ ରାଜାଙ୍କ ପାଖକୁ ବାହାରିଲେ ।

ମନ୍ତ୍ରୀ ଏହିପରି ଦୁଇଟି ଲୋକଙ୍କୁ ନେଇ ଲେଉଟିଲେ । ଦୁଇଜଣଙ୍କୁ ନେଇ ସେ ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା ପଚାରିଲେ—"ଏଇ ଦୁଇ-ଜଣଙ୍କୁ ତୁମେ ମୂର୍ଖ ବୋଲି ବାଛିବାର କାରଣ କଣ ?"

ମନ୍ତ୍ରୀ ତାହା ରାଜାଙ୍କୁ ବୁଝାଇ ଦେଲେ । ରାଜା ଏପରି ଦୁଇଜଣ ମୂର୍ଖଙ୍କୁ ଦେଖି ଖୁବ୍ ଖୁସି ହୋଇଗଲେ । ତା'ପରେ ରାଜା ପଚାରିଲେ — "ମନ୍ତ୍ରୀ, ମୁଁ ତୁମକୁ ଚାରୋଟି ମୂର୍ଖ ଖୋଜିଆଣିବାକୁ କହିଥିଲି, ତୁମେ ମାତ୍ର ଦୁଇଜଣଙ୍କୁ ଆଣିଲ କାହିଁକି ? ଆଉ ଦୁଇଜଣ କୁଆଡେ ଗଲେ ?"

ମନ୍ତ୍ରୀ ଅତ୍ୟନ୍ତ ବିନୟରେ କହିଲେ—"ମହାରାଜା ମୁଁ ହେଉଛି ସେହି ତୃତୀୟ ବୋକା । କାରଣ ମୁଁ ଆଉ କିଛି କାମ ନ କରି ମୂର୍ଖ ଓ ବୋକା ଲୋକଙ୍କୁ ଖୋଜିବାରେ ମୋର ସମୟ ନଷ୍ଟ କରିଛି ।"

ରାଜା ପଚାରିଲେ- "ତାହାହେଲେ ଚତୁର୍ଥ ବୋକା ଜଣକ କିଏ ସେ ?"

ମନ୍ତ୍ରୀ କହିଲେ—"ମହିମା କ୍ଷମା କରନ୍ତୁ, ମୁଁ ଏହାର ଉତ୍ତର ଦେଇ ପାରିବି ନାହିଁ ।" ରାଜା ଚିଡ଼ିଯାଇ କହିଲେ—"ତୁମକୁ ଅବଶ୍ୟ କହିବାକୁ ପଡିବ ।"

ମନ୍ତ୍ରୀ କହିଲେ—"ମହାରାଜ ! ମୋତେ ଯଦି କ୍ଷମା ଦେବେ ତେବେ ମୁଁ ଏହାର ଉତ୍ତର ଦେବାକୁ ପ୍ରସ୍ତୁତ ଅଛି ।"

ରାଜା ସମ୍ମତି ଜଣାଇବାରୁ ମନ୍ତ୍ରୀ କହିଲେ— "ମହାରାଜ, ଆପଣ ହେଉଛନ୍ତି ଚତୁର୍ଥ ମୂର୍ଖ ବ୍ୟକ୍ତି ।"

ରାଜା ପଚାରିଲେ—"ତୁମେ ମୋତେ ମୂର୍ଖ ବ୍ୟକ୍ତି ଏପରି ବିଚାରିବାର କାରଣ କଣ ?"

ମନ୍ତ୍ରୀ କହିଲେ—"ମହାରାଜ ! ଆପଣ ଆପଣଙ୍କ ରାଜ୍ୟରୁ ଚାରିଜଣ ଜ୍ଞାନୀ, ଗୁଣୀ ଲୋକଙ୍କୁ ଖୋଜି ବାହାର କରିବାରେ ମନ ନ ଦେଇ ଚାରିଜଣ ମୂର୍ଖଙ୍କୁ ଖୋଜିବାରେ ହିଁ ମନ ଦେଇଛନ୍ତି ।"

ରାଜା ମନ୍ତ୍ରୀଙ୍କ ଚତୁର ବୁଦ୍ଧିକୁ ପ୍ରଶଂସା ନକରି ରହିପାରିଲେ ନାହିଁ । ଆପଣାର ଭୁଲ ତ୍ରୁଟି ଲଜ୍ଜିତ ହେଲେ । ବୁଦ୍ଧିମାନ ମନ୍ତ୍ରୀ ଖୁବ୍ ବିନୟର ସହିତ ଏଇ ବିଷୟଟି ଦେଖାଇ ଦେଇଥିବାରୁ ସେ ତାଙ୍କୁ ବହୁତ ପୁରସ୍କାର ଦେଲେ ।



( ହିମାଚଳ ପ୍ରଦେଶ )

# ବିଚାରକଙ୍କ ବୁଦ୍ଧି

ଜଣେ ବିଚାରକ ଥିଲେ । ନ୍ୟାୟ ବିଚାରରେ ତାଙ୍କର ଖୁବ୍ ନାଁ ଡାକ । ଦୂରଦୂରାନ୍ତରରୁ ଲୋକେ ତାଙ୍କ ନିକଟକୁ ପରାମର୍ଶ ପାଇଁ ଆସନ୍ତି । ବୟସ ଅଳ୍ପ ହେଲେ ବି ସେ ଦେଶର ରାଜା ମଧ୍ୟ ତାଙ୍କର ମତାମତ ନେଉନ୍ତି । ଘରେ ତାଙ୍କର ସ୍ତ୍ରୀ; ଦେଖିବାକୁ ଯେପରି ସୁନ୍ଦର ସେହିପରି ସୁକୁମାର । ଫୁଲରେ ଶୁଅନ୍ତି, ଫୁଲରେ ଚାଲନ୍ତି । ଧନର ତ ଅଭାବ ନାହିଁ । ଘରେ ଗଣ୍ଡା ଗଣ୍ଡା ଦାସୀ ଖଞ୍ଜା । ତଥାପି ସ୍ୱାମୀଙ୍କ ଲାଗି ତାଙ୍କ ମନରେ ସବୁବେଳେ ଦୁଃଖ । ନ୍ୟାୟ ବିଚାରରେ ସବୁବେଳେ ଲାଗିଥିବାରୁ ଘରେ ତାଙ୍କୁ ଖୁବ୍ କମ୍ ସମୟ ରହିବାକୁ ପଡ଼େ । ସ୍ତ୍ରୀଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ବି ଫୁରୁସତ୍ ନଥାଏ । ଏଣୁ ସ୍ତ୍ରୀ ସବୁବେଳେ ଚିଡ଼ ଚିଡ଼ ହୁଅନ୍ତି ।

ସେ ଦେଶର ରାଜାଙ୍କର ଗୋଟିଏ ବୋଲି ପୁଅ; ମାତ୍ର ସବୁ ଖରାପ ଗୁଣତକ ତାରିଠାଇଁ । ରାତିସାରା ଏଣେ ତେଣେ ବୁଲେ । ଖରାପ ସ୍ତ୍ରୀ ଲୋକଙ୍କ ସଙ୍ଗେ ମିଶେ; ନାଚ ଗୀତ ଶୁଣି କାଳ କଟାଏ । ଏଣେ ବିଚାରକଙ୍କ ସ୍ତ୍ରୀ ସବୁ-ଦିନ ରାତିରେ ଝରକା ପାଖେ ବସି ସ୍ୱାମୀଙ୍କ ଆସିବା ବାଟକୁ ଚାହିଁ ରହିଥାନ୍ତି । ରାଜକୁମାର ଗଲାବେଳେ ତାଙ୍କୁ କେତେଥର ଦେଖିଲେଣି । ଦିନେ ରାତିରେ ମଦନିଶାରେ ଭୋଳ ହୋଇ ସେ ବିଚାରକଙ୍କ ଘର ଭିତରକୁ ପଶିଆସିଲା । ବିଚାରକଙ୍କ ସ୍ତ୍ରୀ ତାଙ୍କୁ ଦେଖି ଡରିଗଲେ । ତଥାପି ଖୁବ୍ ସାହସରେ କହିଲେ— "ଘରୁ ବାହାରି ଯାଅ, ପାଦେ ଆଗକୁ ଆସିବତ ଭଲ ହେବନାହିଁ ।"

ମାତ୍ର ରାଜକୁମାରର ହୋସ୍ ନଥାଏ, ସେ ଯେମିତି ସ୍ତ୍ରୀଙ୍କ ପାଖକୁ ମାଡ଼ି ଆସିଛି, ସେ ସଙ୍ଗେ ସଙ୍ଗେ ତାର ବେକକୁ ଚିପି ଧରିଲେ । ଏତେ ଜୋର୍‌ରେ ଚିପିଧରିଲେ ଯେ, ଅଳ୍ପ ସମୟ ମଧ୍ୟରେ ରାଜକୁମାର ଛଟପଟ ହୋଇ ମରିଗଲା ।

ମୁହୂର୍ତ୍ତକ ମଧ୍ୟରେ ଏପରି ଗୋଟିଏ ଅଘଟଣ ଘଟିବ ବୋଲି ସ୍ତ୍ରୀ ଭାବି ନଥିଲେ ।

ରାଜକୁମାର ଘର ଭିତରକୁ ପଶିଆସିବା ବିଷୟ ଘରର ଦାସ ଦାସୀ ବା ଆଉ କାହା ନଜରରେ ପଡ଼ନାହିଁ । ସ୍ତ୍ରୀ ସ୍ୱାମୀ ସଙ୍ଗେ ରାଜକୁମାରର ଶବକୁ ପଲଙ୍କ ତଳେ ଲୁଚାଇଦେଲେ ।

ବାହାରକୁ ଆସି ସେ ଦାସଦାସୀମାନଙ୍କୁ ଯେଝା ଘରକୁ ଚାଲିବାକୁ କହିଦେଲେ । ସେମାନେ ଚାଲିଗଲା ପରେ ସେ କ'ଣ କରିବେ ସେଇଆ ଭାବୁଥାନ୍ତି । ରାଜାପୁଅକୁ ମାରିବା ବିଷୟ କ'ଣ ଲୁଚେଇ ହେବ ? ସକାଳ ହେଲେ ସମସ୍ତେ ଏହା ଜାଣିଯିବେ । ରାଜା ନିଶ୍ଚୟ ତାଙ୍କୁ ଶୂଳିଦେବେ । ଉଦ୍ଧାର ପାଇବାର କୌଣସି ଉପାୟ ତାଙ୍କୁ ଦିଶୁନଥାଏ । ସ୍ୱାମୀ ଆସିଲେ ବା କ'ଣ ବାଟ ବତାନ୍ତେ । ଘର ତାଙ୍କୁ ମାଡ଼ ମାଡ଼ ପଡୁଥାଏ । ସ୍ୱାମୀ ଫେରିଆସିବା ବାଟକୁ ବ୍ୟାକୁଳ ଭାବରେ ସେ ଅପେକ୍ଷା କରିଥାନ୍ତି ।

ରାତି ଅଧକୁ ସ୍ୱାମୀ ଆସିଲେ । ସ୍ତ୍ରୀଙ୍କ ମଳିନମୁଖ ଦେଖି ସେ କ'ଣ ଗୋଟିଏ ଘଟିଛି ଭାବି ପଚାରିଲେ—"କଣ ହୋଇଛି ? ତୁମ ମୁହଁ କାହିଁକି କଳାକାଠ ପଡ଼ିଯାଇଛି ?"

ସ୍ତ୍ରୀ ପାଦତଳେ ପଡ଼ିଯାଇ କାନ୍ଦି କାନ୍ଦି କହିଲେ—"ଯଦି ଦୋଷ କ୍ଷମା କରିବ ଓ ମୋ ଜୀବନ ବଞ୍ଚାଇ ଦେବ ତେବେ କହିବି ।" ସ୍ୱାମୀ ହଁ ଭରିଲେ । ତଥାପି ସ୍ତ୍ରୀ କହିଲେ—"ମୋ ଦେହ ଛୁଇଁ ସତ୍ୟ କଲେ କହିବି ।" ସ୍ୱାମୀ ସେଥିରେ ରାଜୀହେବାରୁ ଯାହା ସବୁ ଘଟିଥିଲା ସ୍ତ୍ରୀ ଗୋଟି ଗୋଟି କରି ତାଙ୍କ ଆଗେ କହିଗଲେ । ଏହାଶୁଣି ବଣିକଙ୍କ ମୁଣ୍ଡରେ ସତରେ ଯେମିତି ଆକାଶ ଛିଣ୍ଡି ପଡ଼ିଲା । ତଥାପି ସେ ସ୍ତ୍ରୀଙ୍କୁ ଦମ୍ଭଦେଇ କହିଲେ—"ରାଜାଙ୍କର ଗୋଟିଏ ବୋଲି ପୁଅ । ତାଙ୍କୁ ମାରିବାର ଫଳ ହେଉଛି ଆମେ ସବଂଶ ଫାଶୀପାଇବା । ତଥାପି ସତ୍ୟ କରିଛି, ତୁମକୁ ଯେତେବେଳେ କଥା ଦେଇଛି, ନିଶ୍ଚୟ ତୁମର ଜୀବନ ରକ୍ଷା କରିବି ।"

ବଣିକ କିଛି ସମୟ ବସି ଚୁପ୍‌ଚାପ୍ ଭାବିଲେ । ତା'ପରେ ଉଠି ରାଜକୁମାରଙ୍କ ଶବକୁ କଳା କନାରେ ବାନ୍ଧି ତାହାକୁ କାନ୍ଧରେ ଧରି ବାହାରିଗଲେ । ରାଜକୁମାର ରାତିରେ ଯେଉଁ ଯେଉଁ ଯାଗାକୁ ଯାଏ, ତାହା ତାଙ୍କୁ

ଜଣା । ସେ ଶବକୁ ଧରି ଯାଇ ମଦ ଦୋକାନ ପାଖରେ ପହଞ୍ଚିଲେ ।

ଦୋକାନ ଦୁଆର ମୁହଁରେ ଶବଟିକୁ କୌଶଳରେ ଠିଆକରାଇ ଦେଇ କବାଟକୁ ଖଡ୍‌ଖଡ୍ କଲେ ଓ ସଙ୍ଗେ ସଙ୍ଗେ ସେଠାରୁ ଚୁପ୍‌ଚୁପ୍ ଖସିଆସିଲେ ।

ମଦ ଦୋକାନୀ ଝରକାରୁ ଚୁହିଁ ରାଜକୁମାରଙ୍କୁ ଦେଖି ଦେଇ କହିଲା— "ଓ' ! ରାଜକୁମାର ଆସିଛନ୍ତି, କ'ଣ ଆଜ ବହୁ ଡେ଼ରିରେ ।" ଏହା କହି ସେ ଯେମିତି କବାଟ ଖୋଲି ଦେଇଛି, ସେମିତି ରାଜକୁମାରଙ୍କ ଶବ ତଳେ ପଡିଗଲା । ଦୋକାନୀ ଦେଖିଲା, ତାଙ୍କ ଦେହରେ ଆଉ ପ୍ରାଣ ନାହିଁ । ତା' ଯୋଗୁଁ ରାଜାଙ୍କ ପୁଅ ମରିଗଲା—ଏହା ଭାବି ସେ ଘାବୁରିଗଲା । କ'ଣ କରିବ ? ତାକୁ ବୁଦ୍ଧି ଦିଶିଲାନାହିଁ । ଭାବି ଭାବି ଠିକ୍ କଲା । ଏକମାତ୍ର ବରୁରିକ ହିଁ ଭରସା । ଏକା ସେ ହିଁ କିଛି ହେଲେ ବଞ୍ଚିବାର ଉପାୟ କରିପାରିବେ । ଅନ୍ଧାରରେ ସେ ଯାଇ ବରୁରିକଙ୍କ ଘରେ ପହଞ୍ଚି ତାଙ୍କ ଦୁଆର ଖଡ୍ ଖଡ୍ କଲା । ଭିତରୁ ବରୁରିକ ବିରକ୍ତିର ସହିତ ପଚାରିଲେ— "କିଏ ସେ ? କ'ଣ ରାତିରେ ଶୋଇବାକୁ ଟିକେ ଦେବନାହିଁ ? ମୁଁ ବର୍ତ୍ତମାନ ଆଉ କୁଆଡ଼କୁ ନ୍ୟାୟ କଶାପକୁ ଯାଇପାରିବନାହିଁ ।"

ତଥାପି ଦୁଆର ବାଡ଼େଇବା ବନ୍ଦ ହେଉନଥାଏ । କିଛିକ୍ଷଣ ପରେ ବରୁରିକ ଆସି ଯେମିତି କବାଟ ଖୋଲିଛନ୍ତି, ମଦ ଦୋକାନୀ ତାଙ୍କ ପାଦତଳେ ପଡ଼ିଯାଇ କହିଲା—"ଆଜ୍ଞା ମରିଗଲି, ମୋତେ ରକ୍ଷାକରନ୍ତୁ । ମୋର ସବୁ ସରିଗଲା ।

ବରୁରିକ ପଚାରିଲେ—'କଥା କ'ଣ ?' "ଆଜ୍ଞା, ମୋ ଘର ଦୁଆର ରାଜକୁମାର ମରିଗଲେ ।" — ମଦ ଦୋକାନୀ କହିଲା ।

"ହେ ଭଗବାନ୍" କହି କପାଳରେ ହାତ ବାଡ଼େଇ ବରୁରିକ କାନ୍ଦିବାକୁ ଲାଗିଲେ ।

ହାତ ଯୋଡିକରି ଦୋକାନୀ କହିଲା-"ମୋତେ କିଛି ଉପାୟ ବତାନ୍ତୁ । ଯାହା କହିବେ ମୁଁ ତାହା ଆପଣଙ୍କୁ ଦେବି ।"

ଦୋକାଣୀକୁ ମାଙ୍ଗରେ ଧରି ବସ୍ତୁରକ ତା ଦୋକାନ ପାଖକୁ ଆସିଲେ । ଦୋକାଣୀ ତାଙ୍କୁ ଦଶ ହଜାର ସୁନା ମୋହର ଦେଲା । ବସ୍ତୁରକ ଜାଣନ୍ତି ରାଜକୁମାର ମଦ ପିଇସାରି କବାବ ପାଇଁ ପାଖରେ ଥିବା ମାଂସ ଦୋକାନକୁ ଯାଆନ୍ତି । ସେ ଚୋର ଶବକୁ ନେଇ ସେହି 'କବାବ୍' ଦୋକାନ ଆଗରେ ଠିଆକରିଦେଲେ । ଦୋକାନର ଶିକୁଳିକୁ ଖଟ୍ ଖଟ୍ କରି ସେଠାରୁ ଖସି ଘରକୁ ଚାଲି ଆସିଲେ । କବାବ୍ ଦୋକାଣୀ ଦରଜା ଖୋଲି ଯେମିତି ରାଜ-କୁମାରଙ୍କୁ ଛୁଇଁଛି ସେ ସଙ୍ଗେ ସଙ୍ଗେ ତଳକୁ ଗଡ଼ିପଡ଼ିଲେ । ଏହା ଦେଖି କବାବ୍ ଦୋକାଣୀର ମୁଣ୍ଡ ଘୂରିଗଲା । କିପରି ଏ ଦୋଷରୁ ରକ୍ଷାପାଇବ ! ତାକୁ କିଛି ବୁଦ୍ଧି ପଶିଲା ନାହିଁ । ଭାବି ଭାବି ସେ ମଧ୍ୟ ଯାଇ ବସ୍ତୁରକଙ୍କ ଦୁଆରେ ପହଞ୍ଚିଲା ।

ବସ୍ତୁରକ ତାହାଠାରୁ ସବୁକଥା ଶୁଣିଲେ; ମାତ୍ର ଏ ବିଷୟରେ କିଛି କରିପାରିବେ ନାହିଁ ବୋଲି ପ୍ରଥମରୁ ମନା କରିଦେଲେ । ତଥାପି ଦୋକାଣୀ ତାଙ୍କୁ ବହୁତ ନେହୁରା ହେଲା । ଶେଷକୁ ଦଶହଜାର ସୁନା ମୋହର ଦେଲା । ବସ୍ତୁରକ ତା ଦୋକାନକୁ ଆସି ସେଠାରୁ ରାଜକୁମାର ଶବକୁ ନେଇ ବେଶ୍ୟା ଘର ନିକଟରେ ପହଞ୍ଚିଲେ ।

ବେଶ୍ୟାଘର ସାମନାରେ ସେହିପରି ରାଜକୁମାର ଶବକୁ ଠିଆକରିଦେଇ ଆପଣା ଘରକୁ ଚାଲିଆସିଲେ । ବେଶ୍ୟା ଆସି ଯେମିତି ରାଜକୁମାରଙ୍କ ଶବକୁ ଛୁଇଁଛି ତାହା ଗଡ଼ିପଡ଼ିଲା । ବିଚରା ବେଶ୍ୟାଟି ଆଉ କଣ କରିବ ? ସେ ମଧ୍ୟ ସେହି ରାତି ଅନ୍ଧାରରେ ଆସି ବସ୍ତୁରକଙ୍କ ଦୁଆରେ ପହଞ୍ଚିଲା । ବସ୍ତୁରକ କହିଲେ—"ମୁଁ ରାତିରେ କୌଣସି ବେଶ୍ୟାଘରକୁ ଯାଇପାରିବି ନାହିଁ ।" ବେଶ୍ୟା ତାଙ୍କ ପାଦତଳେ ପଡ଼ି ବହୁତ ନେହୁରା ହେଲା । ଲକ୍ଷ ସୁନାମୋହର ଦେବ ବୋଲି କହିବାରୁ ବସ୍ତୁରକ ତା ଦୁଆରକୁ ଆସିଲେ । ସେହି ଶବକୁ ସେ ତା ଦୁଆରୁ ନେଇ ବାହାରି ପଡ଼ିଲେ; କିନ୍ତୁ ଯିବେ କୁଆଡ଼େ ? ଭାବି ଭାବି ସେ ରାଜମହଲ ଆଡ଼କୁ ଚାଲିଲେ । ଫାଟକ ପାଖରେ ପହଞ୍ଚି ଶୁଣିବାକୁ ପାଇଲେ ରାଜାରାଣୀ ପୁଅ ଏତେ ରାତିଯାଏ ନ ଫେରିବାରୁ କଥାବାର୍ତ୍ତା ହେଉଛନ୍ତି ।

ରାଣୀ କହିଲେ—"ତୁମେ କାହିଁକି ପୁଅକୁ ବାହା କରାଇ ଦେଉନାହିଁ ?

ଏମିତି ସେ ରାତିସାରା ଝରପ ସ୍ତ୍ରୀମାନଙ୍କ ମେଳରେ କଟାଇବାଟା କ'ଣ ଭଲ ହେଉଛି ?"

ସେଇଟା କୁଳାଙ୍ଗାର । ତା ମୁହଁ ଚାହିଁବାକୁ ମୋର ଇଚ୍ଛା ହେଉନାହିଁ । ଏମିତି ପୁଅ ଥିବାଠାରୁ ନଥିବା ଭଲ ।"

ବଗୁରକ ଏକଥା ଶୁଣୁଥାନ୍ତି । ସଙ୍ଗେ ସଙ୍ଗେ ସେ ରାଜକୁମାରଙ୍କ ଅଣ୍ଟାରୁ ଚାଦରଟି ଖୋଲାଣଦଲେ ଓ ତାହାକୁ ଗଳାରେ ବେକରେ ବାନ୍ଧି ସିଂହଦ୍ୱାର ସାମନାରେ ଥିବା ଗଛ ଡାଳରେ ଝୁଲାଇଦେଲେ ! ତା'ପରେ ଚୁପ୍‌ଚାପ୍ ଆସି ନିଜ ଘରେ ଶୋଇପଡ଼ିଲେ ।

କିଛି ସମୟ ଗଲା । ଏଣେ ରାଜକୁମାର ନ ଫେରିବାରୁ ରାଣୀ ରାଜାଙ୍କୁ କହିଲେ—"ତୁମେ ଟିକେ ବାହାରକୁ ଯାଇ ଦେଖ, ପୁଅଟା କାହିଁକି ଏପର୍ଯ୍ୟନ୍ତ ଫେରିଲାନାହିଁ !" ରାଣୀଙ୍କ ଅନୁରୋଧରେ ରାଜା ସିଂହଦ୍ୱାର ଖୋଲି ବାହାରକୁ ଆସିଲେ । ସାମନା ଗଛକୁ ଚାହିଁଦେଇ ତାଙ୍କର ତାଳୁକ ଶୁଖିଗଲା । ରାଣୀ ଧାଇଁ ଆସିଲେ । ମୁଣ୍ଡ ବାଡ଼େଇ କାନ୍ଦି ସ୍ୱାମୀଙ୍କୁ କହିଲେ— "ପୁଅ ନିଶ୍ଚୟ ତୁମ କଥା ଶୁଣିଛି । ତାର ତ ଜୀବନକୁ ମାୟା ନଥିଲା । ସେଥିପାଇଁ ରାଗରେ ସେ ଗଛରେ ଦଉଡ଼ି ଲଗାଇଦେଇଛି ।"

ରାଜା କହିଲେ—"ହଉ ତୁମେ ଏତେ ଜୋର୍‌ରେ ପାଟି କରନା, ଏକଥା ଜାଣିଲେ ଆମର ନିନ୍ଦା । ଏବେ କ'ଣ କରିବା ?"

ରାଣୀ କାନ୍ଦି କାନ୍ଦି କହିଲେ— "ମୁଁ କହୁଛି ବଗୁରକଙ୍କୁ ଡକାଇ ପଠାଅ ।"

କାଲେ କଥା ପ୍ରକଟ ହୋଇଯିବ । ଏଣୁ ରାଜା ନିଜ ବଗୁରକଙ୍କୁ ଡାକିବାକୁ ବାହାରିଲେ । ବଗୁରକଙ୍କ ଦୁଆରେ ଖଟ୍ ଖଟ୍ କରିବାରୁ ବଗୁରକ ଘରୁ ଚିଡ଼ିଉଠି କହିଲେ—"ସବୁବେଳେ ଖାଲି ନ୍ୟାୟ, ନିଶାପ ! ମୋତେ କ'ଣ ଟିକେ ଶାନ୍ତିରେ ବି ଶୁଆଇ ଦେବନାହିଁ ?" ଏହାକହି ଆସି ଦରଜା ଖୋଲିଲେ । ରାଜାଙ୍କୁ ଦେଖିବାମାତ୍ରେ ତାଙ୍କ ପାଦତଳେ ପଡ଼ି କିଛି ନ ଜାଣିବା ଭଳି ପଚାରିଲେ—"ଆପଣ କାହିଁକି ଏତେବେଳେ ?"

ରାଜା ତାଙ୍କୁ ପୁଅର ଯାହା ହୋଇଛି ସେଇକଥା ଫିଟାଇ କହିଲେ । ଶେଷରେ କାନ୍ଦ କାନ୍ଦ କହିଲେ, ଯାହା ହେବାର ତ ହେଲା । ମୋତେ ଏ ବଦ୍‌ନାମରୁ ରକ୍ଷାକର । ମୁଁ ତୁମକୁ ଯଥେଷ୍ଟ ପୁରସ୍କାର ଦେବ । ବସ୍ତୁରକ ଆଖି ପୋଛୁ ପୋଛୁ କହିଲେ—"ହଉ ଚାଲନ୍ତୁ । ଆପଣଙ୍କ ମାନ୍ କ'ଣ ମୋର ମାନ୍ ନୁହେଁ ?"

ଦୁହେଁ ଆସି ରାଜମହଲରେ ପହଞ୍ଚିଲେ । ରାଜକୁମାରଙ୍କ ଶବକୁ ବାହାରୁ ଅଣାଇ ଘର ଭିତରେ ଶୁଆଇ ଦିଆଗଲା । ବସ୍ତୁରକ ରାଜାଙ୍କୁ କହିଲେ— "ଏବେ ରାଜ୍ୟର ପ୍ରଚାର କରିଦିଅନ୍ତୁ—କୁମାରଙ୍କୁ ଭୀଷଣ ପେଟବ୍ୟଥା ହେଉଛି ଓ ତାଙ୍କୁ ଔଷଧ ଦିଆଯାଉଛି । ପୁଣି ସକାଳେ ଘୋଷଣା କରିଦେବେ ଔଷ-ଧରେ କିଛି ଫଳ ହେଲାନାହିଁ, ରାଜକୁମାର ଆମକୁ ଛାଡ଼ି ଚାଲିଗଲେ ।"

ପରାମର୍ଶ ଅନୁଯାୟୀ ସେଇଆ ପ୍ରଚାର କରାଗଲା । ରାଜାଙ୍କର ମାନ୍ ରହିଲା । ରାଜାଙ୍କଠାରୁ ପୁରସ୍କାର ନେଇ ବସ୍ତୁରକ ଆପଣା ଘରକୁ ଫେରିଲେ । ସ୍ତ୍ରୀଙ୍କୁ ପଚାରିଲେ—"କଥା ଦେଇଥିଲ, ସତ୍ୟ କରିଥିଲ, ତା ମୁଁ ପାଳିଛି ନା ନାହିଁ ?"

ସ୍ତ୍ରୀ ତାଙ୍କ ପାଦତଳେ ପଡ଼ି କହିଲେ—"ମୋର ଭୁଲ ହୋଇଛି । ତୁମେ ମୋତେ ବଞ୍ଚାଇ ଦେଲ ।" ସେଇଦିନଠାରୁ ନ୍ୟାୟ୍ୟ ନଶାପ ଯୋଗୁ ସ୍ୱାମୀଙ୍କର ଘରକୁ ଫେରିବାର ବିଳମ୍ବ ହେଲେ ସେ ଆଉ ସ୍ୱାମୀଙ୍କ ଉପରେ ଚିଡ଼ନ୍ତି ନାହିଁ ।

( ରାଜସ୍ଥାନ )



# ବୁଦ୍ଧିମତୀ ବୋହୂ

ରାଜସ୍ଥାନରେ ଜଣେ ରାଜା ଥିଲେ । ତାଙ୍କ ନାଁ କମଳ ସିଂହ । ରାଜ୍ୟଟି ତାଙ୍କର ଛୋଟ ହେଲେ ବି ଧନ ଧାନ୍ୟରେ ପୂରି ହସି ଉଠୁଥିଲା । କମଳ ସିଂହ ଥିଲେ ଖୁବ୍ ସାହସୀ ଓ ଉଚ୍ଚାଭିଳାଷୀ । ନିଜ ସୈନ୍ୟବାହିନୀକୁ ସେ ଖୁବ୍ ଶକ୍ତିଶାଳୀ କରିଥିଲେ; ତେଣୁ ତାଙ୍କ ନାମ ଖୁବ୍ ବିଖ୍ୟାତ ହୋଇଥିଲା । ମାତ୍ର ଏତେ ଶକ୍ତିଶାଳୀ ଓ ଧନବାନ୍ ହେଲେ ହେଁ ସେ ଥିଲେ ନିର୍ବୋଧ ଓ ଉଦ୍ଧତ ।

ଥରେ କାଶ୍ମୀର ଦେଶରୁ ଦଳେ ବେପାରୀ ତାଙ୍କ ଦେଶକୁ ବେପାର କରିବାକୁ ଆସିଥିଲେ । ସେମାନେ ଆଣିଥିଲେ ଗୁଡ଼ାଏ ଜାଫ୍ରାନ କେଶର । ସେଗୁଡ଼ିକୁ ବିକିବା ଲାଗି ସେମାନେ ରାଜାଙ୍କ ପାଖକୁ ନେଲେ । ଧନଯୋଗୁ ରାଜାଙ୍କ ଅହଂକାରର ସୀମା ନଥିଲା । ଆପଣା ଧନର ପ୍ରାଚୁର୍ଯ୍ୟ ଜଣାଇ ହେବାପାଇଁ ସେ ବେପାରୀମାନଙ୍କଠାରୁ ସବୁତକ ଜାଫ୍ରାନ କେଶର କିଣିନେଲେ ଓ ସେଗୁଡ଼ିକୁ ସଙ୍ଗେ ସଙ୍ଗେ ଗଡ଼ଖାଇ ଭିତରକୁ ଫିଙ୍ଗିଦେବାକୁ ଆଦେଶ ଦେଲେ ।

ରାଜାଙ୍କର ଏପରି ଅହଂକାର ଲକ୍ଷ୍ମୀଦେବୀ ସହିପାରିଲେ ନାହିଁ । ମୂର୍ଖ ରାଜାଙ୍କୁ ସେ ଉଚିତ୍ ଶିକ୍ଷାଦେବାକୁ ଠିକ୍ କଲେ । ରାଜାଙ୍କ ମନକୁ ସେ ଜୁଆ ଖେଳରେ ଲଗାଇଦେଲେ । ଜୁଆ ଖେଳରେ ମାତ୍ର ରାଜା ଅଳ୍ପ କେତେ ମାସ ମଧ୍ୟରେ ଆପଣାର ଧନ ସମ୍ପତ୍ତି ହରାଇଲେ । ଶେଷକୁ ନିଜର ରାଜ୍ୟଟି ମଧ୍ୟ ହରାଇ ବସିଲେ । ସହାୟ ସମ୍ବଳହୀନ ହୋଇ ଲଜ୍ଜାରେ ସେ ଆଉ ମୁହଁ ଦେଖାଇ ପାରିଲେନାହିଁ । ଦିନେ ବାଧ୍ୟ ହୋଇ ନିଜ ପୁଅ ବୋହୂଙ୍କ ସହିତ ସେ ରାଜ୍ୟ ଛାଡ଼ି ଚାଲିଗଲେ । ତାଙ୍କ ପୁଅ ନାମ ଅଶ୍ୱିନୀ କୁମାର, ବୋହୂ ନାମ ଦକ୍ଷିଣା । ପୁଅ ବୋହୂଙ୍କ ଦୁଃଖ ମଧ୍ୟ କହିଲେ ନସରେ ।

ରାଜା ଓ ତାଙ୍କ ପୁଅ ବୋହୂଙ୍କର ପାଦରେ ଚାଲିବାର ଅଭ୍ୟାସ ନଥିଲା । ବହୁଦିନ ଚାଲି ଚାଲି ସେମାନେ ଥକିଗଲେ । ଶେଷରେ ସେମାନେ

ଆସି ଜଣେ ରାଜାଙ୍କ ରାଜ୍ୟରେ ପହଞ୍ଚିଲେ । ସେଇଠି ଆଶ୍ରୟ ନେଲେ । ଭାବିଲେ ଆଉ ଦୂରକୁ ଯାଇ କି ଲାଭ ? ଏଇଠି ରହିବା, ଯାହା ଆମ ଭାଗ୍ୟରେ ଥିବ । ଏହା ସ୍ଥିର କରି ରାଜାଙ୍କ ନଅରଠାରୁ ଅଳ୍ପଦୂରରେ ଗୋଟିଏ କୁଡ଼ିଆ ଘର କରି ସେଠାରେ ରହିଲେ । ହେଲେ ନ ଖଟିଲେ କିଏ ବା ସେମାନଙ୍କୁ ସବୁଦିନ ଖାଇବାକୁ ଦେବ ? ରାଜା ଓ ତାଙ୍କ ପୁଅ ମଜୁରି ଲାଗିଲେ । କେଉଁଦିନ ପଥର ହାଣିଲେ ତ କେଉଁଦିନ ବୋଝ ବୋହିଲେ ବା ପାଣି ବୋହିଲେ । ଏମିତି ମୁଣ୍ଡ ଝାଳ ତୁଣ୍ଡରେ ମାରି ପେଟ ପୋଷିଲେ ।

ଏଣେ ବୋହୂ ଦକ୍ଷିଣା ସ୍ୱାମୀ ଶ୍ୱଶୁରଙ୍କ ସେବା କରୁଥାଏ । ଦେଖିବାକୁ ସେ ଯେମିତି ସୁନ୍ଦରୀ, ସେମିତି ଗୁଣରି । ଏତେ ଦୁଃଖରେ ବି ମନ ତାର ଭାଙ୍ଗିଯାଇ ନଥାଏ । ସବୁବେଳେ ସେ ଘର କାମରେ ଲାଗିଥାଏ । ଦିନେ ସେ ତା ସ୍ୱାମୀ ଓ ଶ୍ୱଶୁରଙ୍କୁ କହିଲା—"ଆପଣ କାମକୁ ଯାଉଛନ୍ତି । ଫେରିଲାବେଳେ ସବୁଦିନ କିଛି ହେଲେ ଗୋଟାଏ ଜିନିଷ ଘରକୁ ଆଣିବେ ।" ଶ୍ୱଶୁର ଓ ସ୍ୱାମୀ ଏଥିରେ ରାଜି ହେଲେ । ସବୁଦିନ ଫେରିଲାବେଳକୁ ଯାହା ପାଇଲେ ଆଣିବାକୁ ଲାଗିଲେ । କେଉଁଦିନ ଇଟାଟାଏ ଓ କେଉଁଦିନ କାଠ ଖଣ୍ଡେ, କେଉଁଦିନ ଭଙ୍ଗାପଥରଟାଏ ତ କେଉଁଦିନ ଫଳଟାଏ—ଏମିତି ସବୁଦିନ ଯାହା ପାଆନ୍ତି ଘରକୁ ଆଣନ୍ତି ।

ବାପପୁଅ ଦିନେ ଫେରିଲାବେଳେ ଗୋଟିଏ ମଲା ସାପ ପାଇଲେ । ବୋହୂ କଥାମାନି ସେଇଟିକୁ ମଧ୍ୟ ସେମାନେ ଘରକୁ ନେଇଆସିଲେ । ଅଣ୍ଡିମା ସାପଟିର ଲାଞ୍ଜ ଧରି ଆସି ଘରେ ପହଞ୍ଚିଲା । ସେଇଟା ବା କେଉଁ କାମରେ ଲାଗିବ ? ଏଣୁ ତାକୁ ସେ ଘରର ଛାଳଉପରକୁ ପକାଇଦେଲା ।

ତା'ପର ଦିନ ସନ୍ଧ୍ୟାବେଳକୁ କମଳ ସିଂହ ଓ ତାଙ୍କ ପୁଅ କାମ ସାରି ଘରକୁ ଫେରୁଥାନ୍ତି । ଦେଖିଲେ, ରାଜ୍ୟର ଲୋକମାନଙ୍କ ଭିତରେ ଚହଳ ପଡ଼ିଯାଇଛି । ନିଜ ନିଜ ଭିତରେ ଲୋକେ କ'ଣ ସବୁ କଥାବାର୍ତ୍ତା ହେଉଛନ୍ତି । କମଳ ସିଂହ ଜଣକୁ ପଚାରିଲେ—"ହଇଓ ଭାଇ, ଘଟଣା କ'ଣ ?"

ଲୋକଟି କହିଲା—ତୁମେ କ'ଣ ଏକଥା ଶୁଣିନ ? ଆଜି ସକାଳେ ପରି

ରାଣୀଙ୍କର ଦାମିକା ହାରଟା ହଜଯାଇଛି । ସେ ସେଇଟିକୁ ଝରକା ଦାଡ଼ରେ ଥୋଇଥିଲେ । ହଠାତ୍ କୁଆଡ଼ୁ ଗୋଟିଏ ଚିଲ ଉଡ଼ିଆସି ସେଇଠି ବସିଥିଲା, ତା'ପରେ ଚିଲଟା କୁଆଡ଼େ ଉଡ଼ି ପଳାଇଲା । ସେତିକିବେଳୁ ରାଣୀଙ୍କ ହାରଟି ମିଳୁନ । ରାଜା ଘୋଷଣା କରିଛନ୍ତି—"ଯିଏ ଏଇ ହାରଟି ପାଇ ଆଣିଦେବ, ତାକୁ ବହୁତ ପୁରସ୍କାର ଦିଆଯିବ ।"

କମଳ ସିଂହ ଓ ଅଶ୍ୱିନୀ ଯାଇ ଘରେ ପହଞ୍ଚିଲେ । ଦକ୍ଷିଣାକୁ ରାଣୀଙ୍କର ହାର ବିଷୟ କହିଲେ । ଏହା ଶୁଣିବା ମାତ୍ରେ ସେ ଆଶ୍ଚର୍ଯ୍ୟ ହୋଇ କହିଲା— "ଓଃ, ମୁଁ ତେବେ ଯେଉଁଟି ପାଇଛି, ସେଇଟି ରାଣୀଙ୍କ ହାର ।" ବାପ ପୁଅ ଦୁହେଁ ଆଶ୍ଚର୍ଯ୍ୟ ହୋଇ ଏକାବେଳକେ ପଚାରିଲେ — "ରାଣୀଙ୍କ ହାର ତୁମେ କିପରି ପାଇଲ ?"

ଦକ୍ଷିଣା ସ୍ୱାମୀଙ୍କୁ କହିଲା—"ହଁ ମୁଁ ଠିକ୍ କହୁଛି, ଯେଉଁଟି ମୁଁ ପାଇଛି ସେଇଟି ରାଣୀଙ୍କ ହାର । ଆଉ ଏ ବିଷୟରେ ମୁଁ ତୁମକୁ କିଛି କହିବାକୁ ଚାହେଁନାହିଁ । ତୁମେ ଏବେ ରାଣୀଙ୍କ ନଅରକୁ ଯାଇ ପୁରସ୍କାର କ'ଣ ମିଳିବ ବୁଝିଆସ ।"

ଅଶ୍ୱିନୀ ସଙ୍ଗେ ସଙ୍ଗେ ନଅରକୁ ଯାଇ ମନ୍ତ୍ରୀମାନଙ୍କୁ ପଚାରିଲା, "ଆଜ୍ଞା, ଯଦି ଜଣେ ହାରଟିକୁ ପାଇ ଆଣିଦିଏ, ତାକୁ କି ପୁରସ୍କାର ମିଳିବ ?" ମନ୍ତ୍ରୀମାନେ ମଧ୍ୟ ଏକଥା ଜାଣିନଥିଲେ । ସେମାନେ ରାଜାଙ୍କୁ ଯାଇ ପଚାରିଲେ । ରାଜା କହିଲେ—"ଲୋକଟିକୁ କହିଦିଅ ସେ ଯାହା ଚାହିଁବ, ତାକୁ ତାହା ଦିଆଯିବ ।"

ଅଶ୍ୱିନୀ ଘରକୁ ଫେରିଆସି ସ୍ତ୍ରୀକୁ ସେଇଆ କହିଲା ।

ଦକ୍ଷିଣା କହିଲା—"ତେବେ ଶୀଘ୍ର ଚାଲ ରାଜାଙ୍କ ପାଖକୁ ଯିବା ।" ଦକ୍ଷିଣା ଓ ତା ସ୍ୱାମୀ ନଅରକୁ ଯାଇ ରାଜା ଓ ରାଣୀଙ୍କ ପାଖେ ପହଞ୍ଚିଲେ । ଦକ୍ଷିଣା ନମସ୍କାର କରି ହାରଟିକୁ ରାଣୀଙ୍କୁ ଦେଇ କହିଲା—"ଏଇ ହାରଟି ଆପଣଙ୍କର ହଜଯାଇଥିଲା ତ ?"

ଉତ୍ତରୀରେ ସନ୍ତୁଷ୍ଟ ରାଣୀ କହିଲେ—"ହଁ ଏଇ ହାରଟି । ତମେ ଏଇ ହାରଟି କେଉଁଠୁ ପାଇଲ ?"

ଦକ୍ଷିଣା କହିଲା—"ମୁଁ ଆଜ ସକାଳେ ଆମ କୁଡ଼ିଆ ଦୁଆରେ ଛିଡ଼ା ହୋଇଥିଲି । ଚିଲଟିଏ କୁଆଡ଼ୁ ଉଡ଼ିଆସି ଆମ ଗଛରେ ବସିଲା । ତା ଥଣ୍ଟରେ ଏଇ ହାରଟି ଥିଲା । ଆମ ଗଛ ଉପରେ ମଲା ସାପଟିଏ ଦେଖି ଚିଲଟା ହଠାତ୍ ତଳକୁ ଉଡ଼ି ପଳାଇଲା । ସେତିକିବେଳେ ତା ଥଣ୍ଟରୁ ଏଇ ହାରଟା ଗଳି ପଡ଼ିବାର ମୁଁ ଦେଖିଲି ।"

ରାଣୀ କହିଲେ— "ତୁମେ ବାସ୍ତବିକ ଭାଗ୍ୟବତୀ ।" ଏପରି ଗୋଟିଏ ଅଦ୍ଭୁତ ଘଟଣା ଘଟିବ ବୋଲି ମୁଁ ଭାବି ନ ଥିଲି । ହଉ ଏବେ ତୁମେ କି ପୁରସ୍କାର ନେବ କୁହ ? ତୁମ କାର୍ଯ୍ୟରେ ମୁଁ ଅତି ଆନନ୍ଦିତ ।"

ଦକ୍ଷିଣା କହିଲା—"ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ । ମାତ୍ର ମୁଁ ଆପଣଙ୍କୁ କ'ଣ ବା ମାଗିବି ? ମୋର ଧନ ସମ୍ପତ୍ତି ବା ରାଜ୍ୟ ଲୋଡ଼ାନାହିଁ, ମୁଁ ଖାଲି ଏତିକି ଚାହୁଁଛି,ଆସନ୍ତା ଦୀପାବଳୀଦିନ ଆପଣଙ୍କ ରାଜ୍ୟର ବା ସହରରେ କେହି ଦୀପ ଜାଳି ପାରିବେନି । ଯଦି କେହି ବତି ଜାଳିବାକୁ ଚାହିଁବେ, ତେବେ ସେମାନେ କେବଳ ମୋର ଘରେ ଆସି ଜଳାଇବେ ।"

ସ୍ତ୍ରୀ ଲୋକଟିର ଏପରି ଅଦ୍ଭୁତ ପ୍ରାର୍ଥନା ଶୁଣି ରାଜା ରାଣୀ ଆଶ୍ଚର୍ଯ୍ୟ ହୋଇଗଲେ ! ବିଚିତ୍ର କଥା ! ଦୀପାବଳୀ ଦିନ ରାଜ୍ୟରେ ପୁଣି ଦୀପ ଜଳିବନି ? ମାତ୍ର ସେ ତ ପୂର୍ବରୁ ଘୋଷଣା କରିଛନ୍ତି । ତାଙ୍କୁ ସତ୍ୟ ରକ୍ଷାକରିବାକୁ ହେବ । ଦକ୍ଷିଣାର ପ୍ରାର୍ଥନା ପୂରଣ କରିବାକୁ ସେ ବାଧ୍ୟହେଲେ ।

ସାରା ରାଜ୍ୟରେ ନାଗରା ପିଟି ଘୋଷଣା କରାଗଲା— "ଦୀପାବଳୀ ଦିନ କେହି ନିଜ ଘରେ ଦୀପ ଜାଳିବେନାହିଁ । କେବଳ ଦକ୍ଷିଣାର କୁଡ଼ିଆ ପାଖରେ ବତି ଜଳିବ ।"

କିଛିଦିନ ପରେ ଦୀପାବଳୀ ଆସିଲା । ଦକ୍ଷିଣାର ସେଇ କୁଡ଼ିଆ ଘର-ଛଡ଼ା ସହରର ଆଜ କେଉଁ ଘରେ ଦୀପ ଜଳିଲାନାହିଁ, ସନ୍ଧ୍ୟା ହେବା ପରେ

ଧନର ଅଧିକାରିଣୀ ମହାଲକ୍ଷ୍ମୀ ସହରକୁ ବାହାରିଲେ । ଆସି ଦେଖିଲେ ଚାରିଆଡ଼ ଅନ୍ଧାର ହୋଇଛି । ଏଥିରେ ସେ କାହା ଘରକୁ କିପରି ଯିବେ ?

ଦୂରକୁ ଚାହିଁ ଦେଖିଲେ, ସହର ଶେଷରେ ଗୋଟିଏ କୁଡ଼ିଆ ଘରେ ଅନେକ ଦୀପ ଜଳୁଛି । କୁଡ଼ିଆ ଘରଟି ସୁନ୍ଦର ଭାବେ ଆଲୋକିତ ହୋଇଛି ।

ସେ ସେଠାକୁ ବାହାରିଲେ । ଭାବିଲେ ସେଇଠି ରାତିଟା କଟେଇବେ । ତେଣେ ଦକ୍ଷିଣା ଜାଣେ ଲକ୍ଷ୍ମୀ ଠାକୁରାଣୀ ମୋ ଘରକୁ ନିଶ୍ଚୟ ଆସିବେ । ସେଥିପାଇଁ ସେ ଗୋଟିଏ ଠେଙ୍ଗାଧରି ଦୁଆର ମୁହଁରେ ଛିଡ଼ା ହୋଇଥାଏ ।

ଲକ୍ଷ୍ମୀ ଠାକୁରାଣୀ ଯେମିତି ତା ଘର ଭିତରକୁ ଯିବାକୁ ବାହାରିଲେ, ଦକ୍ଷିଣା ଖୁବ୍ ଟାଣହୋଇ କହିଲା — "ଖବରଦାର୍ ! ତୁମେ କିଏ ? ମୋ କୁଡ଼ିଆ ଭିତରକୁ ତୁମେ କାହିଁକି ଯାଉଛ ?"

ମହାଲକ୍ଷ୍ମୀ ଶଙ୍କିଯାଇ କହିଲେ—"ତୁମେ ତ ଆଚ୍ଛା ଝିଅ ଲୋକ । ତୁମ କୁଡ଼ିଆଟି ଛଡ଼ା ସହରଯାକ ଏପରି ଅନ୍ଧାର ହୋଇଛି କାହିଁକି ? ଅଚ୍ଛା ହେଉ, ମୁଁ ପରା ମହାଲକ୍ଷ୍ମୀ । ମୁଁ ତୁମକୁ ଆଶୀର୍ବାଦ ଦେବାକୁ ଆସିଛି । ଅଥଚ ତୁମେ ମୋତେ ଘରେ ପଶିବାକୁ ଦେଉନ ?"

ଦକ୍ଷିଣା ନରମ କଣ୍ଠରେ କହିଲା—"ଆପଣଙ୍କୁ ମୁଁ କାହିଁକି ମୋ ଘରେ ପଶିବାକୁ ଦେବି ? ଆପଣ ଆମକୁ କେଉଁ ଭଳିରେ ରଖିଛନ୍ତି ? ଆପଣ ତ ଥରେ ହେଲେ ଦୟା କଲେ ନାହିଁ । ଆପଣ ନିର୍ଦ୍ଦୟ ହେବାରୁ ଏବେ ଆମେ ଅତି ଦୁଃଖ କଷ୍ଟରେ କାଳ କାଟୁଛୁ ।"

ଲକ୍ଷ୍ମୀ କହିଲେ, "ଆଚ୍ଛା ହେଉ, ମୋତେ ଆଜି ରାତିଟା ତୁମ କୁଡ଼ିଆରେ ରହିବାକୁ ଦିଅ । ମୁଁ ତୁମର ସବୁ ଦୁଃଖ ଦୂର କରିଦେବି । ହରେଇଥିବା ରାଜ୍ୟ ତୁମ ଶ୍ୱଶୁର ଫେରିପାଇବେ ।"

ଦକ୍ଷିଣା ମନରେ ହସ ଫୁଟିଉଠିଲା । ସେ ଲକ୍ଷ୍ମୀଙ୍କ ପାଦ ଧୋଇ ତାଙ୍କୁ କୁଡ଼ିଆ ଭିତରକୁ ନେଇଗଲା । ଲକ୍ଷ୍ମୀ ରାତିଟି ସେଇଁଠି କଟେଇଲେ ଓ କମଳ

ସିଂହର ପରିବାରକୁ ଆଶୀର୍ବାଦ କଲେ ।

ତା' ପରଦିନ ସକାଳେ ଦକ୍ଷିଣା ଉଠି ଦେଖିଲା ତାର କୁଡ଼ିଆ ଘରଟି ସୁନା, ରୁପା, ହୀରା, ନୀଳା ମୋତି ମାଣିକ୍ୟରେ ପୂରିଯାଉଛି । କମଳ ସିଂହ ପୁଅ ବୋହୂଙ୍କୁ ନେଇ ନିଜ ରାଜ୍ୟକୁ ଫେରିଲେ । ଲକ୍ଷ୍ମୀଙ୍କ ଆଶୀର୍ବାଦରୁ ସେମାନଙ୍କ ମନରେ ଆଉ ଅହଙ୍କାର ନଥିଲା, ଦକ୍ଷିଣା ଯୋଗୁଁ ସେ ଯାହା ସବୁ ହରାଇଥିଲେ ଫେରି ପାଇଲେ ।

( ରାଜସ୍ଥାନ )



# ଠକ ଗଲା ଠକି

ଗୋଟିଏ ଗାଁରେ ଦୁହିଁଙ୍କ ଘର । ଦୁହେଁଯାକ ପଡ଼ୋଶୀ । ଜଣଙ୍କ ନାଁ ଧନପତି, ଆଉ ଜଣଙ୍କ ନାଁ ଗୋପାଳ । ଧନପତି ଲୋକଟା ସରଳ; ଗୃହବାସ କରି ଚଳେ । ମାତ୍ର ଠକା ଠକି କରି ଚଳିବା ହେଲା ଗୋପାଳର କାମ । ଧନପତିକୁ ଗୋପାଳର କାମ ଭଲ ଲାଗେନା । ଯେତେ ବୁଝାଇଲେ ବି ଗୋପାଳ ତା ଧନ୍ଦାରେ ଥାଏ । ଗୋପାଳଭାବେ ଧନପତିଟା ବୋକା । ତାକୁ ଠକେଇ ଦେବା ଅତି ସହଜ ।

ଦିନେ ଦୁହେଁଯାକ ବସି ଗପ କରୁଥିଲେ । ଗୋପାଳ ବାହାଦୁରି ଦେଖାଇବାକୁ ଯାଇ କହିଲା—'ମୁଁ ଥରେ ଜଣେ ବିଚିତ୍ର ଲୋକଙ୍କୁ ଦେଖିଲି । ସେ ସମସ୍ତଙ୍କ ମନରେ ଭାବନା କହିଦେଇ ପାରୁଥିଲେ ।' ସେ ଭାବିଲା, ଏହାଶୁଣି ଧନପତି ଆଶ୍ଚର୍ଯ୍ୟ ହୋଇଯିବ ।

ଧନପତି ଜାଣେ ଗୋପାଳଟା ଏକଦମ ବାହାପିଆ । ଏଣୁ ସେ ତାକୁ ଟିହାଇବାକୁ ଯାଇ କହିଲା— 'ଅନ୍ୟର ମନକଥା ଜାଣିପାରିବାଟା କିଛି

ଗୋଟାଏ ଅସମ୍ଭବ କାର୍ଯ୍ୟ ନୁହେଁ । ମୁଁ ମଧ୍ୟ ତା କରିପାରିବ । ତମେ ଯାହା ଭାବୁଛ ତା ମଧ୍ୟ କହିଦେଇ ପାରିବ ।'

ଗୋପାଳ ଉତ୍ତେଜିତ ହୋଇ କହିଲା—"ମୁଁ ବାଜିମାରି କହିପାରେ, ତୁମେ ଏହା କେବେ କରିପାରିବ ନାହିଁ ।"

ଧନପତି କହିଲା—"ହଁ, ମୁଁ ତମ ମନକଥା କହିଦେଇ ପାରିବ । ଯଦି ବାଜି ରଖିବାକୁ କହୁଛ, ତେବେ ଏଥିପାଇଁ ଖୁବ୍ ବେଶୀ ବାଜି ରଖିବାକୁ ହେବ । କାରଣ ଏହା କିଛି ସାମାନ୍ୟ କଥା ନୁହେଁ ।"

ଗୋପାଳ ବୁଦ୍ଧିରେ ଅନେକଙ୍କୁ ଠକେଇ ଆସିଛି । ତାର ଦୃଢ଼ ବିଶ୍ୱାସ, ତା ମନ କଥା କେହି ଜାଣିପାରିବେ ନାହିଁ । ତା ଛଡ଼ା ଏଇ ଧନପତିଟାକୁ ସେ ମୋଟେ ବୁଦ୍ଧିଆ ବୋଲି ପାସଙ୍ଗରେ ପକାଏ ନାହିଁ । ଏଣୁ ସେ କହିଲା— "ମୋର ସବୁ ଜମିବାଡ଼ ମୁଁ ଏଥିପାଇଁ ବାଜି ରଖିଲି । ଯଦି ତମେ ମୋ ମନ କଥା କହିଦେବ ଏସବୁ ତମେ ପାଇବ । ଆଉ ଯଦି ହାରିଯାଅ ତେବେ ତମର ସବୁ ଜମିବାଡ଼ ମୋର ହେବ । କଣ ତମେ ଏଥିରେ ରାଜି ?"

ଧନପତି ଏଥିରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଗୋପାଳ କହିଲା - "ତା'ହେଲେ କୁହ ମୁଁ ଏବେ କଣ ଭାବୁଛି ।"

ଧନପତି କହିଲା—"ଏ କଥାରେ ପରୀକ୍ଷା ଏଠି ହୋଇ ପାରିବନାହିଁ । ତମକୁ କେଉଁ ବିଶ୍ୱାସ ? ତମେ କାଲେ ପରେ କଥା ନ ରଖିବ । ଯଦି ପରୀକ୍ଷା ହେବତ ଚାଲ ରାଜାଙ୍କ ଦରବାରକୁ ଯିବା ।"

ଗୋପାଳ ଏଥିରେ ରାଜି ହୋଇଗଲା । ରାଜାଙ୍କ ଦରବାରରେ ଏହାର ଫଇସଲା ହେବ । ଦୁହେଁ ରାଜାଙ୍କ ପାଖକୁ ଗଲେ । ତାଙ୍କୁ ଏ ବିଷୟରେ କହିଲେ । ସେ ଦେଶର ରାଜାଥିଲେ ଖୁବ୍ ବିଚାରବନ୍ତ । ପ୍ରଜାମାନଙ୍କୁ ସେ ପୁଅପରି ପାଳୁଥିଲେ । ମାତ୍ର ଗୋଟିଏ ବିଷୟରେ ତାଙ୍କ ମନ ଦୁଃଖ-ତାଙ୍କର କୌଣସି ସନ୍ତାନ ନଥିଲା । ଯାହାହେଉ ସେ ଏଇ ବିବାଦର ବିଚାରକ ହେବାକୁ ରାଜିହୋଇଗଲେ ।

ସଙ୍ଗେ ସଙ୍ଗେ ଏହାର ବିଗୃର ହେବ । ଧନପତି ଓ ଗୋପାଳ ରାଜାଙ୍କ ସାମ୍ନାରେ ଚୁପ୍ ଚାପ୍ ବସିଲେ । ଗୋପାଳ କଣ ଭାବୁଛି ସେଇ କଥା, ଏବେ ଧନପତି କହିବ । ରାଜା ଧନପତିକୁ ଚାହିଁ କହିଲେ— "ତୁମେ ଏଥର ଗୋପାଳ କଣ ଭାବୁଛି କୁହ ।"

ଧନପତି ଗୋପାଳ ଆଡ଼କୁ କିଛି ସମୟ ଚାହିଁଲା । ଆଖିବୁଜି କିଛି ଭାବିଲା । ତାପରେ ରାଜାଙ୍କ ଆଡ଼କୁ ଚାହିଁ କହିଲା- "ହଜୁର୍ ଗୋପାଳ ଭାବୁଛି, ମହାରାଜାଙ୍କ ଅନ୍ତେ ସିଂହାସନରେ ବସିବାପାଇଁ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ଶୀଘ୍ର ଜାତ ହେଉ ।"

ଏକଥା ଶୁଣି ଗୋପାଳ ମହା ଅଡୁଆରେ ପଡିଗଲା । ରାଜାଙ୍କର ପୁଅ ନ ହେଉ ବୋଲି କିଏ ବା ଭାବିବ । ଏଣୁ ଏହା ଠିକ୍ ନୁହଁ ବୋଲି କହିବାକୁ ତା'ର ସାହାସ ହେଲାନାହିଁ । ଏକଥା କିପରି ବା ସେ ତାଙ୍କ ଆଗରେ କହିବ ? ଧନପତି କଥା ଠିକ୍ ନୁହେଁ ବୋଲି କହିଲେ, ରାଜା ତାକୁ ନିଶ୍ଚୟ ରାଜଦ୍ରୋହୀ ମନେ କରିବେ । ସେଥିପାଇଁ ହୁଏତ ତାକୁ ରାଜ୍ୟରୁ ତଡ଼ି ଦେଇ ପାରନ୍ତି ବା ବନ୍ଦ କରି ପାରନ୍ତି । ଧନପତିର କଥା ଠିକ୍ ବୋଲି କହିଲେ ବି ମହାବିପଦ । ବାଜିରଖିବା ଅନୁସାରେ ସେ ତାର ସର୍ବସ୍ୱ ହରାଇବ । ଏଣୁ କିଛି ସମୟ ଭାବିଲା ପରେ ସେ କହିଲା—"ହଁ ଆଜ୍ଞା, ମୁଁ ସେଇଆ ଭାବୁଛି ।"

ଏହାପରି ବାଜିପକାଇ ଗୋପାଳ ହାରିଗଲା । ଧନପତି କିତିବାରୁ ଗୋପାଳର ସମ୍ପତ୍ତିତକ ପାଇଲା । ସେଇ ଦିନଠୁଁ ଗୋପାଳ ଅନ୍ୟକୁ ଠକେଇବା ବୃତ୍ତି ଛାଡ଼ି ଦେଲା । ଭଦ୍ରଭାବରେ ଚଳିଲା ।

( ରାଜସ୍ଥାନ )



# ସେବା କଲେ ପାଇବ

ଗୋଟାଏ ରାଜ୍ୟରେ ଜଣେ ସାଧୁ ଥିଲେ । ଘୋର ଅରଣ୍ୟରେ ସେ ଆଶ୍ରମ କରି ରହୁଥାନ୍ତି । ତାଙ୍କୁ ଗୋଟାଏ ଅଦ୍ଭୁତ ବିଷୟ ଜଣାଥିଲା । ସବୁଦିନ ସେ ସୁନା ତିଆରି କରନ୍ତି । ତାକୁ ବଜାରରେ ବିକି ଯେଉଁ ପଇସା ପାଆନ୍ତି, ସେଥିରେ ନାନା ପ୍ରକାର ଜିନିଷ କିଣିଆଣନ୍ତି । ସନ୍ଧ୍ୟାବେଳେ ତାଙ୍କ କୁଡ଼ିଆ ଦୁଆରେ ବହୁଲୋକ ଜମନ୍ତି । ଯେ ଯାହା ଲୋଡ଼ନ୍ତି, ସେ ତାକୁ ସେଇ ଜିନିଷ ଦେଇ ବିଦା କରନ୍ତି । ଏହିପରି ପ୍ରତିଦିନ ଦାନ କରୁଥିବାରୁ ତାଙ୍କ ପ୍ରଶଂସା ଦୂରଦୂରାନ୍ତରକୁ ବ୍ୟାପିଗଲା । ସେ ସୁନା ତିଆରି କରିପାରନ୍ତି ବୋଲି ଲୋକେ ଜାଣିପାରିଲେ ।

କ୍ରମେ ସେ ଦେଶର ରାଜା ମଧ୍ୟ ଏଇ ସାଧୁଙ୍କ ବିଷୟ ଶୁଣିଲେ । ସୁନା ତିଆରି କରିବା ଉପାୟ ଶିଖିବା ଲାଗି ତାଙ୍କର ଇଚ୍ଛାହେଲା । ଯାହାହେଉ, ପ୍ରଥମେ ଏଇ ବିଷୟଟି ସତ କି ମିଛ ଏହା ବୁଝିବା ଦରକାର । ଠିକ୍ ଖବର ବୁଝି ଆସିବା ଲାଗି ସେ ଜଣେ ଦୂତକୁ ପଠାଇଲେ ।

ଦୂତ ଆପଣାର ବେଶ ବଦଳାଇ ସାଧୁଙ୍କ ପାଖେ ପହଞ୍ଚିଲା । ଦେଖିଲା, ସାଧୁ ପ୍ରକୃତରେ ପ୍ରତିଦିନ ସୁନା ବିକି ଜିନିଷପତ୍ର କିଣୁଛନ୍ତି ଓ ସେଗୁଡ଼ିକ ବାଣ୍ଟୁଛନ୍ତି । ତା'ର ବିଶ୍ୱାସ ହେଲା, ସାଧୁ ନିଶ୍ଚୟ ସୁନା ତିଆରି କରୁଛନ୍ତି । ତା' ନୋହିଲେ ପ୍ରତିଦିନ ବିକିବା ଲାଗି ଏତେ ସୁନା ଏହାଙ୍କ ପାଖକୁ କେଉଁଠୁ ବା ଆସନ୍ତା ।

ଦୂତ ଯାଇ ରାଜାଙ୍କୁ ସବୁ ବିଷୟ ଜଣାଇଲା । ସାଧୁଙ୍କଠାରୁ ସୁନା ତିଆରି ବିଷୟ ଜାଣିବା ଲାଗି ରାଜାଙ୍କର ଇଚ୍ଛା ଆହୁରି ବଢିଗଲା । ମନ୍ତ୍ରୀଙ୍କ ହାତରେ ରାଜ୍ୟଭାର ଦେଇ ସେ ସାଧୁଙ୍କ ନିକଟକୁ ବାହାରିଲେ । ତାଙ୍କ ସହିତ ବହୁ ସୈନ୍ୟ ସାମନ୍ତ ମଧ୍ୟ ଯାଇଥାନ୍ତି । ସାଧୁଙ୍କ କୁଡ଼ିଆ ପାଖେ ପହଞ୍ଚି ସେ ତମ୍ବୁ ପକାଇ ରହିଲେ । ପରଦିନ ସକାଳୁ ବହୁତ ମୂଲ୍ୟବାନ ଉପହାର ଦେଇ ସେ

ସାଧୁଙ୍କ ସଙ୍ଗେ ଦେଖାକଲେ । ସାଧୁ ରାଜାଙ୍କୁ ଆଦର-ସତ୍କାର କରି ତାଙ୍କୁ ଆସିବାର କାରଣ ପଚାରିଲେ ।

ରାଜା କହିଲେ—"ମହାତ୍ମା ! ଆପଣ ତ ଜାଣନ୍ତି, ଜଗତରେ ଯେ କୌଣସି କାମ କରିବାକୁ ହେଲେ ପ୍ରଥମେ ଧନ ଆବଶ୍ୟକ । ବିନା ଧନ-ଦୌଲତରେ ରାଜ୍ୟ ଚଳାଇବା ସମ୍ଭବ ନୁହେଁ । ରାଜ୍ୟକୁ ରକ୍ଷା କରିବା ଲାଗି ବହୁ ସୈନ୍ୟସାମନ୍ତ ଓ କର୍ମଚାରୀ ତ ନିଶ୍ଚୟ ଦରକାର । ଦେଶରେ ଦୁର୍ଭିକ୍ଷ ପଡ଼ିଲେ ପ୍ରଜାମାନଙ୍କ ଲାଗି ଧାନଚାଉଳ ମଧ୍ୟ ବାହାରୁ ଆଣିବାକୁ ହୁଏ । ଏଥିକୁ ପାଇଁ ଧନ ହେଉଛି ପ୍ରଧାନ ସମ୍ବଳ ।" ଏତିକ କହି ରାଜା ଚୁପ୍‌ରହିଲେ ।

ସାଧୁ ନମ୍ରଭାବେ କହିଲେ— "ମହାରାଜ ! ଲୋକସମାଜଠାରୁ ବହୁ-ଦୂରରେ ଏଇ ଅରଣ୍ୟରେ ମୁଁ ଭଙ୍ଗା କୁଡ଼ିଆଟିରେ ରହୁଛି । ମୋ ଭଳି ଜଣେ ଦରିଦ୍ର ସାଧୁ ବା କପରି ଆପଣଙ୍କୁ ସାହାଯ୍ୟ କରିପାରିବ ?"

ରାଜା କହିଲେ—"ମହାତ୍ମା ! ମୁଁ ଜାଣେ, ଆପଣ ସୁନା ତିଆରି କରିବା ଉପାୟ ଜାଣନ୍ତି । ତାହା ଶିଖିବା ଲାଗି ମୁଁ ଆପଣଙ୍କ ପାଖକୁ ଆସିଛି ।"

ସାଧୁ ଉତ୍ତର ଦେଲେ—"ମହାରାଜ ! ମୁଁ ସେ ବିଷୟ ଜାଣେ । ମାତ୍ର ତାହା ଶିଖିବା ଲାଗି ଆପଣ ଯୋଗ୍ୟ ନୁହନ୍ତି ।"

ସାଧୁଙ୍କ କଥା ଶୁଣି ରାଜା ରାଗିଗଲେ । ତଥାପି ନିଜକୁ ସଂଯତ କରି କହିଲେ—"ତା'ହେଲେ, ଏ ବିଷୟ ଶିଖିବାଲାଗି ଆପଣ କାହାକୁ ମୋଠାରୁ ଅଧିକ ଉପଯୁକ୍ତ ବୋଲି ମନେକରନ୍ତି ?"

"ଉପଯୁକ୍ତ ଲୋକ ପାଇଲେ ମୁଁ ତାକୁ ନିଶ୍ଚୟ ସୁନା ତିଆରି ବିଷୟ ଶିଖାଇଦେବି; ମାତ୍ର ଆପଣଙ୍କୁ ନୁହେଁ ।"

ସାଧୁଙ୍କଠାରୁ ଏପରି ଉତ୍ତର ଶୁଣି ରାଜା ରାଗରେ ଅଗ୍ନିଶର୍ମା ହୋଇ-ଗଲେ । ଗୁରୁ ଜଣେ ସାଧୁ ପୁଣି ତାଙ୍କୁ ଗୋଟାଏ ବିଷୟ ଶିଖାଇବାକୁ ଅମଙ୍ଗ ହେବ । ରୁକ୍ଷଭାବେ କହିଲେ—"ଆପଣ କାହା ସଙ୍ଗେ ଏପରି କଥାବାର୍ତ୍ତା କରୁଛନ୍ତି, ଠିକଏ ଭାବନ୍ତୁ ।"

ସାଧୁ କହିଲେ—"ମୁଁ ତା ଭଲଭାବରେ ଜାଣେ, ମହାରାଜ !"

ରାଜା ଆଉ କଥାବାର୍ତ୍ତା ନ କରି ରୁଟ୍ଟ୍ରୂପ୍ ଆପଣା ତମ୍ବୁକୁ ଚାଲିଗଲେ । ପାଖ ଲୋକମାନଙ୍କ ସଙ୍ଗେ ଏ ବିଷୟରେ ପରାମର୍ଶ କଲେ । ସେମାନେ କହିଲେ, ଆପଣ ଏ ଦେଶର ରାଜା । ବଳପ୍ରୟୋଗ କରି ଆପଣ ସାଧୁଙ୍କଠାରୁ ଯାହା ଇଚ୍ଛା ଶିଖିପାରନ୍ତି ।"

ତା' ପରଦିନ ରାଜା ପୁଣି ସାଧୁଙ୍କ ପାଖେ ପହଞ୍ଚିଲେ ଓ ତାଙ୍କୁ ସୁନା ତିଆରି କୌଶଳ ଶିଖାଇ ଦେବାକୁ ଅନୁରୋଧ କଲେ; ମାତ୍ର ସାଧୁ ତାଙ୍କୁ ପୂର୍ବପରି ସ୍ପଷ୍ଟଭାବେ ଜଣାଇ ଦେଲେ—"ଆପଣ ଏ ବିଦ୍ୟା ଶିଖିବାକୁ ଯୋଗ୍ୟ ନୁହନ୍ତି ।"

ରାଜା ଏପରି ଉତ୍ତର ଶୁଣି ସେଇ ସ୍ଥାନ ଛାଡ଼ି ବାହାରିଯିବା ପୂର୍ବରୁ ସାଧୁଙ୍କୁ ଧମକ ଦେଇ କହିଲେ—"ଏଇ ବିଷୟ ଭାବିବା ଲାଗି ମୁଁ ଆପଣଙ୍କୁ ଏକମାସ ସମୟ ଦେଲି । ପରଦିନ ଆସି ଆପଣଙ୍କୁ ପଚାରି ଯାଉଥିବି । ଯଦି ଏକମାସ ମଧ୍ୟରେ ଆପଣ ମୋତେ ଏ ବିଦ୍ୟା ନ ଶିଖାନ୍ତି ତେବେ ଆପଣଙ୍କୁ ଫାଶିକାଠରେ ଝୁଲିବାକୁ ପଡ଼ିବ ।"

ରାଜାଙ୍କଠାରୁ ଏପରି ଧମକ ଶୁଣି ସାଧୁ ହସି ହସି କହିଲେ— "ମହା-ରାଜ ! ଆଜି ମୋ'ଠାରୁ ଯାହା ଶୁଣିଲେ, ଏକମାସ ପରେ ମଧ୍ୟ ଆପଣ ସେଇ ଏକା ଉତ୍ତର ପାଇବେ । ଏଣୁ ଏକମାସ ସମୟ ବୃଥା ନଷ୍ଟ କରିବା ଅପେକ୍ଷା ଆପଣ ଆଜି ମୋତେ ଫାଶି ଦେଇ ପାରନ୍ତି ।"

ରାଜା କିଛି ନ କହି ଉଠି ଚାଲିଗଲେ ।

ଅଳ୍ପ ସମୟ ମଧ୍ୟରେ ଏ ଖବର ଚାରିଆଡ଼େ ବ୍ୟାପିଗଲା ।

ତା'ପରଦିନ ରାଜା ବେଶ ବଦଳାଇ ବୁଲିବାକୁ ବାହାରିଲେ । ବୁଲି-ବୁଲି ସେ ସେଇ ଜଙ୍ଗଲ ଶେଷ ଭାଗରେ ପହଞ୍ଚି ଦେଖିଲେ ସେଠାରେ କେତେକ ସ୍ତ୍ରୀଲୋକ କାଠ ଗୋଟାଉଛନ୍ତି । ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଥାନ୍ତି ।

ଜଣେ କହିଲା—"ଅଟା ! ଆମ ରାଜାଙ୍କ ଅହଂକାର ବିଷୟ ଶୁଣିଛୁଟ ? ଜୋର୍‌ଜବରଦସ୍ତି କରି ସେ ସାଧୁବାବାଙ୍କଠାରୁ ବିଦ୍ୟା ଶିଖିବାକୁ ବସିଛନ୍ତି ।"

ଅନ୍ୟ ସ୍ତ୍ରୀ ଲୋକଟି ଉତ୍ତରଦେଲା—"ବୁଝିଲୁ ଭଉଣୀ ! ବିଦ୍ୟା ଶିଖିବା କ'ଣ ଏପରି ସହଜ ! ସେବା ଓ ଗୁରୁକୃପାରୁ ସିନା ଜଣେ ବିଦ୍ୟା ଶିଖିବ । କ୍ଷମତା ବଳରେ କିଏ କେବେ ଏହା ପାଇଲାଣି ?"

ଏ କଥା ଶୁଣି ପ୍ରଥମ ସ୍ତ୍ରୀ ଲୋକଟି ପୁଣି କହିଲା—"ମୁଁ ତ ସେଇଆ କହୁଛି ଭଉଣୀ; ସାଧୁଙ୍କୁ ଫାଶିରେ ଝୁଲାଇଦେଲେ କ'ଣ ରାଜାଙ୍କୁ ବିଦ୍ୟା ମିଳିଯିବ ? ବରଂ ରାଜା କିଛିଦିନ ସାଧୁଙ୍କ ସେବା କଲେ ସେ ନିଶ୍ଚୟ ପ୍ରସନ୍ନ ହୋଇ ରାଜାଙ୍କୁ ସେଇ ବିଦ୍ୟା ଶିଖାଇ ଦିଅନ୍ତେ ।"

ରାଜା ସ୍ତ୍ରୀ ଲୋକ ଦୁହିଁଙ୍କ କଥାବାର୍ତ୍ତା ଶୁଣିଲେ । କାର୍ଯ୍ୟସିଦ୍ଧିର ଯେପରି ଏକ ନୂଆ ବାଟ ତାଙ୍କୁ ମିଳିଗଲା । ସେଦିନ ସନ୍ଧ୍ୟା ହେଲାପରେ ରାଜା ନିଜ ବେଶ ବଦଳାଇ ଦେଲେ । ଅତି ସାଧାରଣ ବେଶରେ ଯାଇ ସାଧୁଙ୍କ ପାଖେ ପହଞ୍ଚିଲେ । ସେ ଜଣେ ଗରିବ ଲୋକ ବୋଲି ସାଧୁଙ୍କୁ ପରିଚୟ ଦେଲେ, ରାତିଟା ଆଶ୍ରମରେ ରହିବାଲାଗି ସାଧୁଙ୍କୁ ଅନୁରୋଧ କଲେ । ସାଧୁ କହିଲେ— "ଇଏତ ଅତି ଆନନ୍ଦର କଥା । ତୁମେ ଏଠି ରାତିଟା ରୁହ । ମୋର ଏଥିରେ ଅରାଜି ହେବାର କ'ଣ ଅଛି ?"

ରାତିରେ ପ୍ରସାଦ ସେବନ ସାରି ରାଜା ସାଧୁଙ୍କ ପାଦ ଆଉଁସିବାକୁ ବସିଗଲେ । ଏଣୁତେଣୁ କଥାବାର୍ତ୍ତା ହେଉ ହେଉ ଅହଂକାରୀ ରାଜାଙ୍କ ବିଷୟ ପଡ଼ିଲା । ସାଧୁ କହିଲେ—"ଯାହା ହୃଦୟରେ ଗରିବମାନଙ୍କ ପ୍ରତି ମାୟା ମମତା ନାହିଁ, ସେଭଳି ଲୋକ ମୋ'ଠାରୁ ବିଦ୍ୟା ଶିଖିବାକୁ ଯୋଗ୍ୟ ନୁହେଁ । ରାଜା ଇଚ୍ଛାକଲେ ମୋତେ ଫାଶି ଦେଇ ପାରନ୍ତି, ମାତ୍ର ମୁଁ କଦାପି ତାଙ୍କୁ ସୁନା ତିଆରି କରିବା ଉପାୟ ବତାଇ ପାରିବି ନାହିଁ ।"

ସେଇଦିନଠାରୁ ରାଜା ପ୍ରତିଦିନ ରାତିରେ ଆପଣାର ବେଶ ବଦଳାଇ ସାଧୁଙ୍କ ଆଶ୍ରମକୁ ଯିବାକୁ ଲାଗିଲେ । ଦିନବେଳା ସେ ରାଜକୀୟ ଆଡ଼ମ୍ବରରେ

ଯାଆନ୍ତି, ସାଧୁଙ୍କୁ ଭୟ ଦେଖାଇ ଫେରିଆସନ୍ତି । ପୁଣି ରାତି ହେଲେ ସେବକ ରୂପରେ ରାତିଟା କଟାଇବା ଲାଗି ଆଶ୍ରମରେ ଚାଲିଯାଆନ୍ତି । ସାଧୁଙ୍କ ଲାଗି କିଛି ଫୁଲ ଫଳ ମଧ୍ୟ ସାଙ୍ଗରେ ନିଅନ୍ତି । ରାତିରେ ସାଧୁଙ୍କ ସେବାସାରି ପାହାନ୍ତାରେ ଆପଣା ତମ୍ବୁକୁ ପୁଣି ଫେରିଆସନ୍ତି ।

ଏହିପରି ଦିନ ପରେ ଦିନ ବିତିଲା । ଏକମାସ ଶେଷ ହେବାକୁ ଆଉ ମାତ୍ର ଦିନେ ବାକିଥାଏ । ରାଜା ସାଧୁଙ୍କୁ କହିଲେ, "ଆଉ ମାତ୍ର ଦିନେ ବାକି, ଶେଷଥର ପାଇଁ ମୁଁ କହିଯାଉଛି—ଯଦି କାଲି ସକାଳ ସୁଦ୍ଧା ଆପଣ ମୋତେ ଏ ବିଦ୍ୟା ନ ଶିଖାନ୍ତି, ତେବେ କାଲି ଫାଶି ଦଣ୍ଡ ଭୋଗିବାକୁ ପଡ଼ିବ ।"

ସାଧୁ ପୂର୍ବପରି ହସି ହସି କହିଲେ—"ଆପଣ ଏଇ ବିଦ୍ୟା ଶିଖିବାକୁ ଯୋଗ୍ୟ ନୁହନ୍ତି ।" ରାଜା ସବୁଦିନ ପରି ସେଦିନ ମଧ୍ୟ ରାଗ ଓ ଦୁଃଖରେ ଆପଣା ଡେରାକୁ ଫେରିଗଲେ ।

ସନ୍ଧ୍ୟା ହେଲା । ଅନ୍ଧାର ହେଲା ପରେ ରାଜା ପୁଣି ଗରିବ ବେଶ ଧରି ସାଧୁଙ୍କ କୁଡ଼ିଆରେ ପଶିଯାଇ ଗୁରୁଙ୍କ ସେବାରେ ଲାଗିଲେ । ସବୁ କାମ ସରିବା ପରେ ରାଜା ସାଧୁଙ୍କ ପଦସେବା କରି ବସିଲେ । ଏତିକିବେଳେ ସାଧୁ କହିଲେ, "ଆରେ ପୁଅ ! ଏଠିକାର ରାଜା ଯେପରି ମୂର୍ଖ, ସେହିପରି ଅନ୍ୟାୟକାରୀ । ସେ ମୋତେ କାଲି ନିଶ୍ଚୟ ଫାଶି ଦେବ ।"

ଏହା ଶୁଣି ରାଜା ଲୁହଭରା ଆଖିରେ କହିଲେ, "ଗୁରୁଦେବ ! ଆପଣ କାହିଁକି ତାକୁ ସେଇ ବିଦ୍ୟା ଶିଖାଇ ଦେଉନାହାନ୍ତି ?"

ସାଧୁ କହିଲେ—"ଆରେ ପୁଅ ! ରାଜା ତ କ୍ଷମତାର ଭକ୍ତ । ସେ ଆପଣା ବାହୁ ବଳରେ ସବୁ ଜିନିଷ ପାଇବାକୁ ବସିଛି; ମାତ୍ର ଗୁରୁଠାରୁ ବିଦ୍ୟା ପାଇବ କିପରି ? ଗୁରୁସେବା ଓ ଗୁରୁକୃପା ବିନା ବିଦ୍ୟା ଶିଖିବା ଅସମ୍ଭବ । ଆରେ ବାବା, କାଲି ନିଶ୍ଚୟ ମୋତେ ମୃତ୍ୟୁ ଦଣ୍ଡ ମିଳିବ । ଏଇ ଦୁର୍ଲଭ ବିଦ୍ୟା ମୋ ଜୀବନ ଯିବା ସଙ୍ଗେ ସଙ୍ଗେ ଲୋପ ହୋଇଯିବ; ମାତ୍ର ମୁଁ ଏହା ଆଦୌ ଚାହେଁନା । ତୁ ମୋର ବହୁତ ସେବା କରିଛୁ । ଏଣୁ ମୁଁ ଭାବୁଛି ତୋତେ ହିଁ ଏହି ବିଦ୍ୟା ଶିଖାଇ ଦେବି ।"

ସାଧୁଙ୍କ କଥାଶୁଣି ରାଜାଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା । ମହାତ୍ମାଙ୍କଠାରୁ ହଠାତ୍ ଏପରି ଅନୁଗ୍ରହ ଲାଭ କରିବେ ବୋଲି ସେ ଆଶା କରିନଥିଲେ । କୃତଜ୍ଞତା ଜଣାଇ ସେ ସାଧୁଙ୍କର ପାଦଧୂଳି ଗ୍ରହଣ କଲେ । ଶେଷରେ ସାଧୁ କପଟ ବେଶଧାରୀ ରାଜାଙ୍କୁ ସୁନା ତିଆରି କରିବା ଉପାୟ ଶିଖାଇଦେଲେ ।

ସକାଳ ହେଲା । ରାଜା ଆପଣା ତମ୍ବୁକୁ ଫେରିଗଲେ । ତଥାପି ତାଙ୍କ ମନରେ ସନ୍ଦେହ ଜାତ ହେଲା । ସେ ଭାବିଲେ, ହୁଏତ ତାଙ୍କର ଛଦ୍ମବେଶକୁ ସାଧୁ ଚିହ୍ନି ନେଇଛନ୍ତି; ସେଥିପାଇଁ ପ୍ରାଣଭୟରେ ତାଙ୍କୁ ଗୁପ୍ତ ବିଦ୍ୟା ଶିଖାଇ ଦେଇଛନ୍ତି । ତା ନୋହିଲେ, ସେବାରେ ସନ୍ତୁଷ୍ଟ ହୋଇ ତାଙ୍କୁ ବିଦ୍ୟା ଶିଖାଇ ଦେଇଛନ୍ତି । ଏଇ ଦୁଇଟି ବିଷୟରୁ କେଉଁଟି ଠିକ୍, ତାହା ପରୀକ୍ଷା କରିବାଲାଗି ରାଜା ମନେ ମନେ ସ୍ଥିର କଲେ ।

କିଛି ସମୟ ପରେ ରାଜା ସବୁଦିନପରି ସାଧୁଙ୍କ କୁଡିଆକୁ ଗଲେ ଓ ସୁନା ତିଆରି ବିଷୟ ଶିଖାଇ ଦେବାକୁ ପ୍ରାର୍ଥନା କଲେ; ମାତ୍ର ସାଧୁଙ୍କଠାରୁ ସେଇ ଗୋଟିଏ ଉତ୍ତର ମିଳିଲା । ଫଳରେ ରାଜା ତାଙ୍କର ପୂର୍ବ ସଙ୍କଳ୍ପ ଅନୁଯାୟୀ ଆପଣାର ଘୋଷଣା ଶୁଣାଇଦେଲେ "ଘାତକ ! ଏଇ ଧାର୍ମିକ ସାଧୁଙ୍କୁ ଫାଶୀ ଦେବାକୁ ନେଇଯାଅ ।"

ଘାତକ ସାଧୁଙ୍କୁ ବନ୍ଦୀକଲା । ନିର୍ଦ୍ଦିଷ୍ଟ ସମୟରେ ବଧଭୂମିରେ ଫାଶି ଦେବାର ସବୁ ଆୟୋଜନ ହେଲା । ରାଜା ମଧ୍ୟ ଆସି ସେଠାରେ ପହଞ୍ଚିଲେ । ସାଧୁଙ୍କୁ ସେ ଆଉଥରେ ମଧ୍ୟ ପୂର୍ବପରି ଅନୁରୋଧ କଲେ । ମାତ୍ର ସାଧୁଙ୍କର ସେଇ ଏକା ଉତ୍ତର—"ଆପଣ ଏହି ବିଦ୍ୟା ପାଇବା ଲାଗି ଯୋଗ୍ୟ ନୁହନ୍ତି ।" ରାଜା ଫାଶି ଦେବାର ଶେଷ ଆଦେଶ ଶୁଣାଇଦେଲେ । ଘାତକ ଫାଶି ଦଉଡ଼ି ଆଣି ସାଧୁଙ୍କ ଗଳାରେ ପକାଇଲା । ରାଜା ପୁଣି ଥରେ ସାଧୁଙ୍କୁ ଅନୁରୋଧ କଲେ; ମାତ୍ର ସାଧୁଙ୍କର ସେଇ ଏକ କଥା ।

ସାଧୁଙ୍କର ଦୃଢ଼ତା ଦେଖି ରାଜା ବିସ୍ମିତ ହେଲେ । ଆପଣା ପକେଟରୁ ଖଣ୍ଡିଏ କାଗଜ ବାହାରକରି ସାଧୁଙ୍କୁ ଦେଖାଇ କହିଲେ—'ହେଇ ଦେଖନ୍ତୁ,

ଆପଣ ପ୍ରାଣଦେଇ ଯେଉଁ ବଦ୍ୟାକୁ ଗୁପ୍ତ ରଖିବାକୁ ଚାହାନ୍ତି, ତାହା ହିଁ ଏଥିରେ ଲେଖାହୋଇ ରହିଛି ।”

ଗତ ରାତିରେ ରାଜା ସାଧୁଙ୍କଠାରୁ ଯାହା ଶୁଣିଥିଲେ ତାହା ସେହି କାଗଜରେ ଲେଖା ହୋଇଥିଲା । କାଗଜଟି ଦେଖି ସାଧୁ ସବୁକଥା ବୁଝି-ପାରିଲେ । ଯେଉଁ ଗରିବ ଲୋକଟିକୁ ସେ ସୁନା ତିଆରି ଉପାୟ ଶିଖାଇ ଦେଇଛନ୍ତି, ସେଇ ଲୋକଟିକୁ କଏ ତାହା ସଙ୍ଗେ ସଙ୍ଗେ ଜାଣିପାରିଲେ । ଖୁସିହୋଇ ସେ କହିଲେ—“ରାଜା, ପ୍ରାଣଦଣ୍ଡ ବା ଭୟରେ ମୁଁ ତୁମକୁ ଶିକ୍ଷା ଦେଇନାହିଁ; କେବଳ ହେବା ଯୋଗୁହିଁ ତୁମକୁ ଗୁପ୍ତ ବଦ୍ୟା ମିଳିଛି । ଏହା ମୁଁ ସେବକକୁ ଶିକ୍ଷା ଦେଇଛି; ଅହଂକାରୀ ରାଜାକୁ ନୁହେଁ ?”

ସ୍ତ୍ରୀ ଲୋକମାନଙ୍କ କଥାର ମହତ୍ତ୍ୱ ଓ ସତ୍ୟତା ରାଜା ଏତେବେଳେ ବୁଝିପାରିଲେ । ନିଜ ହାତରେ ସେ ସାଧୁଙ୍କ ବେକରୁ ଫାଶିଦଉଡ଼ି ଖୋଲି-ଦେଲେ । ସାଧୁଙ୍କ ପାଦତଳେ ପଡ଼ି ଆପଣାର ଦୋଷ ପାଇଁ କ୍ଷମା ମାଗିଲେ ।



## ଭାଗ୍ୟର ହଠହଠା

ବୁଢ଼ାଟିଏ ବୁଢ଼ୀଟିଏ । ଗୋଟିଏ କୁଡ଼ିଆଟିରେ ରହୁଥାନ୍ତି । ବୁଢ଼ା ବଣରୁ କାଠ କାଟି ଡାକୁ ବିକେ । ସେଇ ପଇସାରେ ସେମାନେ ଚଳନ୍ତି । ସେମାନଙ୍କ କୁଡ଼ିଆକୁ ଲାଗି ଜଣେ ଧନୀ ଲୋକର ବଗିଚା । ବଗିଚାର ଆମ୍ବ ଗଛଟିଏ ଏଇ କୁଡ଼ିଆ ଘର ଉପରକୁ ନଇଁ ପଡ଼ିଥାଏ । ଗଛରେ ବହୁତ ଆମ୍ବ ପାଚିଥାଏ । ବୁଢ଼ା ବୁଢ଼ୀ ତାକୁ ଲୋଭରେ ଚାହିଁରହନ୍ତି । ଗୋଟିଏ ହେଲେ ତୋଳନ୍ତି ନାହିଁ । ଧନୀ ଲୋକର ଆଦେଶ, ଆମ୍ବ ପାଚି ତୁମ ଅଗଣାରେ ପଡ଼ିଲେ ତୁମେ ନେବ, ମାତ୍ର ମୋ ଗଛରେ ତମେ ହାତ ଦେଇ ପାରିବ ନାହିଁ ।

ବୁଢ଼ା ବୁଢ଼ୀ ଠାକୁରଙ୍କୁ ଡ଼ାକୁ ଥାନ୍ତି, ତୋଫାନ ହୁଅନ୍ତା କି ତା ହେଲେ ଆମ୍ବ ସବୁ ତାଙ୍କ ଅଗଣାରେ କୁଟେଇ ହୋଇ ପଡ଼ନ୍ତା ମାତ୍ର ଝଡ଼ ତୋଫାନ ହୁଏନା । ବୁଢ଼ୀ କହେ—"ଭଗବାନ ଖୁବ୍ ନିଷ୍ଠୁର । ସେ ଆମ ଡ଼ାକ ମୋଟେ ଶୁଣୁ ନାହାନ୍ତି । ଘରେ କୋଉ ପଇସା ପତ୍ର ଅଛି ଯେ ଶାଗ ମୁଗ କିଣିବ, ବୁଢା ପାଇଁ ଭଲ ଖାଇବା ଜିନ ତିଆରି କରିବ ? ଖାଲି ଶୁଖିଲ ରୁଟି ତିଆରି କରି ସ୍ୱାମୀକୁ ଖାଇବାକୁ ଦିଏ । ପୂର୍ବ ଅପେକ୍ଷା ଅଧିକ ଖଟାଏ । ଏହି ପରି କାମ କରି ବୁଢ଼ା ବିଚରା ଝିଡଗଲା । ବୁଢ଼ା ପାଚିଲା ଆମ୍ବ ଖାଇବାକୁ ଇଚ୍ଛା କରିଥାଏ । ମାତ୍ର ସେମାନଙ୍କ କପାଳକୁ ପାଚିଲା ଆମ୍ବ ଝଡ଼ିଲା ନାହିଁ ।

ବୁଢ଼ା ଦିନେ ବୁଢ଼ୀକି କହିଲା—ଆଲେ ମୋତେ ଆଜି ଖେଚେଡ଼ି ଖାଇ-ବାକୁ ଦେ । ନ ହେଲେ ମୁଁ କାମକୁ ଯିବ ନାହିଁ ।

ଖେଚେଡ଼ି କଲେ ବହୁତ ଖର୍ଚ୍ଚ; ନ କରିବ ବା କେମିତି ? ବୁଢ଼ା କାଳେ ମରିଯିବ । ଏଣୁ ବୁଢ଼ୀ ଖେଚେଡ଼ି ରାନ୍ଧିବାକୁ ବସିଗଲା । ଖେଚେଡ଼ି ଚୂଲିରୁ ନଓହ୍ଲାଉଣୁ ବୁଢ଼ା ଖାଇବାକୁ ବସିଗଲା । ବୁଢ଼ୀ କହିଲା—ସେ କଥା ହୋଇ ପାରିବ ନାହିଁ । ତମେ ବଣରୁ କାଠ ବୋଝେ ଆଣିପାରି, ତେବେ ଯାଇଁ ଖେଚେଡ଼ି ଖାଇବ ।

ଇଚ୍ଛା ନ ଥିଲେ ବି ବୁଢ଼ା ବାଧ ହୋଇ ବଣକୁ କାଠ ଆଣିବାକୁ ଗଲା । କାଠ କାଟୁଥାଏ, ଖେଚେଡ଼ି କଥା ଭାବୁଥାଏ । ବୋଝେ କାଠ କାଟି ସେ ଘରକୁ ବାହାରିଲା । ଏତିକି ବେଳକୁ ଭାଲୁଟିଏ ଝୁଲି ଝୁଲି ଆସି ତା'ପାଖେ ପହଞ୍ଚିଗଲା । ବୁଢ଼ା ଆଡକୁ ତାର ଗୋଟିଆ ମୁହଁ ବଢ଼େଇ ସେ କହିଲା—"କହୋ ଭାଇ, ତମର ସବୁ କୁଶଳତ ? କଣ ପାଇଁ ତମେ କାଠ ନେଉଛ ?"

ଆପଣାର ଓଠ ଘୃଷ୍ଟି ଘୃଷ୍ଟି ବୁଢ଼ା କହିଲା- "ଆରେ ଭାଇ, ସ୍ତ୍ରୀ କହିବାରୁ ମୁଁ କାଠ ନେଉଛି । ମୋ ପାଇଁ ସେ ଖୁବ୍ ବଢିଆ ଖେଚେଡି କଲା । ତା'ପରେ କହିଲା, ମୁଁ କାଠ ବୋଝେ ନେଇ ଦେଲେ ସେ ମୋତେ ଖେଚେଡ଼ି ଖାଇବାକୁ ଦେବ । ଆରେ ଭାଇ, ସେ ଯେଉଁ ଖେଚେଡ଼ି କରିଛି ତା କଥା କ'ଣ କହିବ ? ତା' ବାସନାରେ ତୋ ଜିଭରୁ ଲାଳ ବୋହି ପଡ଼ିବ ।"

ସହଜେ ତ ଭାଲୁ ଖାଇବାକୁ ଲୋଭି । ଖେଚେଡ଼ି ପ୍ରଶଂସା ଶୁଣି ସତକୁ ସତ ତା ଜିଭରୁ ଲାଳ ବୋହି ପଡ଼ିଲା । ସେ ସଙ୍ଗେ ସଙ୍ଗେ କହିଲା, ମୁଁ ଯଦି ବୋଝେ କାଠ ଦେବ ତୁମ ସ୍ତ୍ରୀ ମୋତେ ଖେଚେଡ଼ି ଖାଇବାକୁ ଦେବ ?"

ସ୍ତ୍ରୀ ଖେଚେଡ଼ି ଦେବକି ନାହିଁ ଏ ବିଷୟରେ ନିଶ୍ଚିତ ନ ହୋଇଥିଲେବି ବୁଢ଼ା କହିଲା—ହଁ, କାଠ ବୋଝକ ଯଦି ବହୁତ ହୋଇଥିବ ।"

ଭାଲୁ ପଚାରିଲା—"ଚାରିମହଣ କାଠ ନେଲେ ତା ମନକୁ ପାଇବତ ?"

ବୁଢ଼ା କହିଲା—"ମୋଟେ ଚାରିମହଣ କାଠ ! ଏତିକି କାଠ ତା' ମନକୁ ପାଇଲା ଭଳି ମନେ ହେଉନି । ତମେତ ଜାଣିଥିବ ଖେଚେଡ଼ି କରିବା କେଡ଼େ କଷ୍ଟ । ସେଥିପାଇଁ ଭଲ ଚାଉଳ, ଡାଲି ଓ ଯଥେଷ୍ଟ ଘିଅ ମସଲା ଦରକାର ।"

"ଆଚ୍ଛା, ଆଠମହଣ ହେଲେ ଚଳିବ ?"

"ନା, ଦଶମହଣ ।"

ଓଠ ଚାଟୁ ଚାଟୁ ଭାଲୁ କହିଲା—"ହଉ, ଆମ ଭିତରେ ତା'ହେଲେ ଏଇଆ ବୁଝାମଣା ହେଲା । ତମେ ତୁମ ସ୍ତ୍ରୀକୁ ଯାଇ ଏଇଆ କହିବ । ସେ ମୋ ପାଇଁ ଗରମ ଖେଚେଡ଼ି ରଖିଥିବ । ମୁଁ ସେତିକି କାଠ ନେଇ ତୁମ ଘରେ ପହଞ୍ଚିବି ।"

ବୁଢ଼ା ମନେ ମନେ ଖୁସିହୋଇ ଗଲା ଅଳପ ଖେଚେଡ଼ି ବଦଳରେ ବହୁତ କାଠ ମିଳିଯିବ । ବୁଢ଼ୀକୁ ଏଇକଥା କହିବାକୁ ସେ ଘରକୁ ଚଞ୍ଚଳ ଚାଲିଲା । ତାଠାରୁ ସବୁ ଶୁଣି ସ୍ତ୍ରୀ କହିଲା— "ହଁ, ଠିକ୍ ଦର ମୂଲେଇଚ । ହେଲେ ଭାଲୁକୁ କେତେ ଖେଚେଡ଼ି ଦିଆଯିବ ସେ ବିଷୟରେ କ'ଣ କିଛି ଜବାବ କରିଛ ? ସେଇଟାତ ଖାଇବାରେ ଓସ୍ତାଦ । ଆମେ ଗୁଣ୍ଡାଏ ଖାଇଲା ବେଳକୁ ସେ ହାଣ୍ଡିକ ଯାକ ସଫା କରିଦେବ ।"

ବୁଢ଼ୀ ଠିକ୍ କଥା ଉଠେଇଛି । ବୁଢ଼ା ଭାଲୁ ସଙ୍ଗେ ଏ ବିଷୟରେ ତ

କିଛି ଛାଡ଼ିଦେଇ ନାହିଁ । ଏଣୁ ସେ କହିଲା—"ତା' ହେଲେ ସେ ଆସି ପହଞ୍ଚିବା ପୂର୍ବରୁ ଚାଲ ଆମେ ଆଗେ ଖାଇଦେବା ।"

ସେଇଆ ହେଲା । ଦୁହେଁ ଖେଚେଡ଼ି ଖାଇ ବସିଲେ । ଦୁହିଁଙ୍କ ଦୁହେଁ ଚାଉ ଚାଉ କରି ଖାଉଥାନ୍ତି । ବୁଢ଼ା ଖାଉ ଖାଉ କହିଲା—"ଆଲୋ, ଭାଲୁ-ପାଇଁ କିଛି ରଖିବା ।"

ପାଟିରେ ଖେଚେଡ଼ି ପୂରାଇ ବୁଢ଼ୀ କହିଲା— "ହଁ, ହଁ, ଭାଲୁ କଥା ଭୁଲିଯିବା ଉଚିତ ନୁହେଁ ।"

ଆଉରି ଗୁଳାଏ ଖେଚେଡ଼ି ପାଟିରେ ପୂରାଇ ବୁଢ଼ା କହିଲା—"ହଁ ଠିକ୍ କଥା । ଏମିତି କଥା କହି ଖାଉ ଖାଉ ସେମାନେ ହାଣ୍ଡିକ ଯାକ ଖେଚେଡ଼ି ଖାଇଦେଲେ । ହାଣ୍ଡିଟା ସଫା ହୋଇଯିବା ଦେଖି ବୁଢ଼ା ଡ଼ରିଯାଇ କହିଲା—"ଆରେ, ଆମେତ ସବୁ ଖାଇଦେଲେ, ଏଥର ଭାଲୁକୁ କ'ଣ ଦିଆଯିବ ?"

ବୁଢ଼ୀ—'ଏସବୁ ତୁମରି ଯୋଗୁଁ ହେଲା । ତୁମେ ତ ବେଶୀ କରି ଖାଇଦେଲ ।'

ବୁଢ଼ା—'ତମେ କ'ଣ କମ୍ ? ହାଣ୍ଡିକର ଅଧା ତ ତୁମେ ଖାଇଛ ।'

ବୁଢ଼ୀ—'ନା, ମୁଁ ଏତେ ଖାଇନି । ସମସ୍ତେ ଜାଣନ୍ତି ମରଦ ଲୋକେ ମାଇପଙ୍କଠାରୁ ବେଶୀ ଖାଆନ୍ତି ।'

ବୁଢ଼ା—'ହଉ ସେଥିରୁ ଆଉ କଣ ମିଳିବ ? ଯାହା ହେବାର ତ ହୋଇ ଗଲାଣି । ଏବେ କଳିକରି କି ଲାଭ ? ଭାଲୁ ଆସିଲେ କଣ କରିବା ? ଖେଚେଡ଼ି ନ ଦେଖିଲେ ସେ ରାଗି ନିଆଁ ବାଣ ହୋଇଯିବ ।'

ବୁଢ଼ୀ ଟିକିଏ ଭାବି କହିଲା—'ତମେ କିଛି ଭାବନା । ମୁଁ ଗୋଟାଏ ଉପାୟ ପାଞ୍ଚିଛି । ଚୁଲି ଉପରେ ଖେଚେଡ଼ି ହାଣ୍ଡିଟା ବସାଇ ଦେଇ ଆମେ ଆଟୁ ଉପରେ ଲୁଚି ରହିବା । ଏଣେ ଅନ୍ୟ ଘରେ ଗୁବ ପକେଇ ଦେଇଥିବା । ଭାଲୁ ଆସି ଚୁଲି ଉପରେ ଖେଚେଡ଼ି ହାଣ୍ଡିଟା ଦେଖି ପକେଇ ଆଗେ କାଠ

ବୋଝଟିକ ତଳେ ପକେଇ ଦେବ । ଆମେ ବାହାରକୁ ଯାଉଛୁ ଭାବ ସଙ୍ଗେ ସଙ୍ଗେ ଚୁଲି ପାଖକୁ ଚାଲି ଆସିବ । ତା'ପରେ କାନ ମୁଣ୍ଡା ଆଉଁସି ବାଟେ ବାଟେ ଫେରଯିବ । ମୁଁ ଭାବୁଛି କାଠ ବୋଝଟିକ ସେ କେବେ ହେଲେ ଫେରାଇ ନେବ ନାହିଁ ।"

ବୁଢ଼ୀ କଥା ବୁଢ଼ା ମନକୁ ପାଇଗଲା । ଘରେ ଚାବିପକେଇ ଖେଚେଡ଼ି-ହାଣ୍ଡି ଚୁଲି ଉପରେ ରଖି ଦୁହେଁ ଯାଇ ଅଟ୍ଟ ଉପରେ ଲୁଚି ବସିଲେ ।

ଏଣେ ଭାଲୁ ବଣରେ ପଶି କାଠ ଭାଙ୍ଗିବାରେ ଲାଗିଥାଏ । ଏଣେମହଣେ କାଠ ଯୋଗାଡ଼ କରିବା ସହଜ କଥା ନୁହେଁ । ବହୁ କଷ୍ଟରେ ସେ ଯେତେକ ଯୋଗାଡ଼ କଲା । ଆପଣା ପିଠିରେ ନହଲା, କାଠୁଆ ବୁଢ଼ା ଘରେ ଠଳ ଠଳ ଯାଇ ପହଞ୍ଚିଲା । ଅଗଣାକୁ ପଶିଯାଇ ଦେଖିଲା, ଘରେ କେହି ନାହାନ୍ତି, ଚୁଲି ଉପରେ ଖେଚେଡ଼ି ହାଣ୍ଡିଟି ଥୁଆ ହୋଇଛି । କାଠ ବୋଝଟାକୁ ଅଗଣାରେ ପକାଇ ଦେଇ ସିଧା ସଳଖ ଚୁଲି ପାଖକୁ ଚାଲିଗଲା । ଦେଖିଲା ବେଳକୁ ହାଣ୍ଡିଟା ଖାଲି । ଡ଼ାଲି ବା ଚାଉଳର ଦାନାଟିଏ ବ ସେଥିରେ ଲାଗିନାହିଁ । କେବଳ ଖେଚେଡ଼ିର ବାସନା ତା'ଦେହରୁ ବାହାରୁଛି । ରାଗରେ ତା ମୁହଁ ନାଲି ପଡ଼ିଗଲା, ଆଖି ବଡ଼ ହୋଇଗଲା, ନାକରୁ ଗରମ ପବନ ବାହାରିଲା । ରାଗରେ ସେ ଗର୍ଜିବାକୁ ଲାଗିଲା । କଣ ବା ଆଉ କରିବ ? କାଠ ବୋଝଟାକୁ ଉଠେଇ ଫେରି ଯିବାକୁ ବାହାରିଲା । ମାତ୍ର ସେତେବେଳକୁ ସେ ହାଲିଆ ହୋଇ ପଡ଼ିଥାଏ । ବୋଝଟାକୁ ସେ ଟକୁ ଉଠାଇ ପାରିଲା ନାହିଁ । ରାଗରେ ଗର ଗର ହୋଇ ସେ କହିଲା—"ରହରେ ବୁଢ଼ା ମୁଁ ନିଶ୍ଚେ ଏହାର ପ୍ରତି-ଶୋଧ ନେବ ।"

ଭାଲୁର ଖେଚେଡ଼ି ଖାଇବାତ ନୋହିଲା । ବାହଯାକ ଖେଚେଡ଼ି ବାସନା ଶୁଙ୍ଘି ଶୁଙ୍ଘି ଯିବା ଏଇ ଆଶାରେ ସେ ଖେଚେଡ଼ି ହାଣ୍ଡିଟି ଉଠେଇ ନେଇ ଯିବାକୁ ବାହାରିଲା । ଏତିକବେଳେ ଅଗଣା ପଟକୁ ଝୁଲି ପଡ଼ିଥିବା ଆମ୍ବଗଛ ଉପରେ ତା'ର ନଜର ପଡ଼ିଗଲା । ଗଛଡ଼ାଳରେ ବହୁତ ଆମ୍ବ ପାଚି ଝୁଲୁ-ଥାଏ । ପାଚିଲା ଆମ୍ବ ଦେଖି ତା' ପାଟିରୁ ନାଳ ବୋହିଲା । ଭୋକରେ ତ

ପେଟ ଜଳୁଥାଏ । ସଙ୍ଗେ ସଙ୍ଗେ ସେ କୁଦାମାର ପାଚିର ଉପରୁ ଉଠିଗଲା । ପଛ ଦୁଇ ଗୋଡ଼ରେ ଠିଆ ହୋଇ ଆଗ ଗୋଡ଼ରେ ଡାଳକୁ ଯାବୁଡ଼ି ଧରି ଗୋଟାଏ ପାଚିଲା ଆମ୍ବକୁ ନେଇ ତଳର ପାଣିରେ ପକେଇ ଦେଲା । ଆମ୍ବଟା ସୁଆଦିଆ । ଭାଲୁ ଭାବିଲା, ଏଥିରୁ କିଛି ଖାଇ ଆଉ ଗୁଡ଼ାଏ ବଣକୁ ନେଇ-ଯିବ । ସୁବିଧାରେ ଅନ୍ୟମାନଙ୍କୁ ବାଣ୍ଟିବ । ଗୁଡ଼ାଏ ପାଚିଲା ଆମ୍ବ ତୋଳି ସେ ହାଣ୍ଡିରେ ରଖିଲା । ହାତ ପାହାନ୍ତାରେ ଗୋଟାଏ କଞ୍ଚା ଆମ୍ବ ମିଳିଯିବାରୁ ସେ ତାକୁ ପାଟିକୁ ପକେଇ ଦେଲା । ମାତ୍ର ସେଇଟା ଖୁବ୍ ଆମ୍ବିଲା ଲାଗିବାରୁ ତା ମୁହଁ ବିଚକଟିଆ ହୋଇଗଲା ।

ଏଣେ ବୁଢ଼ା ବୁଢ଼ୀ ଘରେ ଲୁଚିରହି କବାଟ ଫାଙ୍କରୁ ଭାଲୁର କାମ ଦେଖୁଥାନ୍ତି । ଭାଲୁ ଜାଣି ନପାରିବ ବୋଲି ଧୀରେ ଧୀରେ ନିଶ୍ୱାସ ନେଉ-ଥାନ୍ତି । ବୁଢ଼ୀକୁ ସେତିକିବେଳେ ସର୍ଦ୍ଦି ହୋଇଥାଏ । ଅନେକ ବେଳରୁ ତାଙ୍କୁ ଛିଙ୍କ ଲାଗିଲାଣି, କୌଣସିମତେ ସେ ତାକୁ ଚପେଇ ରଖିଥାଏ । ଭାଲୁ ହାଣ୍ଡିରେ ହାଣ୍ଡିଏ ପାଚିଲା ଆମ୍ବ ପୁରାଇ ପାଚେରୀ ଉପରକୁ ଓହ୍ଲାଇବାକୁ ବସିଛି ଏତିକିବେଳେ ବୁଢ଼ୀ ଛିଙ୍କିଦେଲା—ଆ-ଛୁଁ । ହଠାତ୍ ଏପରି ଗୋଟାଏ ଅଦ୍ଭୁତ ଶବ୍ଦ ଶୁଣି ଭାଲୁ ଚମକି ପଡ଼ିଲା । ସେ ଭାବିଲା, ତାକୁ ଲକ୍ଷକରି କିଏ ବୋଧହୁଏ ଗୁଳି ମାରିଲା । ଖେଚେଡ଼ି ହାଣ୍ଡିଟାକୁ ଅଗଣାରେ ଫୋପାଡ଼ିଦେଇ ସେ ପ୍ରାଣପଣେ ଦଉଡ଼ିଲା ।

ବୁଢ଼ା ବୁଢ଼ୀ ହସୁଥାନ୍ତି । ସେମାନେ ଖେଚେଡ଼ି ଖାଇଲେ ମାଗଣାରେ ବୋହେ କାଠ ଓ ଆମ୍ବ ପାଇଗଲେ । ଖଟା ଆମ୍ବଖାଇ ବିଚରା ଭାଲୁର ଦାନ୍ତ ଦୁଇଦିନଯାଏ ଦରଜ ରହିଲା ।

( ପଞ୍ଜାବ )



# ଅତିଲୋଭରୁ ହଟହଟା

ଲୋକଟି ଗୃଷକର ଚଳୁଥାଏ । ମାତ୍ର ସବୁବେଳେ ତାର ଅଭାବ । ଥରେ ସେ ବାଧ୍ୟ ହୋଇ ଜଣେ ମହାଜନଠାରୁ କରଜ କଲା । ମାତ୍ର ତା ପକ୍ଷେ କରଜ ଶୁଝିବା ସମ୍ଭବ ହେଲାନାହିଁ । ଦିନକୁଦିନ ତା'ର ଅଭାବ ବଢିଲା ପଛକେ କମିଲା ନାହିଁ । ଏଥିପାଇଁ ସେ ଅତି କଷ୍ଟରେ ଚଳୁଥାଏ । ଯାହା କମାଏ, ସବୁ ମହାଜନ ଖଜଣା ଶୁଝିବାରେ ଯାଏ; ଏଣୁ ଫସଲ ଭଲହେଉ ବା ଖରାପ ହେଉ, ତାର ସବୁ ବଳେ ଅଭାବ ଲାଗି ରହିଥାଏ ।

ଦିନକୁଦିନ ଗୃଷୀଟିର ଅବସ୍ଥା ଖରାପ ହେଲା । ଶେଷକୁ ତା ପାଖେ ଆଉ କିଛି ବି ରହିଲା ନାହିଁ; ମହାଜନର କରଜ କପରି ବା ପରିଶୋଧ କରିବ ? ତହୁଁ ଦିନେ ସେ ମହାଜନ ପାଖକୁ ଯାଇ କହିଲା—"ସାଆନ୍ତ ! ମୋ ଘରେ ଆଉ କ'ଣ ଅଛି ଯେ ଆପଣଙ୍କୁ ଦେବି ? ପଥରକୁ ଚିପୁଡ଼ିଲେ କ'ଣ ପାଣି ବାହାରିବ ? ଏବେ ତ ଆପଣଙ୍କର ମୋଠୁଁ କିଛି ପାଇବାର ଆଉ ଆଶା ନାହିଁ; ବରଂ କ'ଣ କଲେ ମୁଁ ଧନୀ ହୋଇପାରିବି, ସେଇ ବାଟ ମୋତେ ବତାଇ ଦିଅନ୍ତୁ ।"

ମହାଜନ କହିଲା—"ଆରେ ବାବୁ ! ଧନ ପାଇବା କ'ଣ କାହା ହାତର କଥା ? ଏକା ଭଗବାନ ମଣିଷକୁ ଧନ ଦିଅନ୍ତି—ତାଙ୍କୁ ହିଁ ମାଗ ।" ଗୃଷୀଟି ସରଳବିଶ୍ୱାସୀ । ମହାଜନ କଥାରେ ବିଶ୍ୱାସ କରି ସେ ତାଙ୍କୁ ଦଣ୍ଡବତ କରି ଘରକୁ ଫେରିଆସିଲା । କୌଣସି ବିଷୟରେ ତା'ର ଆଉ ମନ ଲାଗିଲା ନାହିଁ । କପରି ଭଗବାନଙ୍କୁ ଭେଟି ଆପଣା ଅଭାବ ବିଷୟ ତାଙ୍କୁ କହିବ ସେଇଆ ଭାବୁଥାଏ । ତା ପରଦିନ ସେ ତିନିପଟ ଚପାଟି (ମୋଟା ସେକାରୁଟି) ସାଙ୍ଗରେ ନେଇ ଭଗବାନଙ୍କୁ ଖୋଜିବାକୁ ବାହାରିପଡ଼ିଲା ।

ଅନେକ ବାଟ ଗଲାପରେ ଜଣେ ବ୍ରାହ୍ମଣଙ୍କ ସଙ୍ଗେ ତା'ର ଦେଖାଗଲା । ଗୃଷୀ ତାଙ୍କୁ ଖଣ୍ଡେ ଚପାଟି ଦେଇ ଅନୁରୋଧ କରି କହିଲା, "ଆଜ୍ଞା, ମୋତେ

ଦୟାକରି ଭଗବାନ ପାଖକୁ ଯିବା ବାଟ ବତାଇ ଦିଅନ୍ତୁ ।” ମାତ୍ର ବ୍ରାହ୍ମଣ କୌଣସି ଉତ୍ତର ନ ଦେଇ ବାଟେ ବାଟେ ଚାଲିଗଲେ । ବିଚରା ଚାଷୀଟି ଏଥିରେ ନିରାଶ ନ ହୋଇ ଆଗେଇ ଚାଲିଲା ।

ପୁଣି କିଛିବାଟ ଗଲାପରେ ସେ ଜଣେ ବାବାଜିଙ୍କୁ ଦେଖିଲା । ତାଙ୍କୁ ମଧ୍ୟ ସେହିପରି ଖଣ୍ଡେ ଚପାଟି ଦେଇ ଭଗବାନଙ୍କ ପାଖକୁ ଯିବା ବାଟଟି ବତାଇଦେବାକୁ କହିଲା; ମାତ୍ର ତାଙ୍କଠାରୁ ମଧ୍ୟ କୌଣସି ସାହାଯ୍ୟ ମିଳିଲା ନାହିଁ ।

ଶେଷରେ ଜଣେ ଗରିବ ଲୋକ ସଙ୍ଗେ ତାର ଦେଖାହେଲା । ଲୋକଟି ଗୋଟିଏ ଗଛମୂଳରେ ବସିଥାଏ, ଭୋକରେ ହାଲିଆ ହୋଇପଡ଼ିଲା ପରି ଦିଶୁଥାଏ । ଚାଷୀ ଆପଣାର ଶେଷ ସମ୍ବଳ ଚପାଟି ଖଣ୍ଡିକ ସେଇ ଗରିବ ଲୋକଟିକୁ ଖାଇବାକୁ ଦେଲା । ଲୋକଟି ଖାଇସାରିଲା ପରେ ଦୁହେଁ କଥାବାର୍ତ୍ତା ହେଲେ ।

ଗଛମୂଳେ ବସିଥିବା ଲୋକଟି ଚାଷୀକୁ କହିଲା—“ଭାଇ ! ତମେ କୁଆଡ଼େ ଯାଉଛ ?”

“ମୁଁ କେଉଁଠାକୁ ଓ କେଉଁବାଟେ ଯିବି ତା ନିଜେ ବି ଜାଣେନି । ତେବେ—ଭଗବାନ ସଙ୍ଗେ ସାକ୍ଷାତ କରିବାକୁ ହିଁ ମୁଁ ବାହାରିଛି । କେଉଁବାଟେ ଗଲେ ମୁଁ ତାଙ୍କ ଭେଟ ପାଇବି, ଦୟାକରି କହିପାରିବ ?”

ଲୋକଟି ହସି ହସି କହିଲା—“ହଉ, ତେବେ ଶୁଣ । ମୁଁ ନିଜେ ହେଉଛି ଭଗବାନ । ତୋ ସତ୍‌କର୍ମର ପୁରସ୍କାର ଦେବାକୁ ହିଁ ମୁଁ ଏଠାକୁ ଏମିତି ବେଶରେ ଆସିଛି । ତୁ ମୋଠାରୁ କ’ଣ ଚାହୁଁଛୁ, କହ ।”

ଚାଷୀର ଆନନ୍ଦ କହିଲେ ନ ସରେ । ସେ ଭଗବାନଙ୍କ ଗୋଡ଼ତଳେ ପଡ଼ି ନିଜର ସବୁ ଦୁଃଖ କହିଗଲେ । ଭଗବାନ ତାକୁ ଗୋଟିଏ ଶଙ୍ଖ ଦେଲେ, ତାହାକୁ ବଜାଇବାର ଉପାୟ ବତାଇଦେଇ କହିଲେ— “ହେଇଟି ଦେଖ୍, ଏଇ ଶଙ୍ଖଟିକୁ ଏପରି ଭାବେ ବଜାଇଲେ ତୁ ଯାହା ଚାହିଁବୁ, ତାହା ପାଇପାରିବୁ । ମାତ୍ର ମନେରଖିଥା, ସେଇ ଠକ ମହାଜନକୁ କଦାପି ବିଶ୍ୱାସ କରିବୁ ନାହିଁ କିମ୍ବା ତାକୁ ଏହି ଶଙ୍ଖଟି ଦେବୁ ନାହିଁ ?”

ଶଙ୍ଖଟି ପାଇ ଗୃଷୀ ଖୁସିରେ ଆପଣା ଗାଁକୁ ଫେରଗଲା । ଗାଁରେ ବେଶ୍ ଆନନ୍ଦରେ ରେଲା । ମହାଜନ ବୁଝିପାରିଲା, ଓଲୁ ଗୃଷୀଟା ବୋଧହୁଏ କେଉଁଠୁ କିଛି ଅପୂର୍ବ ଜିନିଷ ପାଇଯାଇଛି । ଏହା ଭାବି ସେ ଦିନେ ଯାଇ ଗୃଷୀଘରେ ପହଞ୍ଚିଲା । ଗୃଷୀକୁ ଖୁବ୍ ଫୁସୁଲା ଫୁସୁଲା କରି ସେଇ ବିଷୟରେ ପଗ୍ଲରିଲା । ମହାଜନ କଥାରେ ଭୁଲିଯାଇ ଗୃଷୀ ତାକୁ କୁହୁକ ଶଙ୍ଖ ପାଇବା ବିଷୟ କହିଦେଲା; ମାତ୍ର କିପରି ଶଙ୍ଖଟି ବଜାଇବାକୁ ହୁଏ, ସେକଥା ସେ କହିନଥାଏ ।

ମହାଜନର ଲୋଭ ହେଲା । ଯେ କୌଣସି ଉପାୟରେ ଗୃଷୀଠାରୁ ସେହି ଶଙ୍ଖଟିକୁ ନେବାଲାଗି ସେ ଚେଷ୍ଟାକଲା । ଦିନେ ସୁଯୋଗ ଉଣ୍ଡି ଶଙ୍ଖଟିକୁ ସେ ଗୃଷୀଘରୁ ଚୋରାଇ ନେଇଗଲା ।

ଶଙ୍ଖଟି ନେଇ ସେ ବଜାଇବାକୁ ଚେଷ୍ଟାକଲା । ମାତ୍ର ଯେତେ ଚେଷ୍ଟା-କଲେ ବି କୌଣସିମତେ ସେ ଶଙ୍ଖଟି ବଜାଇ ପାରିଲା ନାହିଁ । ଶେଷକୁ ବିରକ୍ତହୋଇ ଦିନେ ଶଙ୍ଖଟିକୁ ନେଇ ସେ ଆସି ଗୃଷୀ ପାଖେ ପହଞ୍ଚିଲା । କହିଲା—"ଆରେ, ତୋ ଶଙ୍ଖଟି ସିନା ମୁଁ ଯୋଗକୁ ପାଇଗଲି; ମାତ୍ର ତାକୁ କୌଣସିମତେ ବଜାଇ ପାରୁନାହିଁ । ତୁ ବି ତାକୁ ବଜାଇ ପାରିବୁକି ନାହିଁ ସନ୍ଦେହ । ତେବେ ଯାହାହେଉ, ମୁଁ ଗୋଟାଏ ସର୍ତ୍ତରେ ତୋତେ ଶଙ୍ଖଟି ଫେରାଇ ଦେଇପାରେ । ତୁ ଶଙ୍ଖ ବଜାଇ ଯାହା ପାଉଥିବୁ, ମୋତେ ତା'ର ଦୁଇଗୁଣ କରାଇ ଦେଉଥିବୁ । ଏଇ ସର୍ତ୍ତରେ ଯଦି ତୁ ରାଜି, ତେବେ ଶଙ୍ଖଟି ଫେରିପାଇବୁ ।"

ଗୃଷୀ କହିଲା—"ନା, ତା' ହୋଇପାରିବ ନାହିଁ । ତା' ହେଲେ ତ ଦୂର୍ବଳ ମୁଁ ଖଟୁଥିବି । ଆଉ ଆପଣ କିଛି ନକରି ମୋଠାରୁ ବେଶୀଭାଗ ପାଇଯାଉଥିବେ ।"

କପଟୀ ମହାଜନ ତାକୁ ଭୁଲାଇବାକୁ ଯାଇ କହିଲା—"ଦେଖୁଛି, ତୁ ଗୋଟାଏ ନପଟ ଓଲୁ । କଥାଟା ତ ଆଦୌ ବୁଝିପାରୁନାହୁଁ । ତୁ ଯାହା ପାଇବାର କଥା, ତାହା ତ ପାଇବୁ । ତୋର ଏଥିରେ କ୍ଷତି କ'ଣ ? ଶଙ୍ଖ ବଜାଇଲେ ତୁ ଯାହା ଗୃହିଁବୁ, ତାହା ପାଇପିବୁ । ମୁଁ ତୋ'ଠୁଁ ଧନୀ ହୁଏ ବା

ଗରିବ ହୁଏ; ଚୋର ହେଥିରେ ଯାଏ-ଆସେ କେତେ ?"

ଶେଷରେ ଗୃଷୀ ବାଧହୋଇ ମହାଜନ କଥାରେ ରାଜିହେଲା । ମହାଜନ ଗୃଷୀକୁ ଶଙ୍ଖଟି ଫେରାଇ ଦେଲା । ଗୃଷୀ ସେହିଦିନଠାରୁ ଶଙ୍ଖ ବଜାଇ ଯାହା ପାଏ, ତାହାର ଦୁଇଗୁଣ ପୁଣି ଶଙ୍ଖ ବଜାଇ ମହାଜନକୁ ଯୋଗାଇଦିଏ ।

ଏଥିପାଇଁ ଗୃଷୀ ମନରେ ଖୁବ୍ ଦୁଃଖ କଲା । ସେ ଶଙ୍ଖ ବଳରେ ଯାହା ପାଇବାର ପାଇଲା । ମାତ୍ର ମହାଜନ କାହିଁକି ମାଗଣାରେ ତା'ଠୁ ଦୁଇଗୁଣ ପାଇବ ? ଏଣୁ ସେ ଯାହା ଗୃହୁଁଥାଏ ତାହା ଶଙ୍ଖ ବଳରେ ପାଉଥିଲେ ବି ତା' ମନରେ ସବୁବେଳେ ଅଶାନ୍ତ ।

ଏମିତି କିଛିଦିନ ଗଲା । ସେ ବର୍ଷ ଦେଶରେ ଭଲ ବର୍ଷା ହେଲା ନାହିଁ । ବର୍ଷା ନ ହେବାରୁ ଗୃଷୀମାନଙ୍କ ବିଲରେ ଫସଲ ସବୁ ନଷ୍ଟ ହେବାକୁ ବସିଲା । ଗୃଷୀଟି ଭାବିଲା, ଗୋଟିଏ କୂଅ ନିହାତି ଦରକାର । ତା'ହେଲେ ସେ ଜମିରେ ପାଣି ମଡ଼ାଇ ପାରିବ । ଏହା ଭାବି ସେ ଶଙ୍ଖ ବଜାଇଲା । ଶଙ୍ଖ ବାଜିବାମାତ୍ରେ ତା'ର ଗୃଷଜମି ନିକଟରେ ଗୋଟାଏ ସୁନ୍ଦର କୂଅ ତିଆର ହୋଇଗଲା । ମାତ୍ର ସଙ୍ଗେ ସଙ୍ଗେ ମହାଜନ ଲାଗି ତାକୁ ଶଙ୍ଖ ବଜାଇବାକୁ ପଡ଼ିଲା ଓ ମହାଜନର ଜମିପାଖେ ସେହିପରି ଦୁଇଟି ସୁନ୍ଦର ନୂଆ କୂଅ କରାଇବାକୁ ପଡ଼ିଲା । ଏହା ଦେଖି ଗୃଷୀ ସହୁଛି କେତେକ ? ହିଂସା ଓ ଈର୍ଷାରେ ତା'ର ମନ ଜଳିବାକୁ ଲାଗିଲା । କ'ଣ କରିବ ? ମହାଜନର ସବୁବେଳେ ଭଲ ହେବ କାହିଁକି ? ଭାବି ଭାବି ଶେଷକୁ ତାକୁ ଗୋଟିଏ ଭଲ ଉପାୟ ଦେଖାଗଲା ।

ସଙ୍ଗେ ସଙ୍ଗେ ସେ ଶଙ୍ଖଟିକୁ ଧରି ଖୁବ୍ ଜୋର୍‌ରେ ବଜାଇଲା । ବଡ଼-ପାଟିରେ କହିଲା—"ହେ ଭଗବାନ ! ମୋର ଇଚ୍ଛା, ମୋର ଗୋଟାଏ ଆଖି ଫୁଟିଯାଉ ।" ସଙ୍ଗେ ସଙ୍ଗେ ତା'ର ଗୋଟିଏ ଆଖି ଫୁଟିଗଲା । ଏହାପରେ ମହାଜନ ଲାଗି ତା'ର ଶଙ୍ଖ ବଜାଇବା କଥା । ମହାଜନ ତା'ର ଦୁଇଗୁଣ ପାଇବ । ମହାଜନ ଲାଗି ସେ ଶଙ୍ଖ ବଜାଇବାରୁ ମହାଜନର ଦୁଇଟିଯାକ ଆଖି ନଷ୍ଟ ହୋଇଗଲା । ମହାଜନ ସେତେବେଳେ ତା' ଜମି ପାଖକୁ ବୁଲି ଯାଇ-ଥିଲା । ହଠାତ୍ ଅନ୍ଧ ହୋଇଯିବାରୁ ସେ ଅଣ୍ଡାଳି ଅଣ୍ଡାଳି ଯିବାକୁ ବାଧ-

ହେଲା । ଅଣ୍ଡାଳ ଅଣ୍ଡାଳ ଯାଉ ଯାଉ ଶଙ୍ଖ ଯୋଗୁ ନୂଆ ଖୋଳଇଯାଇଥିବା ଗୋଟିଏ କୂଅ ଭିତରେ ସେ ଗଳିପଡ଼ିଲା । ତାକୁ କୂଅରୁ ଉଦ୍ଧାର କରିବାକୁ ପାଖରେ କେହି ନଥିଲେ । ବିଚରା ବୁଢ଼ା ମହାଜନ କୂଅରେ ପଡ଼ି ମରିଗଲା ।

ଅବଶ୍ୟ ଏହାପରେ ଗୃଷୀଟି ଭଲରେ ରହିଲା; ମାତ୍ର ଏଥିପାଇଁ ତାକୁ ଚୋଟିଏ ଆଖି ହରାଇବାକୁ ପଡ଼ିଥିଲା । ଅତିଲୋଭରେ ତନ୍ତ୍ରୀ ମଲା ପରି ମହାଜନର ଖରାପ କରିବାକୁ ଯାଇ ତା'ର ମଧ୍ୟ କିଛି କ୍ଷତି ହୋଇଥିଲା ।



## ବୁଦ୍ଧି ବଡ଼ କି ଧନ ବଡ଼

ଦୁଇ ସାଙ୍ଗଙ୍କୁ ସହରରେ ସମସ୍ତେ ଜାଣନ୍ତି । ଜଣଙ୍କ ନାଁ ଧର୍ମରାମ, ଧର୍ମ-ଭାବରେ ତାର ଖୁବ୍ ନାଁ ଡ଼ାକ । ଆଉ ଜଣଙ୍କ ନାଁ ବୁଦ୍ଧିରାମ । ବୁଦ୍ଧିମାନ ଭାବେ ସେ ମଧ୍ୟ ଖୁବ୍ ଜଣାଶୁଣା । କେହି କାହାକୁ ଊଣା ନୁହନ୍ତି । ଦୁହେଁ ସାଙ୍ଗ ହେଲେବି ଦୁହିଁଙ୍କ ଭିତରେ ସବୁ ବେଳେ ଧନ ବଡ଼ କି ଜ୍ଞାନ ବଡ଼ ଏଇ ବିଷୟରେ ଆଲୋଚନା ହୁଏ । ମାତ୍ର କିଛି ନିଷ୍ପତ୍ତି ହୋଇପାରେନା । (ଏଇ କଥାକୁ ନେଇ ଏବେ ଦୁହିଁଙ୍କ ମଧ୍ୟରେ ଖୁବ୍ କଥା କଟାକଟି ହୋଇଯାଇଛି ।)

ଧର୍ମରାମ କହେ—"ଯେ ଯେତେ ଜ୍ଞାନୀ, ଧାଡୁଆ ବା ଆଉ ଯାହାକିଛି ହେଉ ପଛକେ ଧନୀ ଲୋକ ସବୁ ଲୋକଙ୍କ ଠାରୁ ବଡ଼ ।"

ଏହା ଶୁଣି ବୁଦ୍ଧିରାମ କହେ—"ରାଜାଭଳି ଧନୀ ହୋଇଥିଲେ ବି ଯିଏ ବୋକା ତା ପକ୍ଷେ ଜଗତରେ ବଞ୍ଚିବା-ମରିବା ସମାନ । ଲୋକେ ସିନା କହନ୍ତି, "ବଇଦ ହାକିମ ହାତରୁ, ବଞ୍ଚାଅ ମୋତେ କଲ୍ପତରୁ ।" ମାତ୍ର ମୁଁ ଏଇ କଥା ସହ ଆଉ ଟିକିଏ ଯୋଡ଼ିକହିବି—"ବଇଦ ହାକିମ ମୂର୍ଖ ଠାରୁ, ବଞ୍ଚାଅ ମତେ କଲ୍ପତରୁ ।"

ଦୁହିଁଙ୍କ ଯୁକ୍ତି ତର୍କ ଏତିକରେ ଶେଷ ହେଲା ନାହିଁ । ସହରର କେତେ-ଜଣ ମୁଖିଆ ଓ ବୟୋଜ୍ୟେଷ୍ଠ ଲୋକଙ୍କ ପାଖକୁ ଯାଇ ଦୁହେଁ ଏଇ କଥା ପଚାରିଲେ । ଏହାର ଫଇସଲା କରି ଦେବାକୁ କହିଲେ । ମାତ୍ର ସେମାନେ ମଧ୍ୟ ଏହାର ନିଷ୍ପତ୍ତି କରିପାରିଲେ ନାହିଁ । ଧନୀ ମୁଖିଆ ମାନେ କହିଲେ—"ଧନ ବଡ଼" । ଜ୍ଞାନୀ ଲୋକ କହିଲେ—"ଜ୍ଞାନ ବଡ଼" । ଏଣୁ କଣ କରାଯିବ ? କିଏ ବଡ଼ ଏଇ କଥାଟାର ଗୋଟିଏ ମୀମାଂସା ହୋଇଯିବା ଦରକାର । ଶେଷରେ ଦୁହେଁ ଏ ବିଷୟଟି ମନ୍ତ୍ରୀଙ୍କ ପାଖରେ ପକାଇଲେ । ମାତ୍ର ସେ ମଧ୍ୟ ଏପରି ଜଟିଳ ବିଷୟକୁ ଫଇସଲା କରିପାରିଲେ ନାହିଁ । ତୁମ ଦୁହିଁଙ୍କ ବିଷୟ ମୁଁ ରାଜାଙ୍କ ପାଖକୁ ଲେଖି ଜଣାଇ ଦେଉଛି । ସେ ଏହାର ବିଚାର କରିବେ ।"

କେତେଦିନ ପରେ ରାଜା ଏ ବିଷୟର ବିଚାର ଲାଗି ଦୁଇ ବନ୍ଧୁଙ୍କୁ ଡ଼କାଇ ପଠାଇଲେ । ଦୁଇବନ୍ଧୁ ରାଜାଙ୍କ ଆଗରେ ପୂର୍ବ ପରି ଆପଣାର ଯୁକ୍ତି ଦର୍ଶାଇଲେ । ରାଜା ମନଦେଇ ଦୁଇବନ୍ଧୁଙ୍କ ଯୁକ୍ତିତର୍କ ଶୁଣିଲେ । ତା ପରେ ଗମ୍ଭୀରଭାବେ କିଛି ସମୟ ଭାବି ମନ୍ତ୍ରୀଙ୍କୁ କହିଲେ—"ମନ୍ତ୍ରୀ । ମୋର ଆଦେଶ ଲେଖ । ଏ ଦୁହିଁଙ୍କ ହତ୍ୟା କରାଯିବ । ତୁମେ ଏହାର ବ୍ୟବସ୍ଥା କର ।"

ମନ୍ତ୍ରୀ ରାଜାଙ୍କ ଆଦେଶ ସଭାରେ ପଢି ଶୁଣାଇ ଦେଲେ । ତା ପରେ ଦୁଇବନ୍ଧୁଙ୍କୁ ବନ୍ଦୀଶାଳାକୁ ପଠାଇ ଦିଆଗଲା । ଯୁକ୍ତିତର୍କର ପରିଣାମ ଏପରି ହେବ ବୋଲି ସେମାନେ କଳ୍ପନା କରି ନ ଥିଲେ । ଅନ୍ଧାର କଟିକଟି ବନ୍ଦୀ-ଶାଳାର ଖଟଟି ଉପରେ ବସି ଦୁଇବନ୍ଧୁ ବହୁତ ଦୁଃଖ କଲେ । ସେମାନଙ୍କ କାର୍ଯ୍ୟ ପାଇଁ ଅନୁତାପ କରିବାକୁ ଲାଗିଲେ । ଧନୀରାମ ସକେଇବାକୁ ଲାଗିଲା । ଆପଣା ଭାଗ୍ୟକୁ ନିନ୍ଦାକରି କହିଲା—"ଅସମୟରେ ଯଦି ମୋତେ ମରିବାକୁ ହେବ ମୋର ଏତେ ଧନଥାଇ କି ଲାଭ ? କିଏ ମୋତେ ଏଠାରୁ ଉଦ୍ଧାର କରନ୍ତାକି, ଯିଏ ମୋ ଜୀବନ ରକ୍ଷା କରନ୍ତା ମୁଁ ତାକୁ ମୋ ସଂପତ୍ତିରୁ ଅଧେ ଦେଇ ଦିଅନ୍ତି ।"

ବୁଦ୍ଧିରାମ ମନଦୁଃଖରେ ବସିଥିଲା । ତା' କାନରେ ଧନୀରାମର ଏଇ-କଥା ପଡ଼ିଗଲା । ସେ ଟିକିଏ ଭାବି କହିଲା—"ବନ୍ଧୁ । ତୁମେ କଣ ସତରେ ଏହା କରିବାକୁ ରାଜି ?"

ଧର୍ମାରାମ କହିଲା—"ଏଥିରେ ସନ୍ଦେହ କରିବାର କ'ଣ ଅଛି ? ଧନ ବଡ଼ ନା ଜୀବନ ବଡ଼ ।"

ବୁଦ୍ଧିରାମ କହିଲା—"ଯଦି ତାହା ବୁଝୁଛ ତେବେ ଏଇ କାଗଜରେ ତାହା ଲେଖି ଦସ୍ତଖତ କରିଦିଅ ।" ଏହାକହି ସେ ନିଜ କୋଟ ପକେଟରୁ ଖଣ୍ଡେ କାଗଜ ତା' ଆଡ଼କୁ ବଢ଼ାଇ ଦେଲା । ଧର୍ମାରାମ ସେଇ କଥା ଲେଖି କାଗଜଟିକୁ ବୁଦ୍ଧିରାମ ହାତକୁ ବଢ଼ାଇଦେଲା । ବୁଦ୍ଧିରାମ ସେଇ କାଗଜଖଣ୍ଡିକ ଅତି ଯତ୍ନରେ ନିଜ ପକେଟରେ ରଖିଲା ।

ତା ପରଦିନ ବୁଦ୍ଧିରାମ ଜଗୁଆଳୀକୁ କହିଲା—"ଆରେ ଭାଇ, ଆମକୁ ଦୟାକରି ଥରେ ମନ୍ତ୍ରୀଙ୍କ ପାଖକୁ ନେଇଚାଲ । ଆମର ତାଙ୍କୁ ଗୋଟିଏ ଜରୁରୀ ବିଷୟ କହିବାକୁ ଅଛି ।"

ଜଗୁଆଳୀ ଯାଇ ମନ୍ତ୍ରୀଙ୍କୁ ଏହା ଜଣାଇଲା । ଅନୁମତି କ୍ରମେ ଦୁଇବନ୍ଦୀଙ୍କୁ ମନ୍ତ୍ରୀଙ୍କ ନିକଟକୁ ଅଣାଗଲା । ବୁଦ୍ଧିରାମ ଅନୁନୟ କରି ମନ୍ତ୍ରୀଙ୍କୁ କହିଲା—"ହଜୁର, ଆମର ବିନୀତ ପ୍ରାର୍ଥନା ଆଜ ସନ୍ଧ୍ୟାରେ ଆପଣ ଆମ ଦୁହିଁଙ୍କ ମୁଣ୍ଡ କାଟିବା ବ୍ୟବସ୍ଥା କରନ୍ତୁ । ଦୟାକରି ଆମର ଏଇ ଶେଷଇଚ୍ଛା ପୂରଣ କରନ୍ତୁ । ଆମେ ଆଉ ବଞ୍ଚି ରହିବୁ ନାହିଁ ।"

ମନ୍ତ୍ରୀ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ନିଜ କାନକୁ ସେ ବିଶ୍ୱାସ କରିପାରିଲେ ନାହିଁ । ଏ କଥା କ'ଣ ସମ୍ଭବ ? ଲୋକେ ତାଙ୍କୁ ନାନା ବିଷୟରେ ଅନୁରୋଧ କରିଛନ୍ତି, ମାତ୍ର ଏ ଭଳି ଅନୁରୋଧ ସେ ପୂର୍ବରୁ କାହାଠାରୁ ଶୁଣି ନାହାନ୍ତି । ସେ ପଚାରିଲେ—"ଶୀଘ୍ର ମୁଣ୍ଡକାଟ କରାଇବା ଲାଗି ତୁମର ଏତେ ଆଗ୍ରହ କାହିଁକି ମୁଁ ବୁଝି ପାରୁନାହିଁ । ଜଗତରେ କିଏ କିଏ କେତେ-ବେଳେ ମରିବାକୁ ଚାହେଁ ? ବଞ୍ଚିବାକୁ ତ ମଣିଷର ସବୁବେଳେ ଲୋଭ, ସେଥି-ପାଇଁ ସେ ସବୁକିଛି ଦେଇ ଦେବାକୁ ବି ପଛାଏନାହିଁ । ମାତ୍ର ମରିବାକୁ ତୁମର ଏତେ ଆଗ୍ରହ ହେଲା କିପରି ?"

ବୁଦ୍ଧିରାମ କହିଲା—"ହଜୁର ! ମଣିଷ ଆଜିନା କାଲି ନିଶ୍ଚୟ ମରିବ ।

କେଉଁ ମଣିଷ ବା ଅମର ? ସେମିତି ଆମେ ଦୁଇଟା ଲୋକ ଆଜି ନହେଲେ କାଲି ମରିବୁ । ଏଥିରେ ବା କ'ଣ ଯାଏ, ଆସେ ? ଆମେ ଦୁହେଁ ତ କୌଣସି ଅପରାଧ କରିନାହୁଁ । ଏଣୁ ଆମ ପିଣ୍ଡରୁ ପ୍ରାଣ ବାହାରି ଯିବା ମାତ୍ରେ ଦେବଦୂତ ମାନେ ସିଧା ସ୍ୱର୍ଗକୁ ନେଇଯିବେ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।" ଏହା କହି ସେ ଉପରକୁ ହାତଯୋଡ଼ି ଆଖିମୁଦି ମୁଣ୍ଡ ହଲାଇବାକୁ ଲାଗିଲା ।

ମନ୍ତ୍ରୀ ଏହା ଦେଖି ଚମକିତ ହୋଇ ପଡ଼ିଲେ । ତାଙ୍କର ଧାରଣା ହେଲା, ବାସ୍ତବିକ ଏ ଭଳି ନିରୀହ ଓ ଅପରାଧ କରିନଥିବା ଦୁଇଟା ଲୋକଙ୍କୁ ହତ୍ୟା କରାଇବା ଅତି ଅନ୍ୟାୟ ଓ ଅଧର୍ମ କାର୍ଯ୍ୟ । ଏଥିରେ ଜଡିତ ହେଲେ ତାଙ୍କର ବି ଅଧର୍ମ ହେବ । ସେ ଦୁଇ ବନ୍ଦୀଙ୍କୁ ବନ୍ଦୀଶାଳାକୁ ପଠାଇଦେଲେ । ରାଜାଙ୍କୁ ଲେଖି ଜଣାଇ ଦେଲେ—"ଧର୍ମାବତାର ! ଦୁଇଟା ନିର୍ଦ୍ଦୋଷ ମଣିଷକୁ ହତ୍ୟା କରାଇବା ମୋ ପକ୍ଷେ ସମ୍ଭବ ନୁହେଁ । ମୁଁ ଆପଣଙ୍କ ଏଇ ଆଦେଶ ପାଳନ କରିପାରିବି ନାହିଁ । ମୋର ବିବେକ ଏହାକୁ ସମର୍ଥନ କରୁପାରୁନି ।"

ମନ୍ତ୍ରୀଙ୍କର ଏଭଳି କଥା ରାଜାଙ୍କୁ ବିଚିତ୍ର ମନେ ହେଲା । ତାଙ୍କ ଆଦେଶ ସେ ସବୁବେଳେ ପାଳି ଆସୁଛନ୍ତି । କେବେ ଅମାନ୍ୟ କରିବାକୁ ସାହାସ କରିନାହାନ୍ତି । ନିଶ୍ଚୟ ପରିସ୍ଥିତିର ପଡ଼ି ସେ ଏପରି କରିବାକୁ ବାଧ ହୋଇଛନ୍ତି । ରାଜା ଏ ବିଷୟ ଅନୁସନ୍ଧାନ କଲେ । ଦୁଇ ବନ୍ଦୀଙ୍କୁ ରାଜାଙ୍କ ନିକଟକୁ ଅଣାଗଲା । ରାଜା ପଚାରିବାରୁ ବୁଦ୍ଧିରାମ ଯାହାସବୁ ଘଟିଥିଲା, ତାହା ରାଜାଙ୍କୁ ଜଣାଇଲା । ଆପଣା ବନ୍ଧୁର ହାତଲେଖା କାଗଜଟି ତାଙ୍କୁ ଦେଖାଇଲା ରାଜା ତାହା ପଢିଲେ—"ଯିଏ ମୋ ଜୀବନ ରକ୍ଷା କରିବ ମୁଁ ତାକୁ ମୋ ସମ୍ପତ୍ତିରୁ ଅଧେ ଦେବି ।" ତାପରେ ଦୁହେଁ ଯାଇ ମନ୍ତ୍ରୀଙ୍କୁ କଣ କହିଥିଲେ, ତାହା ମଧ୍ୟ ଶୁଣିଲେ ।

ରାଜା ଦେଖିଲେ ଏଇ ବୁଦ୍ଧିମାନ ଲୋକଟା ଆପଣା ବୁଦ୍ଧିରେ ତାଙ୍କ ମନ୍ତ୍ରୀଙ୍କୁ ବୋକା ବନେଇ ଦେଇଛି । ସେ ତା ବୁଦ୍ଧିକୁ ପ୍ରଶଂସା ନକରି ରହିପାରିଲେ ନାହିଁ । ଦୁହିଁଙ୍କୁ ସେ ଖଲାସ କରି ଦେବାକୁ ଆଦେଶ ଦେଇ କହିଲେ, "ତୁମେ ଦୁହେଁ ଏବେ ନିଜ ଘରକୁ ଫେରିଯାଅ ଓ ପୂର୍ବପରି ବନ୍ଧୁଭାବରେ ଚଳ । କିଏ ବଡ଼ ମୋର ଆଉ କହିବା ଦରକାର ନାହିଁ । ତାହା ତୁମେ

ବେଶ୍ ବୁଝିପାରିଥିବ । ଜୀବନ ରକ୍ଷାକଲେ ଆପଣା ସମ୍ପତ୍ତିରୁ ଅଧେ ଦେବାକୁ ରାଜିହୋଇ ଧର୍ମୀ ବ୍ୟକ୍ତିଟି ଧନଠାରୁ ବୁଦ୍ଧି ବଡ଼ ବୋଲି ପୂର୍ବରୁ ମାନିନେଇଛୁ । ବୁଦ୍ଧିମାନ ଲୋକଟି କେବଳ ଆପଣାର ଓ ଧର୍ମୀ ବନ୍ଧୁର ଜୀବନ ରକ୍ଷା କରିନାହିଁ, ନିଜପାଇଁ ସମ୍ପତ୍ତିର ମଧ୍ୟ ବ୍ୟବସ୍ଥା କରାଇ ପାରିଛୁ । ହଉ ଯାଅ, ଭଗବାନଙ୍କ ପ୍ରତି ଧ୍ୟାନରଖି ଚାଲ ।”

ଦୁଇବନ୍ଧୁ ରାଜାଙ୍କୁ ନମସ୍କାର ଜଣାଇଁ ବିଦାୟ ନେଲେ । ଧର୍ମୀରାମ ଆପଣା ସମ୍ପତ୍ତିରୁ ଅଧେ ତା ସାଙ୍ଗକୁ ଦେଲା । ଦୁହେଁ ସୁଖରେ ଚାଲିଲେ ।

( ପଞ୍ଜାବ )



# ଯେ ପାଞ୍ଚେ ପରର ମନ୍ଦ

ଗାଁରେ ସେ ଥିଲା ସବୁଠାରୁ ଗରିବ । କୃଷିକରି କଷ୍ଟ ମଷ୍ଟେ ଚଳେ । ସେ ବର୍ଷ ଦୁର୍ଭିକ୍ଷ ପଡ଼ିବାରୁ ତା’ର ଅବସ୍ଥା କହିଲେ ନସରେ । ଖାଇବାକୁ ମଧ୍ୟ ଯୁଟିଲା ନାହିଁ । ଫଳରେ ଦିନେ ସ୍ତ୍ରୀକୁ ନେଇ ସେ ଗାଁ ଛାଡ଼ି ସହରକୁ ବାହାରିଲା । ବାଟରେ ତାର ପୁଅଟିଏ ଜନ୍ମ ହେଲା । ପାହା ହେଉ ସ୍ତ୍ରୀ ଓ ପିଲାକୁ ନେଇ ସେ କୌଣସିମତେ ଆସି ସହରରେ ପହଞ୍ଚିଲା । ଯୋଗକୁ ସେଠି ଜଣେ ଲୋକ ଘରେ ତାକୁ କାମ ମିଳିଗଲା । ଭଲ କାମ କରିବାରୁ ବେଶ୍ ଦି’ପଇସା ମଧ୍ୟ ରୋଜଗାର ହେଲା । କେତେ ଦିନ ପରେ ସେ ସ୍ଥିର କଲା, ଗାଁକୁ ଫେରିଯିବ ।

ଯାହା ସଞ୍ଚିଥିଲା ସେତକ ନେଇ ସେ ଦିନେ ଗାଁରେ ଯାଇ ପହଞ୍ଚିଲା । ସେହି ପଇସାରେ ସେ ଦୁଇମାଣ ଜମି କିଣିଲା । ସେ ବର୍ଷ ଭଲ ବର୍ଷା ହେବାରୁ ତାର ଫସଲ ଭଲ ହେଲା । କ୍ରମେ ତାର ଅବସ୍ଥା ପୂର୍ବ ଅପେକ୍ଷା ସୁଧୁରି ଗଲା ।

ସେ ହେଲା ଜଣେ ବଡ଼ ଋଷୀ । ଦିନେ ସେ ଭାବିଲା, ତା' ପୁଅଟି ଲକ୍ଷଣବନ୍ତ । ସେ ଜନ୍ମ ହେବା ପରଠୁଁ ତାର ସବୁଦିଗରୁ ଉନ୍ନତି ହୋଇଛି । ଏଣୁ ତାର ପୁଅକୁ ଜଣେ ଧନୀଲୋକ ଘରେ ବାହା କରିଦେବା ଉଚିତ୍ ହେବ । ତା'ହେଲେ ତାର ଆହୁରି ଉନ୍ନତି ହେବ । ସେ ଶୁଣିଥିଲା, ତାଙ୍କ ଗାଁ ଠାରୁ ଅଳ୍ପ ଦୂରରେ ତାଙ୍କ ଜାତିର ଜଣେ ଜମିଦାର ଅଛନ୍ତି । ଋଷୀ ଦିନେ ପୁଅକୁ ନେଇ ଚଗ୍ଗରି ପିନ୍ଧିକରି ଯାଇ ତାଙ୍କ ପାଖେ ପହଞ୍ଚିଲା । ତା ପୁଅକୁ ଦେଖି ଜମିଦାରଙ୍କ ମନ ମାନିଗଲା । ସେ ତାହା ସଙ୍ଗେ ନିଜ ଝିଅକୁ ବାହା ଦେବାକୁ ରାଜି ହୋଇଗଲେ ।

ବାହାଘର ନିର୍ବନ୍ଧ ବି ହୋଇଗଲା । ବଡ଼ଋଷୀ ହୋଇ ପାରିଥିବା ଲୋକଟି ବେଶ୍ ଭୋଜିଟିଏ ଦେଲା । ମାତ୍ର ବିଚରା ଭାଗ୍ୟରେ ପୁଅର ବାହାଘର ଦେଖିବା ଯୋଗ ନଥିଲା । ପୁଅଟି ବଡ ହୋଇ ବାହା ନହେଉଣୁ ସେ ସବୁଦିନ ପାଇଁ ଆଖି ବୁଜିଲା । ଏ ଖବର ଜମିଦାର ଶୁଣିଲେ । ସେ କହିଲେ—"ଏଥର ଜୁଆଁଇଁ ପୁଅ ଆସି ଆମ ଘରେ ରହୁ ।"

ଜମିଦାରଙ୍କ ସ୍ତ୍ରୀ କହିଲେ—"ନା, ଏଇଟା ତ ବିଧି ନୁହେଁ । ଏକଥା ଆମର ଚଳେନା । ପିଲାଟି ତ ବଡ଼ ହୋଇଗଲାଣି; ତା ସଙ୍ଗେ ଝିଅର ବାହା-ଘରଟା କରାଇ ଦେଲେ ତ କାମ ତୁଟି ଯାଆନ୍ତା । ତାହେଲେ ସେ ଦୁହେଁ ତାଙ୍କ ସଂସାର କରନ୍ତେ । ଆମ ଝିଅଟି ସବୁଥିରେ ଯୋଗ୍ୟ । ପୁରୁଷ ପୁଅର ସ୍ତ୍ରୀ ଠାରୁ ବଳି ଆଉ ଭଲ ବନ୍ଧୁ କିଏ ବା' ଅଛି ?"

ଋଷୀ ପୁଅ ପାଖକୁ ବାରିକ ହାତରେ ଖବର ପଠାଗଲା—'ଆମ ଘରକୁ ଆସ, ଏଇଠି ବାହାଘର ହେବ ।'

ଋଷୀପୁଅର ମାଆ ଏକଥା ଶୁଣି ଖୁସି ହେଲା । ତା'ପୁଅକୁ ଭଲ ପୋଷାକ ପତ୍ର ପିନ୍ଧାଇ ବର ବେଶରେ ସଜେଇ ଦେଲା । ଅନୁକୂଳର ସାମଗ୍ରୀ ସବୁ ଯୋଗାଡ଼ କଲା । ତାକୁ ଘୋଡ଼ା ଉପରେ ବସାଇ ବାହା ହେବାକୁ ପଠାଇ ଦେଲା ।

ଚଷାପୁଅ ଯାଉଁ ଯାଉଁ ବାଟରେ ଗୋଟାଏ ବଣ ପଡ଼ିଲା, ସେଠି ସେ

ବିଶ୍ରାମ ନେଲା । ସେତିକ ବେଳେ ସେ ଦେଖିଲା, ଗୋଟାଏ ଗଛମୂଳେ ଗୋଟାଏ ଅଜଗର ସାପ ଓ ନେଉଳ ଭିତରେ ଲଢ଼େଇ ଚାଲିଛି । ଏଇ ଲଢ଼େଇରେ ବିଚରା ନେଉଳର ଅବସ୍ଥା ହୋଇ ପଡ଼ିଛି ଶୋଚନୀୟ । ଏତିକି-ବେଳେ ଋଷୀପୁଅର ଗୋଟାଏ କଥା ମନେ ପଡ଼ିଲା; ତା' ବାପା ଉପଦେଶ-ଦେଇ କହୁଥିଲେ, ଯେତେବେଳେ ଦୁଇଜଣଙ୍କ ଭିତରେ ଲଢ଼େଇ ଲାଗିଥିବ, ସେତେବେଳେ ଦୁହିଁଙ୍କ ହିତପାଇଁ ସେମାନଙ୍କୁ ଅଲଗା କରିଦେବ ।" ଏଣୁ ଋଷୀପୁଅ ସାପ ଓ ନେଉଳକୁ ଅଲଗା କରାଇ ଦେବାକୁ ଚେଷ୍ଟାକଲା । ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । ବାରମ୍ବାର ସେ ନେଉଳକୁ ସାପଠାରୁ ଯେମିତି ଅଲଗା କରିଦିଏ, ନେଉଳଟା ସଙ୍ଗେ ସଙ୍ଗେ ସାପ ଉପରକୁ ପୁଣି କୁଦାମାରେ । ଶେଷରେ ଋଷୀପୁଅ ବାଧ୍ୟ ହୋଇ ଆପଣା ଖଣ୍ଡାରେ ନେଉଳକୁ ହାଣି ଦେଲା । ତା'ପରେ ସେ ନିଜ ବାଟରେ ଆଗକୁ ଚାଲିଲା ।

କିଛି ବାଟ ଗଲାପରେ ସେ ପଛକୁ ଚାହିଁ ଦେଖିଲା, ସାପଟା ତା' ପଛେ ପଛେ ଧଣ୍ଡା ଟେକି ଗୋଡ଼େଇ ଆସୁଛି । ଋଷୀପୁଅ ଟିକିଏ ରହିଯାଇ କହିଲା - "କିରେ ସାପ, ମୁଁ ତୋତେ ନେଉଳ କବଳରୁ ରକ୍ଷା କଲି । ଏଥିପାଇଁ ତୁ କୃତଜ୍ଞ ହେବା କଥା, ତା ନହୋଇ ତୁ ପୁଣି ମୋତେ ଗୋଡ଼ାଉଛୁ ?"

ସାପ କହିଲା—"ସତ କଥା, ତୁ ମତେ ରକ୍ଷା କରିଛୁ । ଆଉ ସେଥିପାଇଁ ମୁଁ ତୋତେ ନିଶ୍ଚୟ କାମୁଡ଼ି ଗିଳିବ ।"

ଋଷୀପୁଅ କହିଲା—"ବାଃ ବଡ଼ ବିଚିତ୍ର କଥା ତ ! ଜଣଙ୍କର ଭଲ କଲେ ତାଠାରୁ ଉପକାର ପିନା ଆଶା କରିବା କଥା; ମାତ୍ର ତୁ ତ ଓଲଟା କାମ କରିବାକୁ ବସିଛୁ ?"

ସାପ କହିଲା—ହଁ; ଆମ ଅଞ୍ଚଳର ଏହିପରି ଚଳେ । ଯିଏ ଭଲ କରିବ ଆମେ ତା'ର ଖରାପ କରୁ ।"

ସାପ ଆଗରେ ଋଷୀପୁଅ ଅନେକ ଯୁକ୍ତି କଲା, ମାତ୍ର ସାପ ସେ ସବୁ ଶୁଣିଲା ନାହିଁ । ଶେଷରେ ଋଷୀପୁଅ କହିଲା—"ଆଚ୍ଛା, ସାପପୁଅ ତା' ହେଲେ

ମୋତେ ଆଠଦିନ ସମୟ ଦେ । ମୁଁ ମୋ କାମ ଶେଷ କରି ଏଇ ବାଟେ ଫେରିବି । ସେତିକି ବେଳେ ତୁ ମୋତେ ମାରିବୁ ।"

ସାପ ଏଥିରେ ରାଜିହେଲା ।

ବୃଷୀପୁଅ ଯାଇ ତା ଶ୍ୱଶୁର ଘରେ ପହଞ୍ଚିଲା । ଶାଶୂ ଶ୍ୱଶୁର ତାକୁ ଦେଖି ଖୁବ୍ ଖୁସିହେଲେ । ମାତ୍ର ବୃଷୀପୁଅ ମନରୁ ସବୁ ସରସତା ମରି ଯାଇଥାଏ । ସବୁବେଳେ ମୁହଁ ଶୁଖେଇ ବସେ । କାହାକୁ କିଛି କଥା କହେ ନାହିଁ ।

ଏମିତି ଛଅଦିନ କଟିଲା । ଜୁଆଁଇ ପୁଅଟା ସବୁବେଳେ ମୁହଁ ଭାରି କରି ରହିଛି ଦେଖି ଶ୍ୱଶୁର ଶାଶୂଙ୍କ ମନରେ ନାନା ଭାବିଲେଣି । ସେମାନେ ଏହାର କିଛି କୂଳ କିନାରା ପାଇଲେ ନାହିଁ । ସପ୍ତମଦିନ ସେମାନେ ଝିଅକୁ କହିଲେ—"ଆଲୋ ଝିଅ ! ଜୁଆଇଁଙ୍କି ପଚାରି ବୁଝ୍, ତାଙ୍କର କ'ଣ ହୋଇଛି ।"

ଲାଜ ଲାଗୁଥିଲେ ବି ଝିଅ ବର ପାଖକୁ ଯାଇ ପଚାରିଲା—"ହଇଓ ! ତମେ କ'ଣ ମୋ ଉପରେ ରାଗିଛ ?"

ତେବେ ବି ବୃଷୀପୁଅ ଠାରୁ କିଛି ଉତ୍ତର ମିଳିଲା ନାହିଁ । ଅଷ୍ଟମ ଦିନ ଟୋକା ଝିଅକୁ କହିଲା—"ଏଥର ଚାଲ, ଆମେ ଆମ ଘରକୁ ଯିବା ।"

ଝିଅ ସେଇ କଥା ତା'ବୋଉଙ୍କୁ କହିଲା । ବାପା ବୋଉ ଝିଅ ଜୁଆଇଁଙ୍କୁ ବିଦା କରିବାକୁ ଯୋଗାଡ଼ କଲେ । ଝିଅକୁ ନାନା ଯାନ ଯଉତୁକ ଦେଲେ । ଶଗଡ଼ ଗାଡ଼ିରେ ଦୁହିଁଙ୍କ ବସାଇ ବିଧି ଅନୁସାରେ ସେମାନଙ୍କୁ ବିଦାୟ ଦେଲେ ।

କେତେକ ବାଟ ଗଲାପରେ ବୃଷୀପୁଅ ତା' ସ୍ତ୍ରୀକୁ କହିଲା— "ମୁଁ ତ ବାଟରେ ନିଶ୍ଚୟ ମରିବି, ସାପଟିଏ ମୋତେ ଖାଇବ; ତୁମେ ଏଥର ତୁମ ଲୋକଙ୍କୁ ନେଇ ତୁମ ଘରକୁ ଫେରିଯାଅ ।"

ସ୍ତ୍ରୀ କହିଲା—"ତୁମେ ଯଦି ମରିବ, ମୁଁ ଆଉ ବଞ୍ଚି ରହିବି କାହିଁକି ? ମୁଁ ବି ତୁମ ସଙ୍ଗେ ମରିବି । ସ୍ୱାମୀକୁ ଛାଡି ସ୍ତ୍ରୀର ବଞ୍ଚିବାରେ କି ଲାଭ ?"

ଏହା ଶୁଣି ସ୍ୱାମୀ ତାକୁ ସାଙ୍ଗରେ ନେଲା । ଦୁହେଁ ଆସି ସାପ ରହୁଥିବା ଜାଗାରେ ପହଞ୍ଚିଲେ । ସେଇଠି ସ୍ୱାମୀ ଶଗଡ଼ରୁ ଓହ୍ଲାଇ ଠିଆ ହେଲା । ତା'ପରେ ଡାକିଲା—"ହେ ସାପ ! କଥା ରକ୍ଷାକର ମୁଁ ଆସିଲି, ଏବେ ମୋତେ ଗିଳିବାକୁ ଚାହୁଁଛ ଆସ ।"

ସତ ର ସାପଟାଏ ଆସି ତା' ସ୍ୱାମୀଙ୍କୁ ଗିଳିବ ଶୁଣି ସ୍ତ୍ରୀର ଛାତି ଥର-ଉଠିଲା । ତଥାପି ସେ ସଙ୍ଗେ ସଙ୍ଗେ ଶଗଡ଼ରୁ ଓହ୍ଲାଇ ସ୍ୱାମୀ ପାଖରେ ଆସି ଠିଆ ହୋଇଗଲା ।

କିଛି ସମୟ ପରେ ସାପର ଭୟଙ୍କର ଗର୍ଜନ ଶୁଭିଲା । ଗୋଟାଏ ବଡ଼ ଗାତ ଭିତରୁ ସେଇ ବିରାଟ ସାପଟା ବାହାରିଲା । ସ୍ୱାମୀଙ୍କୁ ଗିଳିବାକୁ ସେ ଆଗେଇ ଆସୁଥାଏ । ଏହା ଦେଖି ସ୍ତ୍ରୀ ସାପକୁ କହିଲା — "ତୁମେ କାହିଁକି ମୋ ସ୍ୱାମୀଙ୍କୁ ଗିଳିବାକୁ ଯାଉଛ ?"

ତା'ର ସ୍ୱାମୀ କିପରି ନେଉଳକୁ ମାରି ତାକୁ ଉଦ୍ଧାର କରିଥିଲା, ସାପ ସେ ବିଷୟ କହିସାରି କହିଲା—'ଭଲ କାମ କରିଥିବା ଲୋକର ଖରାପ କରିବା ହେଉଛି ଆମ ରାଜ୍ୟର ରୀତି ।'

ସ୍ତ୍ରୀ ସାପକୁ ବହୁତ ବୁଝାଇଲା, କେତେ ଅନୁନୟ କଲା; ମାତ୍ର ସାପଟା କିଛି ମାନିଲା ନାହିଁ । ଶେଷରେ ସ୍ତ୍ରୀ କହିଲା— "ତୁମ ରାଜ୍ୟର ବ୍ୟବସ୍ଥାତ ଅଦ୍ଭୁତ, ବର୍ବର ମଧ୍ୟ ବଟେ ! ତେବେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଏପରି ଓଲଟା କଥା ଏଠି ଚଳିଲା କିପରି ?"

ସାପ ଦୂରକୁ ଇଂଗିତ କରି କହିଲା—"ସେଇ ଯେଉଁ ପାଞ୍ଚଟି ଡେଙ୍ଗାଗଛ ଦେଖୁଛ, ସେଠାକୁ ଯାଇ ସେଇ ଗଛମାନଙ୍କୁ ପଚାର ।"

ସ୍ତ୍ରୀ ସେଇ ଗଛମାନଙ୍କ ପାଖକୁ ଯାଇ ମଝି ଗଛଟିକୁ ସେଇ ପ୍ରଶ୍ନ ପଚାରିଲା ।

ଗଛ କହିଲା—"ଦେଖ, ଆମେ ହେଉଛୁ ପାଞ୍ଚଟି ଆମ୍ବଗଛ । ପଥିକଲେ

ଆମେ ଏଠି ଛଅଟି ଥିଲୁ । ଷଷ୍ଠ ଗଛଟି ଆଉ ନାହିଁ । ସେଇ ଗଛଟି ଥିଲା ଆମ ଭିତରେ ବଡ଼ । ତା' ଗଣ୍ଡିରେ ଥିଲା ଗୋଟାଏ କୋରଡ଼ । ବହୁଦିନ ପୂର୍ବ ଚୋରଟିଏ ଜଣଙ୍କ ଘରୁ ଚୋରିକଲା । ଲୋକେ ତାକୁ ଧରିବାକୁ ଗୋଡ଼େଇଲେ । ସେ ଧାଇଁ ଧାଇଁ ଆସି ଏଇଠି ପହଞ୍ଚିଲା । ତୋଫା ଚନ୍ଦ୍ର କିରଣ ପଡ଼ୁଥାଏ । ସେଇ ଆଲୁଅରେ ସେ ଫମ୍ପା ନିମ୍ବ ଗଛ କୋରଡ଼ଟିକୁ ଦେଖି ତା' ଭିତରେ ଯାଇ ଲୁଚିଗଲା । ତା' ପଛରେ ଧାଉଁଥିବା ଲୋକେ ଗଛପାଖକୁ ଆସିବାରୁ ସେ ଗଛକୁ କହିଲା—"ହେ ଗଛ ! ତୁ ମୋତେ ରକ୍ଷାକର, ରକ୍ଷାକର ।"

ଗଛ ତା' କୋରଡ଼ ମୁହଁକୁ ବନ୍ଦକରି ତାକୁ ବଞ୍ଚାଇ ଦେଲା । ଧାଉଁଥିବା ଲୋକେ ସେଠାକୁ ଆସି ତାକୁ ଖୋଜି ନପାଇ ଫେରିଗଲେ । ତା'ପରେ କୋରଡ଼ ମୁହଁ ଖୋଲିଗଲା । ଚୋର ସେଠାରୁ ବାହାରି ତା' ବାଟରେ ଚାଲି-ଗଲା ।

ହଁ, ଏକଥା ଜାଣିଥିବ, ନିମ୍ବଗଛର ବୟସ ପରିଶରୁ ବଳିଗଲେ ତାହା ଚନ୍ଦନ ଗଛ ହୋଇଯାଏ । ସେଇ ଗଛଟା ଥିଲା ସେମିତି । ଚୋର ସେଥିରୁ ବାହାରି ଗଲାପରେ ତା' ଦେହରେ ସେଇ ଚନ୍ଦନ ବାସନା ଲାଗି ରହିଲା । ସେ ଯାଇଁ ସହରରେ ପହଞ୍ଚିଲା । ରାସ୍ତାରେ ଯାଉଁ ଯାଉଁ ଜଣେ ଅଚିହ୍ନା ଲୋକ ତାକୁ ଅଟକାଇ ପଚାରିଲା—"ହଉଓ ଭାଇ ! ତୁମ ଦେହରୁ ଚନ୍ଦନ ବାସନା ଆସୁଛି କିପରି ?"

ଚୋର କହିଲା—"ମୁଁ ତ ଦେହରେ ଚନ୍ଦନ ଲଗାଇ ନାହିଁ ?" ଅଚିହ୍ନା ଲୋକଟି କହିଲା—"ତୁମେ ମିଛ କହୁଛ, ତୁମ ଦେହର ବାସନା ହୁଏତ ତୁମେ ବାରି ପାରୁନାହଁ । ମାତ୍ର ମୁଁ ଠିକ୍ ବାରୁ ପାରୁଛି । ତୁମ ପାଖରେ ଯଦି ଚନ୍ଦନ ଅର୍କ ଅଛି, ମୋତେ ଦିଅ । ଏଥିପାଇଁ ଯାହା ପଇସା ମାଗିବ ମୁଁ ତୁମକୁ ଦେବାକୁ ରାଜି ।"

ଚୋର କହିଲା—"ଠାକୁରଙ୍କ ରାଣ ପକାଇ କହୁଛି ମୋ ପାଖେ କିଛି ଅର୍କ ନାହିଁ କି ମୁଁ ଦେହରେ ଚନ୍ଦନ ମଧ୍ୟ ଲଗାଇ ନାହିଁ ।"

ଲୋକଟି ସେ ରାଜ୍ୟର ରାଜାଙ୍କ ପାଖକୁ ଯାଇ କହିଲା — "ହଜୁର !

ରାସ୍ତାରେ ଜଣେ ଲୋକକୁ ଦେଖିଲି, ତା ଦେହରୁ ଖାଲି ଚନ୍ଦନ ବାସନା ବାହାରୁଛି । ତାକୁ ଆପଣ ଡ଼କାଇ ଏକଥା ପଚାରନ୍ତୁ ।"

ରାଜା ସେଇ ଲୋକକୁ ଧରି ଆଣିବା ପାଇଁ ପାଇକ ପଠାଇଲେ । ଚୋରକୁ ରାଜାଙ୍କ ନିକଟକୁ ଅଣାଗଲା । ରାଜା ତାକୁ ପଚାରିଲେ — "ହଇରେ, ତୋ ଦେହରୁ ଚନ୍ଦନ ବାସନା ଆସୁଛି କିପରି ? ଚନ୍ଦନ ଅର୍କ ରଖିଚୁତ ବାହାର କର ।" ଚୋର କହିଲା—"ହଜୁର ! ଦେଖନ୍ତୁ ମୋ ପାଖେ ସେ ସବୁ ଜିନିଷ କିଛି ନାହିଁ ।" ରାଜା କହିଲେ—"ଭଲ ଗନ୍ଧ ଅଛି ତ ମୋତେ ତାହା ଦେଇ ଦେ, ନୋହିଲେ ତୋତେ ମାରି ଦିଆଯିବ ।"

ଚୋର ଡ଼ରିଯାଇ କହିଲା — "ଆଜ୍ଞା ମୋତେ ମାରନ୍ତୁ ନାହିଁ । ମୁଁ ଆପଣଙ୍କୁ ସବୁ କଥା କହୁଛି ।" କିପରି ନିମ୍ବଗଛ କୋରଡ଼ରେ ରହି ସେଥିରୁ ବାହାରି ଆସିବା ପରଠାରୁ ତା ଦେହରେ ଚନ୍ଦନ ବାସନା ଲାଗି ରହିଛି, ସେହି କଥା ସେ ରାଜାଙ୍କ ଆଗରେ ବର୍ଣ୍ଣନା କଲା । ରାଜା କହିଲେ — "ତା' ହେଲେ ଚାଲ ସେହି ଗଛ ପାଖକୁ । ମୁଁ ସେହି ଚନ୍ଦନ ବାସନା ଥିବା ଗଛ ଦେଖିବାକୁ ଚାହେଁ ।"

ରାଜା ଚୋର ସହିତ ଆପଣା ଲୋକବାକଙ୍କୁ ନେଇ ସେଇ ଗଛ ପାଖେ ପହଞ୍ଚିଲେ । ନିଜ ଲୋକଙ୍କୁ ଆଦେଶ ଦେଲେ—"ଏଇ ଗଛକୁ ମୂଳରୁ ହାଣି ଉଠାଇକରି ନେଇ ଆସ ।"

ନିମ୍ବଗଛ ରାଜାଙ୍କ ଆଦେଶ ଶୁଣି କାନ୍ଦିଲା । ମନକୁ ମନ କହିଲା— "ହାୟରେ, ଜଣେ ଲୋକକୁ ବଞ୍ଚାଇଲି ବୋଲି ମୁଁ ଦଣ୍ଡ ପାଇବି ! ଅନ୍ୟର ଭଲ କଲି ବୋଲି ସିନା ମୋର ଦୁର୍ଦ୍ଦଶା !"

ସ୍ତ୍ରୀ ଏହି କଥା ଶୁଣି ସ୍ୱାମୀ ପାଖକୁ ଫେରିଆସିଲା । ସାପ କହିଲା — "ନିମ୍ବଗଛ କଥା ଶୁଣିଲ ତ ? ଆମେ ରାଜାଙ୍କଠାରୁ ଏଇଆ ଶିଖିଛୁ । ଏଇଥି ପାଇଁ କିଏ ଭଲ କଲେ ଆମେ ତାର ଅନିଷ୍ଟ କରୁ । ଏଥର ବୁଝିଲ ?"

ସ୍ତ୍ରୀ ମୁଣ୍ଡ ହଲାଇ କହିଲା—"ହଁ କଥାଟା ଏକ ପ୍ରକାର ଠିକ୍ ।" ଏହା

ପରେ ସାପ ତା ସ୍ୱାମୀକୁ ଗିଳିବା ଲାଗି ଆଗେଇ ଆସିଲା । ଏହା ଦେଖି ସ୍ତ୍ରୀ କହିଲା, 'ତୁମେ ମୋ ସ୍ୱାମୀଙ୍କୁ ଖାଇବାକୁ ଚାହୁଁଛ ? ଆଗେ ମୋତେ ଖାଅ ।'

ସାପ କହିଲା ତା କେମିତି ହେବ ? ତୁମେ ତ ମୋର କିଛି ଉପକାର କରିନାହଁ; ମୁଁ କାହିଁକି ତୁମକୁ ଖାଇବି ?

ସ୍ତ୍ରୀ ପଚାରିଲା—"ତୁମେ ମୋ ସ୍ୱାମୀଙ୍କୁ ଖାଇଦେଲେ ମୁଁ ଚଳିବି କିପରି ? ତୁମେତ କହୁଛ, ମୁଁ ତୁମପାଇଁ କିଛି ଭଲ କାମ କରିନି । ତାହେଲେ ତୁମେ କାହିଁକି ମୋ ସ୍ୱାମୀଙ୍କ ଜୀବନ ନେବାକୁ ବସିଛ ? ସେ ତ ମୋର ଗୋଟାଏ ଅଂଶ ।"

ସାପ ବୁଝିପାରିଲା, ସ୍ତ୍ରୀ ଯାହା କହୁଛି ତାହା ଠିକ୍ । ତଥାପି ତାର ଇଚ୍ଛା ସ୍ତ୍ରୀଟି ପୁଅକୁ ଖାଇବ । ସେଥିପାଇଁ ସେ କହିଲା — "ଅଚ୍ଛା ଟିକିଏ ରୁହ", ଏହା କହି ସେ ତା ଗାତ ଭିତରକୁ ଗଲା ଓ ଦୁଇଟି କୁହୁକ ବଟିକା ଆଣିଲା । ସେହି ବଟିକା ଦୁଇଟିକୁ ସ୍ତ୍ରୀକୁ ଦେଇ କହିଲା—"ଆଲୋ ଏଇ ବଟିକା ଦୁଇଟି ନେ । ଏହାକୁ ଖାଇଲେ ତୋର ମଙ୍ଗଳ ହେବ । ସ୍ୱାମୀ ମରିଗଲେ ବି, ତୁ ଦୁଇଟି ପୁଅର ମାଆ ହେବୁ ।"

ସ୍ତ୍ରୀ ବଟିକା ଦୁଇଟିକୁ ନେଇ କହିଲା— "ମୁଁ ଏଇ ବଟିକା ଦୁଇଟିକୁ ଖାଇଲେ ଦୁଇଟି ପୁଅ ପାଇବି ମାତ୍ର ମୋ ନାଁଆରେ ତ ନିଶ୍ଚୟ କଳଙ୍କ ଲାଗିବ !"

ସାପ ବୁଝିଲା ଝିଅଟା ଠିକ୍ କହୁଛି । ସେ ପ୍ରକୃତରେ ତାର କିଛି ଭୁଲ କରିନି, ଏଣୁ ତାକୁ ଦଣ୍ଡ ଦେବାଟା ଠିକ୍ ହେବ ନାହିଁ । ଏହାଭାବି ସେ କହିଲା —"ଆଉ ଟିକିଏ ରହ ।" ଏହାକହି ସେ ପୁଣି ତା ଗାତ ଭିତରେ ପଶିଲା । ଗାତରୁ ସେ ପୁଣି ଦୁଇଟା ବଟିକା ଆଣି ସ୍ତ୍ରୀ ଲୋକକୁ ଦେଇ କହିଲା—'ପିଲାଙ୍କ ଲାଗି ଯଦି ତୋତେ କେହି ଅପବାଦ ଦିଏ, ତେବେ ଏଇ ବଟିକାକୁ ତା ପିଲାଙ୍କ ମୁଣ୍ଡ ଉପରେ ଧୀରେ ଗୁଣ୍ଡକରି ପକାଇଦେବୁ । ବଟିକା ଗୁଣ୍ଡ ସେମାନଙ୍କ ଉପରେ ପଡ଼ିବା ମାତ୍ରେ ସେମାନେ ପାଉଁଶ ହୋଇଯିବେ ।"

ସ୍ତ୍ରୀ ବଟିକା ଦୁଇଟିକୁ ନେଲା । ଗୋଟିଏ ବଟିକାକୁ ହାତରେ ଧରି ନିଶ୍ଚିନ୍ତା ଭାବେ ପଚାରିଲା—"ମୁଁ କଣ ତାକୁ ଏମିତି ଗୁଣ୍ଡ କରିବି ?" ଏହାକହି ସେ ସାପ ମୁଣ୍ଡ ଉପରେ ବଟିକାକୁ ଧରି ଆଂଗୁଠି ଟିପରେ ଘୋରି ଗୁଣ୍ଡ କରିବାକୁ ଆରମ୍ଭ କଲା । ସେହି କୁହୁକ ବଟିକା ଗୁଣ୍ଡ ସାପ ଫଣା ଉପରେ ଝରି ପଡ଼ିଲା । ଏହା ପଡ଼ିବା ମାତ୍ରେ ସାପଟାର ଦେହ ଜଳିବାକୁ ଆରମ୍ଭ କଲା । ଚାହୁଁ ଚାହୁଁ ତାର ଲମ୍ବ ଦେହଟି ପୋଡ଼ି ପାଉଁଶ ହୋଇଗଲା ।

ସ୍ତ୍ରୀ ସ୍ୱାମୀଙ୍କୁ ଚାହିଁ କହିଲା—"ଏ ରାଜ୍ୟର ନୀତିଟା ସମ୍ପୂର୍ଣ୍ଣ ଭୁଲ୍ । ଭଲ କରିବାର ପୁରସ୍କାର କଦାପି ଅନିଷ୍ଟ କରିବା ହୋଇନପାରେ । ଯିଏ ଭଲ କରିବ ଶେଷକୁ ତାର ନିଶ୍ଚୟ ଭଲ ହେବ । ସାପଟା ଅନିଷ୍ଟ କରିବାକୁ ଚାହିଁଥିଲା, ଏଣୁ ଏଇ ଖରାପ କାମର ପୁରସ୍କାର ସେ ହାତେ ହାତେ ପାଇଗଲା ।

ସ୍ୱାମୀ ସ୍ତ୍ରୀ ଆପଣା ଘରକୁ ଫେରି ସୁଖରେ ରହିଲେ ।



# ମୂଷା ଓ ଓଟ

ମୂଷାଟିଏ ଦିନେ ବଣରେ ଯାଉ ଯାଉ ଗୋଟିଏ ବିଚିତ୍ର ପ୍ରାଣୀ ଦେଖିଲା । ସେଇ ଅଦ୍ଭୁତ ପ୍ରାଣୀଟା ବେକଟା ଯେମିତି ଲମ୍ବା, ଗୋଡ଼ ଚାରିଟା ବି ସେହିପରି । ପିଠି ଉପରେ ତାର ମସ୍ତବଡ଼ କୁଜଟାଏ । ମୂଷା ଆଶ୍ଚର୍ଯ୍ୟ ହୋଇ ତା ପାଖକୁ ଯାଇ ପଚାରିଲା—"ହଇଓ, ତମେ କିଏ ?"

ଲମ୍ବା ଗୋଡ଼ିଆ ସେଇ ବିଚିତ୍ର ପ୍ରାଣୀ କହିଲା—"ତମେ ମୋତେ ଚିହ୍ନି ନାହଁ ? ମୋତେ ସମସ୍ତେ ଓଟ କହନ୍ତି । ଅନ୍ୟ ପ୍ରାଣୀମାନଙ୍କଠାରୁ ମୁଁ ଅଲଗା, ରାଜସ୍ଥାନ ମରୁଭୂମିରେ ମୁଁ ରହେ । ମୋତେ ତମେ ଆଜଯାଏ ଚିହ୍ନିନାହଁ ଏଣୁ ମୁଁ ଭାବୁଛି ତମେ ଗୋଟିଏ ନିପଟ ମୂର୍ଖ ।"

ମୂଷା କହିଲା, "ସତକଥା ମୁଁ ଆଜଯାଏ ତୁମକୁ ଜାଣିନଥିଲି । ମୋ ତ ଏଥିପାଇଁ କ୍ଷମାକର । କେମିତିବା ଜାଣିବି ? ଏଇ ମଣିଷ ମାନଙ୍କ ଧାଉଡରେ ତ ମୋତେ ସବୁବେଳେ ଗାତ ଭିତରେ ରହିବାକୁ ପଡିଲା । ଏଇମାନେ ତ ହେଲେ ଆମ ଜାତିର ପ୍ରଧାନ ଶତ୍ରୁ; ଆମକୁ ମାରିବାକୁ ସେମାନେ ସବୁବେଳେ ତିଆର । ଯାହାହେଉ, ତମେକୁ ଦେଖି ମୋର ଖୁବ୍ ଗରଧା । ଆଜଠୁ ଆମେ ମିତ ହେବା ।"

ଆପଣାର ତଳ ଓଠକୁ ଲମ୍ବାଇ କଣ୍ଟା ଗଛର ଡ଼ାଳଟିଏ ଚୋବାଉ ଚୋବାଉ ଓଟ କହିଲା—'ଯା ଯା ଏ ଗୋଟାଏ କଥା ।'

ମୂଷା ଅଳପ ହସି କହିଲା—'ମୋତେ ଛୋଟ ଦେଖି ତୁମର ବୋଧହୁଏ ପସନ୍ଦ ହେଉନାହିଁ । ପରେ ବୁଝିପାରିବ, ମୁଁ ତୁମକୁ ନାନା ଭାବରେ ସାହାଯ୍ୟ କରିବ ।'

ଓଟ ତଥାପି ଅବିଶ୍ୱାସରେ କହିଲା—'ହଁ ତୁମ ଭଳି ଏତେ ଛୋଟିଆ ପ୍ରାଣୀ ସେ ପୁଣି ମୋର ଉପକାର କରିବ । ମୁଁ କେଡ଼େ ଡେଙ୍ଗା ଦେଖୁଛ ଟିକି ?'

ମୂଷା କହିଲା—'ମୁଁ ଜାଣେ, ମୁଁ ଅତି ଛୋଟ, ଆଉ ତମେ ଖୁବ୍ ବଡ଼ । ତଥାପି ମୁଁ ନିଶ୍ଚୟ ତୁମର ବହୁତ ଉପକାରରେ ଲାଗିବି ।'

'ହଃ' କହି ମୁହଁ ଉପରକୁ ବଢ଼ାଇ ଓଟ କଅଁଳିଆ ପତ୍ର ସବୁ ଖାଇବାରେ ଲାଗିଲା । ଯୋଗକୁ ସେତିକିବେଳେ ତା ନାକରେ ବନ୍ଧା ହୋଇଥିବା ଘାସ ଦଉଡଟି ଗୋଟିଏ ଗଛ ଡ଼ାଳରେ ଲାଗିଗଲା ।

ମୂଷା ଧିରେ କହିଲା—'ହେଇ ଦେଖ, ଏବେ ତୁମେ ମୋର ସାହାଯ୍ୟ ଦରକାର କରିବ ।'

ଓଟ ଗଛ ଡ଼ାଳରୁ ଆପଣା ମୁହଁକୁ ଛଡ଼େଇବାକୁ ବହୁତ ଚେଷ୍ଟା କଲା ମାତ୍ର ଫାଶଟା ଖୋଲିବା ପରିବର୍ତ୍ତେ ଆହୁରି ଜୋରରେ ଟାଣି ହୋଇଗଲା । ଏହା ଦେଖି ମୂଷା ଗଛ ଉପରକୁ ଉଠିଯାଇ ଦଉଡ଼ିକୁ କାଟିଦେଲା । ଓଟ

ମୁହଁଟି ଖୋଲିଗଲା । ମୂଷା କହିଲା—'ଏଥର ପଥର ଖାଇବାରେ ତୁମର ଆଉ ଅସୁବିଧା ହେବନି । ମନେରଖ ଆଜିଠୁ ମୁଁ ତୁମର ସାଙ୍ଗ ହେଲି । ତୁମର ଭଲ ମନ୍ଦ ମୋତେ ଲାଗିଲା ।

ଓଟ ତଥାପି ନିଜକୁ ଏତେବଡ଼ ମନେକରୁଥାଏ ଯେ ସେ ମୂଷା କଥାକୁ ଧ୍ୟାନ ନ ଦେଇ ବୁଦା ଆଡ଼କୁ ଚାଲିଲା ।

କେତେ ସମୟପରେ ସେହି ଜଙ୍ଗଲ ବାଟ ଦେଇ ସେ ଦେଶର ରଜା ତାଙ୍କ ଦଳବଳ ସହ ଯାଉଥିଲେ । ରାଜାଙ୍କ ଦୃଷ୍ଟି ସେଇ ଓଟ ଉପରେ ପଡ଼ି-ଗଲା । ସେ ସୈନ୍ୟମାନଙ୍କୁ ଆଦେଶ ଦେଲେ ଓଟଟାକୁ ମୋ ପାଖକୁ ଧରିଆଣ । ସେ ମଧ୍ୟ ଆମ ଦଳ ସହ ଯିବ ।

ସୈନ୍ୟମାନେ ଓଟକୁ ରାଜାଙ୍କ ପାଖକୁ ଆଣିଲେ । ଓଟ ତା ମୁଣ୍ଡକୁ ହଲାଇ କହିଲା—ମୁଁ ଆପଣଙ୍କ କଥା ମାନି ପାରିବି ନାହିଁ ଆଜ୍ଞେ ମୋ ମଇତ୍ର ମୂଷା ଠାରୁ ଅନୁମତି ଆଣନ୍ତୁ । ତା ହେଲେ ମୁଁ ଆପଣଙ୍କ ସଙ୍ଗେ ଯିବି ।

ରାଜା କହିଲେ—"କଣ ହେଲା ! ଛୁଚ ମୂଷା ହେଉଛି ତୁମର ମାଲିକ । ମୁଁ ପୁଣି ତା ଠାରୁ ଅନୁମତି ଆଣିବି ? ଏ ଭଳି କଥା ଶୁଣିବାକୁ ମୋର ବେଳ ନାହିଁ । ମୁଁ ହେଉଚି ଏଇ ରାଇଜର ରାଜା । ଏଣୁ ମୁଁ ହେଉଛି ତୁମର ଏକ-ମାତ୍ର ମାଲିକ । ଜଣେ ମୋ ରାଜ୍ୟ ଆକ୍ରମଣ କରିବାକୁ ଆସୁଛି ଶୁଣି ମୋ ରାଜ୍ୟର ପ୍ରାଣୀଙ୍କୁ ରକ୍ଷା କରିବା ଲାଗି ମୁଁ ଯୁଦ୍ଧକୁ ବାହାରିଛି । ତୁମକୁ ବି ଆମ ସଙ୍ଗେ ଯିବାକୁ ପଡ଼ିବ ।"

ମୂଷା ସବୁ ଦେଖୁଥାଏ । ଗାତରୁ ମୁହଁକୁ ଅଳ୍ପ କାଢି ସେ ମଧ୍ୟ ରାଜାଙ୍କୁ ଅନୁରୋଧ କରି କହିଲା—"ଓଟକୁ ନିଅ ନାହିଁ । ତା' କଥା ବୁଝିବି ବୋଲି ମୁଁ ତାକୁ କଥା ଦେଇଛି । ସେ ପ୍ରକୃତରେ ମୋ ସାଙ୍ଗ ।"

ମାତ୍ର ରାଜା ମୂଷା କଥା ନଶୁଣି ଓଟକୁ ତାଙ୍କ ଛାଉଣି ଆଡ଼କୁ ନେଲେ । ଓଟକୁ ବାନ୍ଧି ତା ଉପରେ ଗୁଡ଼ାଏ ଜିନିଷ ଲଦା ହେବା ଦେଖି ମୂଷା ମନରେ ଦୁଃଖ ହେଲା । ସେ ସବୁକଥା ବୁଝି ପାରିଲା । ରାଜା ଚାଲିଯିବା ପରେ ସେ

ସ୍ୱରୂରେ ବଜେଇଲା । ସେଇ ଶବ୍ଦ ଶୁଣି ଜଙ୍ଗଲ ଭିତରେ ଥିବା ମୂଷା ସବୁ ଗାତରୁ ବାହାରି ଆସି ଏକାଠି ହେଲେ । ମୂଷା ସେମାନଙ୍କ ଜାତିଭାଇଙ୍କୁ କହିଲା —'ଭାଇମାନେ ! ଓଟ ବୋଲି ଲମ୍ବା ପାଦଥିବା ଗୋଟାଏ ପ୍ରାଣୀ ସଙ୍ଗେ ମୁଁ ମିତ ବସିଥିଲି । ଜଣେ ଗର୍ବୀ ରାଜା ଆସି ତାକୁ ନେଇଗଲେ । ମୋର ଧାରଣା, ଅନ୍ୟମାନଙ୍କ ସଙ୍ଗେ ଯୁଦ୍ଧ କରିବା ହେଉଛି ତାଙ୍କ କାମ । ଓଟଟା ତ ଏକ ପ୍ରକାର ବୋକା ପ୍ରାଣୀଟାଏ । ନିଜ କଥା ବୁଝିବାକୁ ତାର ଆଦୌ ଯୋଗ୍ୟତା ନାହିଁ । ତାକୁ କଣ୍ଟା ପତ୍ର ଦେଇ ମଣିଷ ଖାଲି ଖଟାଏ । ଆମର ତାକୁ ରକ୍ଷା କରିବା ଉଚିତ୍ ।"

ଜାତିଭାଇର ସାଙ୍ଗଟି ଜଣେ ଦୁଷ୍ଟ ରାଜା କବଳରେ ପଡ଼ି ଯାଇଛି । ତାକୁ ରକ୍ଷା କରିବାକୁ ମୂଷାମାନେ ରାଜି ହୋଇଗଲେ । ଏଥିପାଇଁ କଣ କରିବ ସେ ବିଷୟରେ ମୂଷା କହିଲା—"ରାଜା, ଆମକୁ କଣ ଭାବଛି ! ଆମ ପାଖେ ଯେଉଁ ଅସ୍ତ୍ର ଅଛି, ତା'ତ ରାଜାଙ୍କ ପାଖେ ନାହିଁ । ଆମ ଧାରୁଆ ଦାନ୍ତ ରେ ଆମେ ଯେ କୌଣସି ଜିନିଷକୁ କାଟି ଟିକି ଟିକି କରିଦେଇ ପାରିବୁ । ଚାଲ ସମସ୍ତେ ରାଜାଙ୍କ ଛାଉଣିକୁ ଯିବା । ରାଜାଙ୍କର ଘୋଡ଼ା, ହାତୀ, ଗଧଙ୍କ ପିଠି ଉପରେ ପଡ଼ିଥିବା ହାଉଦା, ଜିନର ଦଉଡ଼ି କାଟି ଦେବା । ସେମାନଙ୍କ ବେକରେ ବନ୍ଧା ହୋଇଥିବା ଦଉଡ଼ିକୁ ମଧ୍ୟ କାଟି ଦେବା । ପ୍ରକୃତରେ ଏଇ ନିରୀହ ପ୍ରାଣୀମାନଙ୍କୁ ମଣିଷ ନିଷ୍ଠୁର ଭାବ ଖଟାଉଛି । ରାଜାଙ୍କ ସୈନ୍ୟମାନେ ନିଘୋଡ଼ ନିଦରେ ଶୋଇଥିବାବେଳେ ଆମେ ଚୁପ୍‌ଚାପ୍ କାମ କରିବା ।"

ମୁଖ୍ୟ ହେଲେଇ ମୂଷାମାନେ ସମ୍ମତି ଜଣାଇଲେ । ଠିକ୍ ସମୟରେ ସେମାନେ ଯାଇ ରାଜାଙ୍କ ଛାଉଣି ପାଖେ ପହଞ୍ଚିଲେ । ଗୋଟିଏ ଗୋଟିଏ କରି ରାଜାଙ୍କ ଘୋଡ଼ା, ହାତୀ, ଗଧ, ଓଟ ପ୍ରଭୃତିଙ୍କ ବେକରେ ଫାଶ ଓ ଜିନ୍, ହାଉଦା ଗୁଡ଼ାକର ଦଉଡ଼ି ସବୁ କାଟି ଦେଲେ ।

ଆକ୍ରମଣ କରିବାକୁ ଆସିଥିବା ବିପକ୍ଷ ଦଳର ଛାଉଣିଟା ନିକଟରେ ସକାଳ ହେବାମାତ୍ରେ ବିପକ୍ଷ ଦଳର ସୈନ୍ୟମାନେ ଦେଖିଲେ, ରଜାଙ୍କ ଘୋଡ଼ା, ଗଧ ପ୍ରଭୃତି ବାହାରେ ବୁଲୁଛନ୍ତି । ଏଇ ସୁଯୋଗରେ ସେମାନେ

ଆକ୍ରମଣ ଆରମ୍ଭ କରିଦେଲେ । ଯୁଦ୍ଧ ବାଜା ଓ ପାଟି ତୁଣ୍ଡ ଶୁଣି ରାଜାଙ୍କ ଘୋଡ଼ା, ହାତୀ ସବୁ ଛଟିପିଟି ହୋଇ ବଣ ଆଡ଼କୁ ଧାଇଁ ପଳାଇଗଲେ । ଅଳ୍ପ ସମୟ ମଧ୍ୟରେ ସୈନ୍ୟମାନେ ଆସି ରାଜାଙ୍କ ସୈନ୍ୟମାନଙ୍କୁ କାବୁ କରିନେଲେ ।

ଓଟ ସଙ୍ଗେ ତା' ସାଙ୍ଗ ମୂଷାର ଦେଖା ହୋଇଗଲା । ଓଟ କହିଲା — 'ଆରେ ଭାଇ, ମୁଁ ଏବେ ବୁଝି ପାରିଲି, ତୁମ କଥା ଠିକ୍ । ବଡ଼ ଦେଖା ଯାଉଥିବା ପ୍ରାଣୀ ପ୍ରକୃତରେ ବଡ଼ ନୁହେଁ, କିମ୍ବା ଶ୍ରେଷ୍ଠ ଦେଖା ଯାଉଥିବା ପ୍ରାଣୀ ପ୍ରକୃତରେ ଶ୍ରେଷ୍ଠ ନୁହେଁ । ଆଜିଠୁଁ ତୁମେ ମୋର ପ୍ରକୃତ ମିତ୍ର । ତମେ ଆଜିଠୁଁ ମୋ ପିଠି ଉପରେ ଥିବା କୁଜ୍ ଭିତରେ ରୁହ । ମୁଁ ବିପଦରେ ପଡ଼ିଲେ ତୁମେ ମୋତେ ରକ୍ଷାକରିବ । ଚାଲ ଆମେ ଦେଶବିଦେଶ ବୁଲିଯିବା ।'

( ପଞ୍ଜାବ )

●

# ଲୁହର ମୂଲ

ଥରେ ବର୍ଷା ଅଭାବରୁ କାଶ୍ମୀର ରାଜ୍ୟର ଚାରିଆଡ଼େ ହାହାକାର ପଡ଼ି- ଯାଇଥାଏ । ଧାନ କ୍ଷେତ ଗୁଡ଼ାକ ଶୁଖିଲା ଠୋ ଠୋ; ସେଉ ନାସପାତି ଗଛ ଗୁଡ଼ାକ ମଧ୍ୟ ଝାଉଁଳି ପଡ଼ୁଥାଏ । ଖାଇବାକୁ ନ ପାଇ ଲୋକମାନେ ହନ୍ତସନ୍ତ ହୋଇପଡ଼ୁଥାନ୍ତି । ଚାରିଆଡ଼େ ଚାହିଁବ ଖାଲି ଭୋକ ଉପାସ । ଆକାଶରେ ଦଳକୁଦଳ ଶାଗୁଣା ଉଡ଼ୁଥାନ୍ତି ସ୍ୱର୍ଗ ଭଳି ସୁନ୍ଦର କାଶ୍ମୀର ରାଜ୍ୟଟା ଯେପରି ଶବ ଓ କାଉଶାଗୁଣାଙ୍କ ରାଜ୍ୟ ହୋଇ ପଡ଼ିଥାଏ ।

କାଶ୍ମୀର ରାଜ୍ୟର ପଡ଼ା ଗାଆଁଟିରେ ଭୋଳାନାଥ ବୋଲି ଚାଷୀଟିଏ ଥାଏ । ଫସଲ ଆମଦାନି ତ ନାହିଁ । ଏଣୁ ତାର କାଠ ଚିଆର ଖମାରଟା କେଉଁଦିନୁ ଖାଲିପଡ଼ିଛି । ଭୋଳାନାଥ ଦିନେ ଗୋଟିଏ ଥଳି ଧରି ଘରୁ ବାହାରି

ଚଢ଼ିଲା—କେଉଁଠ କିଛି ଖାଦ୍ୟ ଶସ୍ୟ ଯୋଗାଡ଼ କରିବାକୁ । ଏଭଳି ଦୁର୍ଯୋଗରେ କିଏ ବା ତାକୁ ଶସ୍ୟ ଦେବ ? ତଥାପି ଆଶା ବାନ୍ଧି ସେ ଚାଲିଥାଏ । ଯାଉଁ ଯାଉଁ ବାଟରେ ସେ ଜଣେ ସନ୍ନ୍ୟାସୀଙ୍କୁ ଦେଖିଲା । ତା'ର ଶୁଖିଲା ମୁହଁ, କଙ୍କାଳସାର ଦେହ ଓ ଛିଣ୍ଡା ପୋଷାକ ଦେଖି ସନ୍ନ୍ୟାସୀଙ୍କର ଭାରି ଦୟା ହେଲା । ସେ ତାକୁ ପୁଚ୍ଛି କହିଲେ—"ଆରେ ବାପ, ତୋର କ'ଣ ହୋଇଛି, କହ ।"

ଭୋଳାନାଥ ତାଙ୍କୁ ଆପଣା ଦୁର୍ଦ୍ଦଶା ବିଷୟ ଜଣାଇ ଶେଷରେ କହିଲା—"ଆଜ୍ଞା, ମୋତେ କଣ ଆପଣ କିଛି ସାହାଯ୍ୟ କରିପାରିବେ ?"

ସନ୍ନ୍ୟାସୀ କହିଲେ—"ଏହି ଗାଁ ଶେଷରେ ଗୋଟିଏ ଜଙ୍ଗଲ ପଡ଼ିବ । ସେହି ଜଙ୍ଗଲ ଭିତରେ ମୋର କୁଡ଼ିଆ । ସେଇଠି ମୋ ଝିଅ ରହୁଛି । ତୁ ତା' ପାଖକୁ ଯାଆ । ସିଏ ତୋ'ର ସବୁ ଅଭାବ ଦୂର କରିପାରିବ ।"

ଏହା ଶୁଣି ଖୁବ୍ ଆଶାରେ ଭୋଳାନାଥ ଯାଇ ସେଇ କୁଡ଼ିଆ ପାଖେ ପହଞ୍ଚିଲା । ସନ୍ନ୍ୟାସୀଙ୍କ ଝିଅକୁ ଆପଣା ଦୁଃଖ ଜଣାଇଲା । ଏହା ଶୁଣିବା ମାତ୍ରେ ଝିଅଟି କାନ୍ଦିବାକୁ ଲାଗିଲା । ଆଖିରୁ ତା'ର ବଡ଼ ବଡ଼ ଲୁହଟୋପା ଝରିବାକୁ ଲାଗିଲା । ଆଶ୍ଚର୍ଯ୍ୟର କଥା, ସେଗୁଡ଼ିକ ମାଟିରେ ପଡ଼ିବା ମାତ୍ରେ ଗୋଟିଏ ଗୋଟିଏ ମୁକ୍ତା ହୋଇଯାଉଥାଏ । ଏମିତି ଗଦାଏ ମୁକ୍ତା ଜମା ହୋଇଯିବା ପରେ ଝିଅଟିର କାନ୍ଦ ବନ୍ଦ ହୋଇଗଲା । ସେ ମୁକ୍ତାଗୁଡ଼ିକ ଭୋଳାନାଥକୁ ଦେଇ କହିଲା—"ଏଥର ଘରକୁ ଯାଅ । ଏଗୁଡ଼ିକୁ ବିକି ଖାଇବା ଜିନିଷ କିଣିବ ।"

ଭୋଳାନାଥ ଝିଅଟିକୁ କୃତଜ୍ଞତା ଜଣାଇବାକୁ ଭାଷା ପାଇଲା ନାହିଁ । ଝିଅଠାରୁ ବିଦାୟ ନେଇ ସେ ମୁକ୍ତାଗୁଡ଼ିକ ବିକିବା ଲାଗି ବଜାର ଆଡ଼କୁ ଚାଲିଲା । ମାତ୍ର ବଜାରରେ ସେଇ ମୁକ୍ତାଗୁଡ଼ିକୁ କେହି କିଣିବାକୁ ରାଜି ହେଲେ ନାହିଁ । ଭୋଳାନାଥ ଯାହା ପାଖକୁ ଗଲା, ସିଏ ପଚାରିଲା — "ତୁ ଏ ଭଳି ଦାମୀ ମୁକ୍ତା କେଉଁଠୁ ଆଣିଛୁ କହ ।" ତା ପାଖରେ ମୁକ୍ତାଗୁଡ଼ାକ ଦେଖି ସମସ୍ତଙ୍କ ମନରେ ସନ୍ଦେହ । ଲୋକେ ତାକୁ ଧରି ରାଜାଙ୍କ ପାଖକୁ ନେଇ କହିଲେ

—"ମଣିମା ! ଏଇ ଲୋକଟା କୁଆଡ଼ୁ ଗୁଡ଼ାଏ ଅତି ଦାମିକା ମୁକ୍ତା ଆଣିଛୁ, ଆପଣ ଏ ବିଷୟ ବୁଝନ୍ତୁ ।"

ରାଜା ଭୋଲାନାଥଙ୍କୁ ପଚାରିବାରୁ ସେ ଯାହା ଯାହା ଘଟିଥିଲା ସବୁ କହିଗଲା । ରାଜାଙ୍କର ଏଥିରେ ବିଶ୍ୱାସ ହେଲା ନାହିଁ । ସେ କହିଲେ— "ଲୁହଟୋପା ସବୁ ଏପରି ମୁକ୍ତା ପାଲଟିଯିବା କଥା ତ ଶୁଣାଯାଇନି । ଚାଲ, ସେଠାକୁ ଯିବା, ମୁଁ ସେହା ନିଜେ ଦେଖିବାକୁ ଚାହେଁ ।"

ରାଜା ଆପଣା ଦଳବଳ ସହ ଭୋଲାନାଥଙ୍କୁ ସଙ୍ଗରେ ନେଇ ଯାଇ ସେଇ କୁଡ଼ିଆ ପାଖେ ପହଞ୍ଚିଲେ । ସେମାନେ ସେଠାକୁ କାହିଁକି ଆସିଛନ୍ତି ଏହା ଶୁଣିବା ମାତ୍ରେ ଝିଅଟି ରାଜାଙ୍କ ଆଗକୁ ଆସିବାକୁ ମନା କରିଦେଲା । ମାତ୍ର ଏଥିପାଇଁ ସଙ୍ଗେ ସଙ୍ଗେ କାନ୍ଦିବାରୁ ଯେଉଁ ମୁକ୍ତାସବୁ ଝଡ଼ିଥିଲା ସେଗୁଡ଼ିକୁ ସେ ରାଜାଙ୍କ ପାଖକୁ ପଠାଇଦେଲା । ଝିଅଟିର ଲୁହ ଯେ, ମୁକ୍ତା ହୋଇଯାଉଛି ଏ ବିଷୟରେ ରାଜାଙ୍କର ଆଉ ସନ୍ଦେହ ରହିଲା ନାହିଁ । ରାଜା ସ୍ଥିର କଲେ, ଏଇ ଝିଅଟିକୁ ସେ ବାହା ହେବେ । ସଙ୍ଗେ ସଙ୍ଗେ ସନ୍ନ୍ୟାସୀଙ୍କୁ ଏହି ପ୍ରସ୍ତାବ ଜଣାଇଦେଲେ । ସନ୍ନ୍ୟାସୀ ମଧ୍ୟ ଆନନ୍ଦରେ ରାଜି ହୋଇଗଲେ । ତାଙ୍କ ଝିଅ କାଶ୍ମୀରର ରାଣୀ ହେବ । ବିବାହର ବ୍ୟବସ୍ଥା ହେଲା ଓ ସେଇଠି ସନ୍ନ୍ୟାସୀଙ୍କ ଝିଅ ସଙ୍ଗେ ରାଜାଙ୍କର ବିବାହ ନିରାଡ଼ମ୍ବରଭାବେ ହୋଇଗଲା । ପରଦିନ ରାଜା ନୂଆ ରାଣୀଙ୍କୁ ସାଙ୍ଗରେ ନେଇ ରାଜଧାନୀକୁ ବାହାରିଲେ ।

ଝେଲମ୍ ନଦୀର କୂଳେ କୂଳେ ରାଜା ଆପଣା ରାଜ୍ୟକୁ ଯାଉଥାନ୍ତି । ବାଟରେ ଗୋଟିଏ ଭୀଷଣ ଜଙ୍ଗଲ ପଡ଼ିଲା । ରାତି ହୋଇଆସୁଥାଏ । ଏଣୁ ରାଜା ସେଇଠି ରହିବା ଲାଗି ଡେରା ପକାଇବାକୁ ଆଦେଶ ଦେଲେ । ଖାଇ ପିଇ ସମସ୍ତେ ଶୋଇଲେ । ନୂଆ ରାଣୀଙ୍କ ପାଖେ ଦାସୀଟି ଶୋଇଥାଏ । ରାତି ଅଧ, ଦାସୀଟି ଉଠି ରାଣୀଙ୍କୁ ବାନ୍ଧି ପକାଇଲା । ତାଙ୍କ ଆଖି ଫୁଟାଇଦେଲା ଓ ତାଙ୍କ ଦେହରୁ ସମସ୍ତ ଶାଢ଼ୀ ଓ ଅଳଂକାର କାଢି ପକାଇଲା । ଗୋଟାଏ କାଠ ବାକ୍ସରେ ରାଣୀଙ୍କୁ ପୂରାଇ ରଖିବ ପକାଇ ଦେଲା । ଆଗରୁ ସେ ଯେଉଁ ଲୋକଙ୍କୁ ଲାଞ୍ଚ ଦେଇଥିଲା ସେମାନଙ୍କୁ କହିଲା—"ଏଇ ବାକ୍ସକୁ ନେଇଯାଇ ନଈରେ

ଫିଙ୍ଗିଦିଅ ।" ସେମାନେ ସେଇଆ କଲେ । ତା'ପରେ ସେ ଆପଣାର ଝିଅକୁ ରାଣୀଙ୍କ ଲୁଗାପଟା ଓ ଅଳଙ୍କାର ପିନ୍ଧାଇ ଦେଇ ରାଣୀଙ୍କ ଶୋଇବା ଜାଗାରେ ଶୁଆଇଦେଲା ।

ଏଣେ କାଠ ବାକ୍ସଟି ନଈରେ ଭାସି ଭାସି ଯାଉଥାଏ । ଯୋଗକୁ ସେଇଟି ଶକ୍ତ କାଠରେ ତିଆରି ହୋଇଥିଲା । ଏଣୁ ପଥରରେ ବାଜିଲେ ବି ତାହାର କିଛି କ୍ଷତି ହେଉ ନଥାଏ । କାଠୁରିଆଟିଏ ବଣକୁ କାଠ କାଟିବାକୁ ଆସିଥିଲା । ସେ ନଈରେ କାଠ ବାକ୍ସଟିଏ ଭାସୁଥିବା ଦେଖିଲା, ସେଇଟିକୁ ଟାଣି ଟାଣି କୂଳକୁ ଆଣିଲା । ବାକ୍ସକୁ ଫିଟାଇ ସେଥିରେ ସୁନ୍ଦର ଝିଅଟିକୁ ଦେଖି ସେ କାବା ହୋଇଗଲା । ସେତେବେଳକୁ ଝିଅଟି ବାକ୍ସ ଭିତରେ ଅଚେତ ହୋଇ ପଡ଼ିଥାଏ । କାଠୁରିଆ ଝିଅଟିକୁ ଅତି ଯତ୍ନରେ ଆପଣା କୁଡ଼ିଆକୁ ନେଇଗଲା ।

ଝିଅଟିକୁ ଚେତା କରେଇଲା । ଏହାପରେ ଦେଖିଲା ତାର ଆଖିଡ଼ୋଳା ଦୁଇଟିକୁ କିଏ କାଢ଼ି ନେଇଛି । କାଠୁରିଆର ପିଲାପିଲି ନଥାନ୍ତି । ସେ ରାଣୀକୁ ଆପଣାର ଝିଅ ପରି ଅତି ସ୍ନେହରେ ପାଳିବାକୁ ଲାଗିଲା । ତା'ର ଯତ୍ନ ଆଦରରେ ଝିଅଟି କ୍ରମେ ସ୍ୱାସ୍ଥ୍ୟ ଫେରି ପାଇଲା । ସେ ଯେତେବେଳେ କାନ୍ଦେ ସେତେବେଳେ ତା'ର ଲୁହ ଟୋପାସବୁ ମୁକ୍ତା ପାଲଟିଯାଏ । ଏହା ଦେଖି କାଠୁରିଆ ବିସ୍ମିତ ହୋଇଗଲା । ଜୀବନ ରକ୍ଷା କରିଥିବାରୁ ଓ ତାକୁ ଆପଣା ଝିଅଭଳି ବହୁତ ଆଦର ଯତ୍ନ କରୁଥିବାରୁ ଝିଅଟି କାଠୁରିଆକୁ ବାପା ପରି ମାନୁଥାଏ । ଥରେ ସେ ଗୁଡ଼ାଏ ମୁକ୍ତା ଆଣି କାଠୁରିଆକୁ ଦେଇ କହିଲା — "ବାପା, ଏ ଗୁଡ଼ିକ ବିକି ଆମ ଘର ପାଇଁ ଯାହା ଦରକାର କିଣି ଆଣ ।"

କାଠୁରିଆ ଝିଅ କଥା ମାନି ମୁକ୍ତାକୁ ବିକି ଘର ପାଇଁ ନାନା ଜିନିଷ କିଣିଆଣିଲା । କ୍ରମେ ମୁକ୍ତା ସବୁ ବିକି ସେ ଖୁବ୍ ଧନୀ ହୋଇଗଲା । ଜଙ୍ଗଲର ସେଇ ପୁରୁଣା କୁଡ଼ିଆ ଘରେ ଆଉ କାହିଁକି ରହିବ ସେ ଆସି ସହରରେ ସୁନ୍ଦର ଘର ତିଆରି କରି ରହିଲା । ସେଇ ଘର ଚାରିପଟେ ଚାରିପଟେ ମସ୍ତବଡ଼ ବଗିଚା, ଫଳ ଫୁଲରେ ହସି ଉଠୁଥାଏ । ଦୁଇଟା ଅମାରରେ ଶସ୍ୟ ପୂରିଥାଏ । କାଠୁରିଆ ଏଣିକି ଦାମୀ ପୋଷାକ ପିନ୍ଧିବାକୁ ଲାଗିଲା । ଯେଉଁ ଅନ୍ଧୁଣୀ ଝିଅ

ପାଇଁ ତା'ର ଏତେ ସମ୍ପତ୍ତି ତା ପାଇଁ ମଧ୍ୟ ସେ ଖବ୍ ଦାମିକା ଶାଢ଼ୀ ଓ ଅଳଙ୍କାର ପିନ୍ଧାଇବାକୁ ଦେଲା । ଭଲ ଖାଇ ପିନ୍ଧି ଝିଅଟି ବେଶ୍ ଆନନ୍ଦରେ ଥାଏ । ମାତ୍ର ବେଳେ ବେଳେ କଅଣ ଭାବି ସେ ଦୁଃଖରେ ମୁହଁ ଶୁଖେଇ ବସେ ।

ଥରେ ଝିଅଟି ମୁହଁ ଶୁଖେଇ ବସି ଭାବୁଥିଲାବେଳେ କାଠୁରିଆ ପଚ୍ଚରିଲା—"ଝିଅ, ତୋତେ କଏ କାଠ ବାକ୍ସମଧ୍ୟରେ ପୂରାଇ ଏମିତି ଦଣ୍ଡ ଦେଇଥିଲା ସେକଥା ତ ମୋତେ ଆଜଯାଏ କହିଲୁ ନାହିଁ ? ତୋ ଆଖି କ'ଣ ଆଉ ଭଲ ହୋଇପାରିବ ନାହିଁ ?"

ଝିଅଟି କହିଲା — "ବାପା, ତମେ ମୋତେ କେତେଥର ସେଇକଥା ପଚ୍ଚରିଲଣି ! ମୁଁ ତ ସେକଥା ତୁମକୁ କହିପାରିବ ନାହିଁ । ତେବେ ଏତିକ କହିବ ଯେ ଚେଷ୍ଟାକଲେ ମୁଁ ପୁଣି ଆଖିରେ ଦେଖିପାରିବ ।"

"କ'ଣ କଲେ ତୁ ପୁଣି ଦେଖିପାରିବୁ ମୋତେ ସେତିକ କହ । ଯାହା ହେଉ ପଛକେ ମୁଁ ତା' ନିଶ୍ଚୟ କରିବ ।"

"ଯଦି କରିବ ବୋଲି କହୁଛ ତେବେ ପୁଡ଼ାଏ ମୁକ୍ତା ନେଇ ରାଜାଙ୍କ ଉଆସକୁ ଯାଅ । କାହାକୁ ଲାଞ୍ଚ ଦେଇ ରାଣୀଙ୍କ ଆଖିଦୁଇଟି ମୋ ଲାଗି ନେଇ ଆସ । ତାକୁ ମୋ ଆଖିରେ ଲଗାଇ ଦେଲେ ମୁଁ ପୁଣି ଦେଖିପାରିବ ।"

ଝିଅ କହିବାମାତ୍ରେ କାଠୁରିଆ ପୁଡ଼ାଏ ମୁକ୍ତା ନେଇ ଉଆସକୁ ଗଲା । ସେ ଜଣେ ଗୁଳବାଣୀକୁ ମଙ୍ଗେଇନେଲା । ଗୁଳବାଣୀ ପୁଡ଼ାଏ ମୁକ୍ତା ପାଇବା ଆଶାରେ ଦାସୀ ପାଖେ ଶୋଇଥିବା ରାଣୀଙ୍କ ଆଖି ଦଓଟିକୁ ଓପାଡ଼ି ଆଣି କାଠୁରିଆକୁ ଦେଲା । ଆନନ୍ଦରେ କାଠୁରିଆ ତାକୁ ଅଣ୍ଟାଳି ଝିଅକୁ ଦେବାରୁ ସେ ତାହାକୁ ନେଇ ଆପଣା ଆଖିରେ ଲଗାଇଲା । ସଙ୍ଗେ ସଙ୍ଗେ ସେ କହି ପକାଇଲା — "ବାପା, ବାପା, ମୁଁ ଏବେ ସବୁ ଦେଖିପାରୁଛି ।"

ଅଳ୍ପ କେତେଦିନ ପରେ କାଠୁରିଆ ଲକ୍ଷପତି ହୋଇଗଲା । କ୍ରମେ ଏ କଥା ରାଜାଙ୍କ କାନରେ ପଡ଼ିଲା । ସେ କାଠୁରିଆକୁ ଡକାଇ ପଚ୍ଚରିଲେ —

"ତମେ ତ ବଣରେ କାଠ କାଟୁଥିଲ, ଏତେ ଧନଦୌଲତ କପରି ପାଇଲ ସେ କଥା କୁହ।"

କାଠୁରିଆ ପ୍ରଥମେ ଏକଥା କହିବାକୁ କୁନ୍ଥୁକୁନ୍ଥୁ ହେଉଥିଲା। ମାତ୍ର ପ୍ରକୃତ କଥା ନ କହିଲେ ତାକୁ କଠିନ ଦଣ୍ଡ ଦିଆଯିବ ବୋଲି ରାଜା ଧମକେଇବାରୁ ସେ ବାକ୍ସରୁ ଅନ୍ଧୁଣୀ ଝିଅକୁ ପାଇବା ପ୍ରଭୃତି ସବୁକଥା କହିଦେଲା। ରାଜାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ଏ ଝିଅଟି କାନ୍ଦିଲେ ବି ତାହା ମୁକ୍ତା ପାଲଟି ଯାଉଛି। ଅଥଚ ସେ ଯେଉଁ ଝିଅକୁ ବାହା ହୋଇଛନ୍ତି ତା' ଲୁହରୁ ଏ ପର୍ଯ୍ୟନ୍ତ ଗୋଟିଏ ହେଲେ ମୁକ୍ତା ହୋଇନ। ରାଜା କହିଲେ— "ତୁମ ଝିଅକୁ ଏଠାକୁ ଅଣାଇଲେ ସବୁ କଥା ବୁଝାଯିବ।"

ରାଜାଙ୍କ ଆଦେଶରେ ଅନ୍ଧୁଣୀ ଝିଅକୁ ଦରବାରକୁ ଅଣାଗଲା। ତାକୁ ପଚାରିବାରୁ ସେ ମୂଳରୁ ସବୁକଥା କହିଗଲା। ରାଜା ସବୁକଛି ବୁଝିପାରିଲେ। ପ୍ରକୃତ ରାଣୀଙ୍କୁ ପାଇ ତାଙ୍କ ଆନନ୍ଦର ସୀମା ରହିଲା ନାହିଁ। ରାଜ୍ୟସାରା ଆନନ୍ଦ ଉତ୍ସବ ହେଲା। ରାଜାଙ୍କ ଆଦେଶରେ ଦାସୀ ଓ ତା' ଝିଅକୁ ଫାଶୀ ଦିଆଗଲା।

( କାଶ୍ମୀର )



## ଲୋଭର ଫଳ

ଗୋଟିଏ ଜାଗାରେ ଦୁହିଙ୍କ ଘର। ଦୁହେଁଯାକ ମନୋହରି ଜିନିଷ ବିକି ଚଳନ୍ତି। ଜଣଙ୍କ ନାଁ ସେରବା, ଅନ୍ୟଜଣଙ୍କ ନାଁ ସେରବାନ। ସେରବା ଲୋକଟି ଖୁବ୍ ଲୋଭୀ, ଲୋକଙ୍କୁ ଠକେଇ ଅଳ୍ପଦାମର ଜିନିଷକୁ ବେଶି ଦାମରେ ବିକେ, କିନ୍ତୁ ସେରବାନ ଲୋକଟି ଖୁବ୍ ଭଲ। ଠିକ୍ ଦାମରେ ଆପଣା ଜିନିଷ

ବାଟକ । ଲୋକଙ୍କୁ ଠକେଇବା କଥା କେବେ ହେଲେ ଭାବେନା । ଏଣୁ ସମସ୍ତେ ତା ଠାରୁ ଜିନିଷ କିଣନ୍ତି ।

ସେରବା ଠାରୁ ଯିଏ ଥରେ ଜିନିଷ କିଣିଥାଏ, ସେ ଆଉ ତା' ପାଖ ମାଡ଼େନା । କ୍ରମେ ତା' କଥା ଲୋକଙ୍କ ଭିତରେ ପ୍ରଚାର ହୋଇଗଲା । ଦିନକୁ ଦିନ ତାର ବିକ୍ରି କମିଯିବାକୁ ଲଗିଲା । ସେ ଦୁଶ୍ଚିନ୍ତାରେ ପଡ଼ିଲା । ଦିନେ ସେ ସେରବାନକୁ ଡ଼ାକି କହିଲା—"ଆଜିଠୁଁ ଆମେ ଦୁହେଁ ଦୁଇ ଆଡ଼କୁ ଜିନିଷ ବିକିବାକୁ ଯିବା । ଗୋଟାଏ ଆଡ଼କୁ ଯାଉଥିବାରୁ ଆମର ଲାଭ ହେଉନାହିଁ । ଏମିତି କଲେ ହୁଏତ ଦିନେ ଦେଖିଲା ବେଳକୁ ଦୁହିଁଙ୍କର ବେଉସା ବି ବନ୍ଦ ହୋଇଯିବ ।"

ସେରବାନ ଭାବି ଦେଖିଲା, ସେରବା ଠିକ୍ କଥା କହୁଛି । ଏଣୁ ସେହି ଦିନଠାରୁ ଦୁହେଁ ଦୁଇଆଡ଼କୁ ଯାଇ ଭିନ୍ନ ଭିନ୍ନ ଗାଆଁରେ ବେପାର କଲେ । ସେରବା ଯେଉଁ ଗାଆଁକୁ ଗଲା, ସେରବାନ ସେଠିକି ଗଲାନାହିଁ । ଏମିତି କେତେଦିନ ଚାଲିଗଲା । ସେରବା ଦେଖିଲା, ଏହାଦ୍ୱାରା ମଧ୍ୟ ତାର କିଛି ଲାଭ ହେଉନାହିଁ; ସେରବାନର ବେଶି ଲାଭ ହେଉଛି । ସେ ଭାବିଲା, ଏପରି କରି-ବାଟା ଭଲ ହେଲାନାହିଁ; ସେରବାନ ଯେଉଁଠିକି ବିକିବାକୁ ଯାଉଛି ସେ ଯଦି ସେଠାକୁ ଯାଆନ୍ତା, ତାହେଲେ ତାର ଭଲ ଲାଭ ହୁଅନ୍ତା । ଏଣୁ ସେ ଦିନେ ପୁଣି ସେରବାନକୁ ଡ଼ାକି କହିଲା—"ଆରେ ଭାଇ, ଅଲଗା ଅଲଗା ଗାଆଁକୁ ଯାଇ କିଛି ଲାଭ ନାହିଁ, ଆଜିଠାରୁ ଆମେ ଦୁହେଁ ଦୁଇ ପ୍ରକାର ଜିନିଷ ନେଇ ଗୋଟିଏ ଗୋଟିଏ ଗାଆଁରେ ବୁଲି ବିକିବା । ତା ହେଲେ ନିଶ୍ଚୟ ଆମ ଦୁହିଁଙ୍କର ଭଲ ହେବ ।"

କଥାଟା ସେରବାନ ମନକୁ ବି ପାଇଗଲା । ସେ ଏଇ ପ୍ରସ୍ତାବରେ ରାଜି ହୋଇଗଲା । ପରଦିନଠାରୁ ଦୁହେଁସାଙ୍ଗ ହୋଇ ଜିନିଷ ବିକିବାକୁ ବାହାରିଲେ ।

ଦିନେ ଦୁହେଁ ସାନ ନଈ ପାରି ହୋଇ ଗୋଟିଏ ଦୂର ଗାଆଁକୁ ଜିନିଷ ବିକିବାକୁ ଗଲେ । ସେରବା ଗୋଟିଏ ରାସ୍ତାରେ ଚାଲିଲା, ସେରବାନ ଆଉ ଗୋଟାଏ ରାସ୍ତାରେ । ଏମିତି ଗୋଟିଏ ଗାଁରେ ବୁଲି ବୁଲି ଦୁହେଁ ଜିନିଷ ବିକ୍ରି

କରିବାକୁ ଲଗିଲେ ।

ଗୋଟିଏ ପୁରୁଣା ଭଙ୍ଗା ଘର ସାମ୍ନାରେ ଯାଇ ସେଶବା ଡ଼ାକିଲା— 'ମନୋହରୀ ଜିନିଷ ନେବ, ମନୋହରୀ ଜିନିଷ' । ସଙ୍ଗେ ସଙ୍ଗେ ଗୋଟେ ଝିଅଟିଏ ଆସି ତାକୁ ଘର ଭିତରକୁ ଡ଼ାକିନେଲା । ଘର ଭିତରେ ତା'ର ବୁଢ଼ୀ ମାଆଟିଏ । ଝିଅଟି ମାଆକୁ କହିଲା— "ମାଆ, ପଇସା ଦେ, ମୁଁ ଖେଳନାଟିଏ କିଣିବ ।"

ବୁଢ଼ୀଟି ଖୁବ୍ ଗରିବ । ଉପାସ ଭୋକରେ କାଳ କାଟେ, ବେଳାଏ ଚୂଲି ଜଳେ ତ ଆଉ ବେଳାକୁ ଉପାସ । ନାତୁଣୀଟି ଛଡ଼ା ଜଗତରେ ତାର ଆଉ କେହି ନାହିଁ । ନାତୁଣୀକୁ ସେ ଖୁବ୍ ଦେଖିପାରେ । ନାତୁଣୀଟି ଜାଣେ ସେମାନଙ୍କ ଅବସ୍ଥା, ତଥାପି ସେ ଖେଳନାଟିର ଲୋଭ ସମ୍ଭାଳି ପାରିଲାନାହିଁ, ଆଈମାକୁ ପଇସା ଦେବାକୁ ନେହୁରା ହେଲା । ବୁଢ଼ୀ କଣ କରିବ ? ନାତୁଣୀକୁ କପରି ଖେଳନାଟି କିଣିଦେବ । ଏଇ କଥା ଭାବୁ ଭାବୁ ହଠାତ୍ ତାର ମନେ ପଡ଼ିଗଲା, ଭଙ୍ଗା ସିନ୍ଦୂକ ଭିତରେ କେତେ କାଳର ଗୋଟାଏ ପୁରୁଣା ପାନ ଡବା ରହିଛି । ସେଇଟାକୁ ବଦଳ ଦେଲେ ବକାଳୀ ହୁଏତ ତାକୁ ଖେଳନାଟି ଦେଇପାରେ । ଏହା ଭାବି ସେ ସଙ୍ଗେ ସଙ୍ଗେ ଡବାଟିକୁ ଆଣି ବୁଲାବକାଳକୁ ଦେଖାଇଲା ।

ଦେଖିବା ମାତ୍ରେ ସେଶବା ଜାଣିପାରିଲା, ଡବାଟି ସୁନାରେ ତିଆରି, ସେଥିରେ ମଣି ମୁକ୍ତା ବି ଲାଗିଛି । ବହୁଦିନରୁ ଅଯତ୍ନରେ ପଡ଼ି ରହିଥିବାରୁ ଯାହା ତାହାର ବର୍ଣ୍ଣ ମଇଳା ହୋଇ ଯାଇଛି । ଜିନିଷଟି ପ୍ରତି ତାର ଲୋଭ ହେଲା । ସେ ବୁଢ଼ୀକୁ କହିଲା—"ଆଲୋ ମାଉସୀ, ଏଇ ଡବାଟିର ବା ଦାମ୍ କେତେ ହେବ, ପଇସାଏ ବା ଦୁଇ ପଇସା । ମୋର ଏଇ କଣ୍ଢେଇଟିର ଦାମ୍ ଚରିଣା । ଏଣୁ ଡବା ବଦଳରେ କଣ୍ଢେଇଟି ମୁଁ ଦେବି କେମିତି ? ବରଂ ମୁଁ ଦୁଇ ପଇସା ଦେଉଛି, ତମେ ମୋତେ ଡବାଟି ବିକିଦିଅ । ତା'ହେଲେ ତମର ସୁବିଧା ହେବ ।"

ବୁଢ଼ୀ କହିଲା—"ନାତୁଣୀ ଖେଳନାଟି ପାଇବ ବୋଲି ତ ମୁଁ ଏଇଟି

ଦେଇ ଦେବାକୁ ବସିଛୁ । ଖେଳନା ଯନ୍ତ୍ର କିଣି ନ ହେଲା, ତେବେ ଦୁଇପଇସା ପାଇଁ ଏଇଟାକୁ ବିକ ଲାଭ କଣ ? ଖୋଜ କାଲର ଜିନିଷଟାଏ, ଘରେ ଅଛି ତ ଥାଉ ।"

ସେରବା ଭାବିଲା, ସଙ୍ଗେ ସଙ୍ଗେ ଯଦି ଡବାଟିର ଦାମ୍ ଆଉ କିଛି ବଢ଼େଇ ଦେବ ବୋଲେ ତାହେଲେ ବୁଢ଼ୀ ହୁଏତ ମନେ କରିବ ଜିନିଷଟାର ଦାମ୍ ସତକୁସତ ବେଶି । ବରଂ ଫେରିଲାବେଳେ ଆଉଥରେ ଆସି ଦାମ୍ ଟିକିଏ ବଢ଼େଇ ଦେଇ ଡବାଟି ବୁଢ଼ୀଠାରୁ କିଣି ନେଇଯିବ । ଏହା ସ୍ଥିରକରି 'ହଉ ମୁଁ ଆସୁଛି' କହି ସେ ସେଠାରୁ ଗୁଲିଗଲା ।

କେତେ ସମୟ ପରେ ସେରବାନ ବ ଟା' ଜିନିଷ ପତ୍ର ବିକିବା ଲାଗି ସେଇଠି ଆସି ପହଞ୍ଚିଲା । ଝିଅଟି ମଧ୍ୟ ତାକୁ ଦେଖି ଘର ଭିତରକୁ ଡାକି-ନେଲା । ଏଥର ସେ ବୁଲା ବିକାଳିଠାରୁ ଦପଟ ଚୁଡ଼ି କିଣିବାଲାଗି ମାଆ ସଙ୍ଗେ ଲାଗିଗଲା ।

ବୁଢ଼ୀ ବାଧହୋଇ ପୁଣି ସେଇ ପୁରୁଣା ଡବାଟି ଆଣି ବୁଲା ବିକାଳିକୁ ଦେଇ କହିଲା—"ଆରେ ପୁଅ, ଏଇଟିକୁ ବଦଳ ନେଇ ଦପଟ ଚୁଡ଼ି ଦେବୁ ତ ଦେ, ନହେଲେ ଗୁଲ ଯା, ମୋ ପାଖେ ପଇସାଟିଏ ବି ନାହିଁ ।"

ସେରବାନ ସେହି ଡବାଟି ଦେଖି ବୁଢ଼ୀକୁ କହିଲା— "ମା, ଏଇଟି ତ ଅତି ଦାମିକା ଚିଜ, ସୁନା ମଣିମୁକ୍ତାରେ ତିଆରି; ଖୁବ୍ କମ୍‌ରେ ଏହାର ଦାମ୍ ହଜାରେ ଟଙ୍କା ହେବ । ମୋ ପାଖେ ଏବେ ମାତ୍ର ପାଞ୍ଚଶହ ଟଙ୍କା ଅଛି । ଏଣୁ ମୁଁ କେମିତି ଏଇଟା କିଣିବି କୁହ ?"

ତିନ ପୁରୁଷ ଆଗେ ବୁଢ଼ୀଘରର ଅବସ୍ଥା ଖୁବ୍ ଭଲଥିଲା । ସେଇକାଳରୁ ଏଇ ଡବାଟି ଅଯତ୍ନରେ ଭଙ୍ଗା କାଠପେଡ଼ିରେ ଅବହେଳାରେ ପଡ଼ିଛି । ସେଥିରେ ଧୂଳିମାଟି କଳଙ୍କି ଲାଗିଯାଇଛି । ଏଣୁ ବୁଢ଼ୀ ଭାବିଥିଲା ଏଇଟା ପିତଳ ତିଆରି ଡବା । କିନ୍ତୁ ସେରବାନ ମୁହଁରୁ ଏପରି ଏକଥା ଶୁଣି ବୁଢ଼ୀ କହିଲା—"ଅଳ୍ପ ସମୟ ପୂର୍ବରୁ ଆଉ ଜଣେ ବୁଲା ବିକାଳୀ ଆସିଥିଲା, ସେ

କହିଗଲି, ଏହାର ଦାମ୍ ଦେଡ଼ ପଇସା । ଅଥଚ ଏଇ ଅଳ୍ପ ସମୟ ମଧ୍ୟରେ ଯଦି ଡବାଟା ସୁନା ପାଲଟି ଏତେ ଦାମିକା ହୋଇଥାଏ, ତାହେଲେ ତାହା ତୁମ ହାତ ଲାଗିବାରୁ ହୋଇଛି । ଏଣୁ ତୁମ ପାଖେ ଯାହା ଅଛି ମୋ ପାଇଁ ଯଥେଷ୍ଟ, ମୁଁ ତା ଠାରୁ ଆଉ ବେଶି କିଛି ଚାହୁଁ ନାହିଁ ।''

ସେରବାନ ଅଣ୍ଟାରେ ବାନ୍ଧିଥିବା ଟାଙ୍କିଆ ଖୋଲି ବୁଢ଼ୀକୁ ପାଞ୍ଚଶହ ଟଙ୍କା ଗଣିଦେଲା । ବୁଢ଼ୀଠାରୁ ଡବାଟି କିଣି ନେଇ ଚୁଡ଼ି ଦପଟ ଝିଅ ହାତରେ ପିନ୍ଧାଇ ଦେଲା, ତା'ପରେ ସିଧା ଯାଇ ନଈ ଘାଟରେ ହାଜର ହୋଇଗଲା ।

ଏଣେ ସେରବା ଲୋଭ ସମ୍ଭାଳି ନପାରି ଏଆଡ଼େ ସେଆଡ଼େ ବୁଲିବୁଲି କରି ପୁଣି ଆସି ବୁଢ଼ୀ ଦୁଆରେ ପହଞ୍ଚିଲା । ବୁଢ଼ୀକୁ ଡାକି କହିଲା — ''ଆଛୁ ମାଉସୀ,ଆଉ ଦୁଇ ପଇସା ପଛକେ ବେଶି ଦେଉଛି, ଡବାଟି ମୋତେ ଦିଅ ।''

ବୁଢ଼ୀ କହିଲା—''ସେ ଡବାଟି ତ ଆଉ ମୋ ପାଖେ ନାହିଁ । ଏଇ ତୁମରି ସଙ୍ଗେ ଆଉ ଜଣେ ବୁଲା ବକାଳୀକୁ ମୁଁ ପାଞ୍ଚଶହ ଟଙ୍କାରେ ତାକୁ ବିକି ଦେଲି ।''

ଆଉ ଜଣେ ବୁଲା ବକାଳୀ ବିଷୟ ଶୁଣି ସେରବା ଚମକି ପଡ଼ିଲା । ସିଏ ଯେ ସେରବାନ ଛଡ଼ା ଆଉ କେହି ନୁହଁ, ଏହା ବୁଝିବାକୁ ଡ଼େରି ଲାଗିଲା ନାହିଁ । ଆଉ ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ସେ 'ହାୟ' 'ହାୟ' କରି କରି କୂଳ ଆଡ଼କୁ ଧାଇଁଲା । ଭାବୁଥାଏ, ଏବେ ବି ଯଦି ସେରବାନକୁ ବାଟରେ ଧରିବ ତେବେ ପାଞ୍ଚଶହ ଟଙ୍କା ଦେଇ ତାଠାରୁ କୌଣସି ମତେ ଡବାଟି କିଣି-ନେବ । ଏଇଟା ପ୍ରକୃତରେ ସେ ପାଇବା କଥା; ଆଗରୁ ସେ ତାକୁ ଦେଖି ଦର କଷା କଷି କରି ଯାଇଥିଲା ।

ନଈ କୂଳରେ ଗୋଟିଏ ମାତ୍ର ଡଙ୍ଗାଥାଏ ଲୋକଙ୍କୁ ପାରି ଉତ୍ତର କରିବା ପାଇଁ । ସେରବା ଆସି ଦେଖିଲାବେଳକୁ ସେରବାନକୁ ନେଇ ଡଙ୍ଗାଟି ମଝି-ନଈରେ ହେଲାଣି । 'ଡ଼ଙ୍ଗାଆଣ' 'ଡ଼ଙ୍ଗାଆଣ' ବୋଲି ପାଗଳଙ୍କ ଭଳି ସେ

ଚତ୍କାର କର୍ କର୍ ନଈ କୂଳକୁ ଧାଇଁ ଆସୁ ଆସୁ ତା ଗୋଡ଼ ଖସିଗଲେ, ଏକାଥରକେ ସେ ଗଣ୍ତରେ ପଡ଼ିଗଲ । ତାକୁ ପହଁରା ଜଣାନାହିଁ । ନଈର ପ୍ରଖର ସୁଅରେ ସେ କୁଆଡ଼େ ଭସିଗଲା; ତାର ଆଉ ଚିହ୍ନ ବର୍ଣ୍ଣ ରହିଲାନାହିଁ । କେହି ତାହା ଜାଣି ମଧ୍ୟ ପାରିଲେନାହିଁ । ସେଦିବାନ ବା ମାଟି କେହି ତା ଡ଼ାକ ଶୁଣି ପାରିଲେ ନାହିଁ ।

କେତେଦିନ ପରେ ନଈ ଘାଟଠାରୁ ବହୁ ଦୂରରେ କେଉଟମାନେ ମାଛ ଧରୁଥିବା ବେଳେ ଜାଲରେ ଗୋଟାଏ ମଲା ମଣିଷର ଶବ ପଡ଼ିଲା । ପଚି ଫୁଲି ସେଥିରୁ ଦୁର୍ଗନ୍ଧ ବାହାରୁଥାଏ । କେଉଟମାନେ ସେଇଟାକୁ ନେଇ କଣ୍ଟା ବଣରେ ଫିଙ୍ଗି ଦେଲେ । ବିଲୁଆ କୁକୁର ତାର ମାଂସକୁ ଝୁଣିକରି ଖାଇଲେ ।

ଏମିତି ଲୋଭରୁ ଲୋକଙ୍କୁ ଠକାଇବାକୁ ଯାଇ ମେଘରିବା ମଲା । ଆଉ ଲୋଭ ନ କରୁଥିବା ବୂଲା ବକାଳି ସେଦିବାନ ଡବାଟିକୁ ବିକି ବହୁତ ଟଙ୍କା ଲାଭକଲା ଓ ସୁଖରେ ସମୟ କଟାଇଲା ।

( ପଞ୍ଜାବ )

●

# ସୁସ୍ଥ ହେବାର ଉପାୟ

କୃଷୀ ବୁଢ଼ାଟିଏ । ତାର ଗୋଟିଏ ବୋଲି ପୁଅ । ବାପ ପୁଅ ଦୁହେଁ କୃଷିକାମ କରି ଖୁସିରେ ଥାନ୍ତି । ବୁଢ଼ା ପୁଅକୁ ବାହାଦେଇ ଘରକୁ ବୋହୂଟିଏ ଆଣିଲା । ଭାବିଲା, ବୋହୂ ଗୃହ କାମରେ ସାହାଯ୍ୟ କରିବ । ମାତ୍ର ବୋହୂଟି ଥିଲା ଖୁବ୍ ଦୁଷ୍ଟ । ଯେତେବେଳେ ଗହ୍ମର ବିଲରେ ବହୁତ କାମ ପଡ଼େ, ସେତେବେଳେ ଦେହ ଖରାପ ହୋଇଛି ବୋଲି ସେ ବାହାନା ଆରମ୍ଭ କରି-ଦିଏ । ଆଷାଢ଼, ଶ୍ରାବଣ ମାସ ହେଲେ ଘରର ସମସ୍ତେ କ୍ଷେତକୁ କାମ କରି-ବାକୁ ଯାନ୍ତି; ମାତ୍ର ବୋହୂର ସେତିକିବେଳ ଖୁବ୍ ଜରଜ ହୋଇଯାଏ । ସେ

ଏକୁଟିଆ ଘରେ ର ହ । ଯଦି ଭାତ ବଳ ନଥାଏ, ତେବେ ସେ ନିଜପାଇଁ ଭାତ ରାନ୍ଧେ । ଆରା ରେ ଖାଏ । ଘର ଲୋକେ ସମ ସ୍ତ ଭାବନ୍ତି, ତା ଦେହ ଖରାପ । କେହି ତାହାର ବାହାନାକୁ ବୁଝିପାରନ୍ତି ନାହିଁ ।

ସବୁବେଳେ ବୋହୂର ଦେହ ଖରାପ ହେଉଥିବାରୁ ଶ୍ୱଶୁର ବିଶେଷ ଚିନ୍ତିତ । ହଠାତ ସେ ସ୍ଥିର କଲେ, ବଇଦଙ୍କୁ ଡ଼କାଇ ବୋହୂ ପାଇଁ ଔଷଧ ତିଆରି କରାଇବେ । ଯଦି ସେଥିରେ କିଛି ଉପକାର ନହେଲା, ତେବେ ବୋହୂକୁ ବାପଘରକୁ ପଠାଇଦେବେ । ଆଉ ବିଳମ୍ବ ନକରି ସେ ଦୁଇଜଣ ବଇଦଙ୍କୁ ଘରକୁ ଡ଼କାଇଲେ । ସେମାନେ କହିଲେ, ' ବୋହୂର ଯାହା ହେଉଛି ସବୁକଥା ଠିକଣାରୁ ପ ବୁଝିସୁଝି ଔଷଧ କରିବୁ, ଯେମିତି କେହି ପରେ ଆମକୁ ଦୋଷ ନ ଦିଅନ୍ତି ।''

ଶ୍ୱଶୁର ସେଥିରେ କାହିଁକି ବା ଅରାଜି ହେବେ ? ବଇଦ ଦୁହେଁ ବୋହୂକୁ ପରୀକ୍ଷା କଲେ । ତାକୁ ନାନାକଥା ପଚାରି ବୁଝିଲେ । ଦୁହେଁ ଅବସ୍ଥା ବୋହୂର ବୁଝି ମନେ ମନେ ହସିଲେ । ଶ୍ୱଶୁର ପଚାରିଲେ— "ବୋହୂର କି ବେମାରି ହୋଇଛି ଠଉରାଇ ପାରିଲେ ତ ?'' ବଇଦ ଦୁହେଁ କହିଲେ— "ହଁ, ଆଜ୍ଞା, ଏଇ ରୋଗଟା ଖୁବ୍ କଠିନ, ଏଥିପାଇଁ ଔଷଧ ଦରକାର ।''

ଶ୍ୱଶୁର କହିଲେ—"ଆଚ୍ଛା ଏଥିପାଇଁ ତୁମ ଔଷଧ ଆଣିବ ନା ତୁମ କହିବା ମତେ ଏଠି ତିଆରି ହେବ । ଯାହା ଦରକାର ମତେ ଠିକ୍‌କରି କୁହ ।' ଏ ସବୁ କଥାବାର୍ତ୍ତା ବୋହୂ ଆଗରେ ଚାଲିଥାଏ । ବଇଦ ଦୁହେଁ କହିଲେ— "ଆପଣ ଯାହା ଚାହାନ୍ତି ତାହା କରାଯିବ; ମାତ୍ର ଔଷଧ ହେବା ପୂର୍ବରୁ ଆମକୁ କିଛି ମନ୍ତ୍ର ପଢ଼ିବାକୁ ପଡ଼ିବ ।''

ଶ୍ୱଶୁର କହିଲେ—"ବୋହୂର ଦେହ ଭଲ କରାଇବା ଲାଗି ତୁମେ ଯାହା କରୁଛ କର । ମୋର କିଛି ଆପତ୍ତି ନାହିଁ । ନିଜେ ଯାହା ମନ୍ତ୍ର ବୋଲିବ ତ ବୋଲ, ତା'ପରେ ଔଷଧ ତିଆରି କରିବାକୁ ଯାହା ଦରକାର, ତାହା ଆଜଠୁ ଯୋଗାଡ଼ କର । ମୁଁ ତ ବଡ଼ ଅସୁବିଧାରେ ପଡ଼ୁଛି । ବେମାରିଆ ବୋହୂଟାକୁ ବାନ୍ଧିହୋଇ ଏକୁଟିଆ ଘରେ ଛାଡ଼ିଯିବାକୁ ପଡ଼ୁଛି । ଏପରି କରିବାଟା ମୋତେ

ଭଲ ଲାଗୁନ । ତାକୁ ଦେଖାଶୁଣା କରିବାକୁ ବା ଲୋକ କାହାନ୍ତି ?”

ବଇଦ ଦୁହେଁ କହିଲେ—ତମେ କିଛି ଚିନ୍ତା କରନାହିଁ । ଆମେ ସବୁ ଠିକ୍ କରିଦେବୁ ।” ଏହା କହି ସେମାନେ ଶ୍ୱଶୁରଙ୍କ ସହିତ ବାହାରକୁ ଆସିଲେ । ଶ୍ୱଶୁରଙ୍କୁ କହିଲେ—“ବୋହୂଟାର ସୁସ୍ଥି ହେବା ଛଡ଼ା ଅନ୍ୟ କୌଣସି ରୋଗ ନାହିଁ । ଯାହା ହେଉ ଆମକୁ ଏହା ଭଲ କରିଦେବାକୁ ଔଷଧ ଜଣା । ଆମେ ତାର ବ୍ୟବସ୍ଥା କରିବାକୁ ଯାଉଛୁ ।”

ଏହାକହି ବଇଦ ଦୁହେଁ ଜଙ୍ଗଲକୁ ଗଲେ । ଜଙ୍ଗଲରୁ ଦୁଇଟି ଲାଉ-ଗଛର ଚେର ଖୋଳିଲେ । ସନ୍ଧ୍ୟା ବେଳକୁ ସେହି ଲୋକ ଘରକୁ ଯାଇ ତାକୁ କହିଲେ—“ଆମେ ଔଷଧ ପାଇଗଲୁ । କାଲି ବଡ଼ ସକାଳୁ ତୁମ ପରିବାରର ସମସ୍ତଙ୍କୁ ରୋଗିଣା ବୋହୂକୁ ନେଇ ଗାଁ ବାହାର ସଡ଼କ ଆର ପାଖକୁ ଯିବାକୁ ହେବ । ରୋଗିଣା ବୋହୂକୁ ଔଷଧ ଦିଆଯାଇ ଚିକିତ୍ସା କରାହେବ ।”

ପରଦିନ କେହି ଉଠିବା ଆଗରୁ ବଇଦ ଦୁହେଁ ସେଇ ଚେରକୁ ନେଇ ଗାଁ ସଡ଼କ ଆରପଟେ ରଖିଦେଲେ । ତା’ପରେ ଯାଇ ସେଇ ରୋଗିଣା ବୋହୂ ଘରର ସମସ୍ତଙ୍କୁ ଡ଼ାକି ଉଠାଇଲେ । ସେମାନଙ୍କୁ ମାଠିଆଏ ପାଣି, କିଛି ସିନ୍ଦୂର, ବସିବାପାଇଁ ପୁରୁଣା ବସ୍ତଣାଟିଏ ନେଇ ଚେର ଥୋଇଥିବା ଜାଗାକୁ ଯିବାକୁ କହିଲେ ।

ବଇଦଙ୍କ କଥା ଅନୁସାରେ ସମସ୍ତେ ସେଇ ସବୁ ଜିନିଷ ନେଇ ସେଇ ଜାଗାରେ ପହଞ୍ଚିଲେ । ବଇଦ ରୋଗିଣୀକୁ ପୂର୍ବ ଆଡ଼କୁ ମୁହଁ କରାଇ ବସ୍ତଣା ଉପରେ ବସାଇଲେ । ତା’ର ମୁଣ୍ଡଠାରୁ ପାଦଯାଏ ସିନ୍ଦୂରରେ ରଙ୍ଗେଇ ଦେଲେ । ସେହି ଚେର ଦୁଇଟିକୁ ତା ବେକର ଦୁଇ ପାଖରେ ବାନ୍ଧିଦେଲେ । ତା’ପରେ ତାକୁ ଠିଆହେବାକୁ କହିଲେ । ବୋହୂ ଉଠି ଠିଆହେଲା । ବଇଦ କହିଲେ—“ଏଥର ତୋତେ ଗାଁ ସଡ଼କରେ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ତିନ ମାଇଲ ବାଟ ତିନଥର ଯା’ଆସ କରିବାକୁ ହେବ । ଏଇଆ କଲେ ରୋଗର ସବୁ ପ୍ରଭାବ ଦୂର ହୋଇଯିବ ।”

ବୋହୂଟା ଗାଁ ସଡ଼କରେ ବୁଲିବାକୁ ଆରମ୍ଭ କଲା । ତାକୁ ଏପରି

ଅବସ୍ଥାରେ ଦେଖି ଗାଁ ଲୋକ ହସିଲେ । ଗାଁ ପିଲାଏ ତା ପଛେ ପଛେ ଦୌଡ଼ିଲେ । କେହି କେହି ତା ଉପରକୁ ଗୋଡ଼ ଖପର ସବୁ ଫୋପାଡ଼ିଲେ । ଖୁସିରେ ପାଟିକଲେ ବଇଦ ଦୁହେଁ ବୋହୂକୁ କହୁଥାନ୍ତି— "ଦେହ ଭଲ ନ ଲାଗିବା ପର୍ଯ୍ୟନ୍ତ ବେକର ବନ୍ଧା ହୋଇଥିବା ଚେରକୁ ଖୋଲିବନାହିଁ ।"

ବୋହୂ ସଡ଼କ ଉପରେ ଦୁଇଥର ଯା'ଆସ କଲା, ତାକୁ ଦେଖି ଲୋକେ ହସୁଥିବାରୁ ତାକୁ ଖୁବ୍ ଲାଜ ଲାଗୁଥାଏ । ବାଧ୍ୟହୋଇ ସେ ବେକରେ ବନ୍ଧା ହୋଇଥିବା ଚେରକୁ ଖୋଲି ଫିଙ୍ଗିଦେଲା ଓ ଘର ଆଡ଼କୁ ପଳାଇଲା । ଏହା ଦେଖି ଲୋକେ ଆହୁରି ହସିଲେ ଓ ପଛେ ପଛେ ତା' ଘରେ ଯାଏ ଆସିଲେ । ବଇଦ ସେଇଠି ବସିଥିଲେ । ବୋହୂକୁ ଦେଖି ପଚାରିଲେ— "ତତେ ଦିଆ-ହୋଇଥିବା ଔଷଧକୁ କାହିଁକି ବେକରୁ ଓହ୍ଲାଇ ଫିଙ୍ଗିଦେଲୁ ? କଣ ଦେହ ସମ୍ପୂର୍ଣ୍ଣ ଭଲ ହୋଇଗଲା ?" ଏହାର ଉତ୍ତରରେ ସ୍ତ୍ରୀ ଲୋକଟି କେବଳ ଅଳ୍ପ ହସିଲା । ବଇଦ ଦୁହେଁ ତାକୁ ସାବଧାନ କରାଇଦେବାକୁ କହିଲେ — "ପୁଣି ଯଦି ଏଇ ବେମାରି ହୁଏ, ତେବେ ଯେତେ ଏଇ ଭଳି କରିବାକୁ ହେବ ।"

ସେହି ଦିନଠୁ ବୋହୂଟାର ରୋଗ ପୂରାପୂରି ଭଲ ହୋଇଗଲା । ତାକୁ ଯେଉଁ କାମ ଦିଆଯାଉଥିଲା, ମନଲାଗାଇ କଲା ।



## ସାଧବ ଝିଅ

ସାଧବଟିଏ । ସେଇ ରାଇଜରେ ତାଙ୍କ ଭଳି ଧନୀ କେହି ନଥିଲେ । ରାଜାଘର ପରି ଘରଦୁଆର । ଦୂରଦୂରାନ୍ତକୁ ତାଙ୍କ ବୋଇତ ବେପାର କରି-ବାକୁ ଯାଏ, ଧନ ରତ୍ନ ନେଇ ଫେରେ । ସାଧବର ଗୋଟିଏ ଝିଅ, ରୂପରେ ଗୁଣରେ ଏକକୁ ଆରକ ବଳନ୍ତି । ଦିନେ ଗୃହଭଉଣୀ ବଗିଚାରେ ବୁଲୁଥିଲେ ।

ଟିକିଏ ହାଲଆ ଲାଗିବାରୁ ଗଛମୂଳରେ ବସି ଖୁସିରେ ଗପସପ ହେଲେ । ଏଣୁ ତେଣୁ କଥାବାର୍ତ୍ତା ହେଉ ହେଉ ସେମାନଙ୍କ ବାହାଘର କଥା ପଡ଼ିଲା । କଥା ପ୍ରସଙ୍ଗରେ ବଡ଼ ଭଉଣୀ ପଚାରିଲା—"ଆଚ୍ଛା କହିଲ ଦେଖି, ବାହାହେଲାପରେ କିଏ କ'ଣ କରିବ ?"

ଦ୍ୱିତୀୟ ଭଉଣୀ କହିଲା—"ମୁଁ ମୋ ସ୍ୱାମୀ କଥା ମାନି ଚଳିବ ।'

ତୃତୀୟଟି କହିଲା—"ମୁଁ ଯେମିତି ଶାଶୁ ଶ୍ୱଶୁରଙ୍କ କଥା ବୁଝି ସେମାନଙ୍କୁ ଖୁସିକରିବ, ସେମିତି ମୋ ସ୍ୱାମୀ କଥା ମଧ୍ୟ ମାନି ଚଳିବ । ତା' ହେଲେ ମୋ ଦିନକାଳ ଖୁସିରେ କଟିବ ।"

ବଡ଼ ଭଉଣୀ କହିଲା—"ମୁଁ ମୋ ବୋଉ କଥା ମାନିବ । ସେ ଯାହା କହିବ, ଶାଶୁଘରେ ସେଇଆ କରିବ ।"

ସବା ସାନ ଭଉଣୀଟିର ବୟସ ବେଶି ନୁହେଁ । ତା' ନାଁ ଜୟଶ୍ରୀ । ବାହାଘର ବିଷୟରେ କିଛି ନକହି ଚୁପ୍ ରହିଲା । ସେ ଚୁପ୍ ରହିବାରୁ ବଡ଼ଭଉଣୀ ତାକୁ ଦେଖାଇ କହିଲା— "ଜୟା, ତୁ ତ କିଛି କହିଲୁ ନାହିଁ । ଶାଶୁଘରେ କେମିତି ଚଳିବୁ କହୁନୁ ।"

ଜୟଶ୍ରୀ ଟିକିଏ ଗମ୍ଭୀରହୋଇ କହିଲା — "ଶାଶୁଘରେ ମୁଁ ସମସ୍ତଙ୍କୁ ହାତମୁଠାରେ ରଖିବ । ମୋ କଥାରେ ସମସ୍ତଙ୍କୁ ଉଠ୍ ବସ୍ କରାଇବ ।"

ଏହା ଶୁଣି ତିନି ଭଉଣୀଯାକ ଏକା ସଙ୍ଗେ କହିଲେ — "ହାଇଲୋ, ଏମିତି କେଉଁଠି ହେଲାଣି ନା ହୁଏ ?"

ଜୟଶ୍ରୀ ମୁହଁରେ ହସ ଫୁଟାଇ କହିଲା — "ଶାଶୁଘରେ ମୁଁ ରାଣୀଭଳି ରହିବ । ଏମିତି ଯଦି ନ ଚଳିବି, ତେବେ ମୋ ନାଁ ଜୟଶ୍ରୀ ନୁହେଁ ।"

ତିନି ଭଉଣୀଯାକ ତା ଆଡ଼କୁ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ ।

ଯୋଗକୁ ସେତିକବେଳେ ରାଜକୁମାର ବନରୁ ଫେରୁ ସେହି ବଗିଚାକୁ ବୁଲି ଆସିଥିଲେ ।

ସେ ପାଖରେ ଥିବା ଗୋଟିଏ ବୁଦା ଆଡୁଆଳରେ ରହି ସୁବରଭଉଣୀଙ୍କ କଥା ଶୁଣିପାରିଲେ । ଜୟଶ୍ରୀ କଥା ଶୁଣି ତାଙ୍କୁ ଚାଟକା ଲାଗିଲା । ରାଜା ଲୁଚି-କରି ଦେଖିଲେ, ଝିଅଟି ଦେଖିବାକୁ ଭାରି ସୁନ୍ଦର । ହେଲେ ବି ତାର ପୁଣି ଏତେ ଦମାକ୍ । ଭାବିଲେ, ଏଇ ଝିଅଟାକୁ ସେ ବାହା ହେବେ ଓ ତାକୁ ଠିକ୍ ଜବତ୍ କରିବେ ।

ରାଜକୁମାର ଉଆସକୁ ଫେରିଲେ । ଚୁପ୍ ଚାପ୍ ଯାଇ ମୂଷାମାଟି ସଣ୍ଟେଣ, ବଳେଇ ଘୂଅ ଭଣଭଣ ଅନ୍ଧାର ଘରେ ମୁହଁ ମାଡ଼ି ଶୋଇଲେ । ଯିଏ ଯେତେ ଡାକିଲେ ଉଠିଲେ ନାହିଁ । ଶେଷକୁ ରାଜା ଆସି ଡାକିବାରୁ ରାଜକୁମାର କହିଲେ—"ସାଧବ ଘର ସାନ ଝିଅକୁ ଯଦି ମୋତେ ବାହା କରାଇବ, ତେବେ ମୁଁ ଖାଇବି, ନୋହିଲେ ନାହିଁ ।"

ରାଜା ବହୁତ ବୁଝାଇଲେ—କେତେ ବଡ଼ ବଡ଼ ରାଜା ଘରୁ ତ ପ୍ରସ୍ତାବ ଆସୁଛି—ସାଧବ ଝିଅ ପାଇଁ କାହିଁକି ତୋ ମନ ବଳୁଛି ? ମାତ୍ର ପୁଅର ସେଇ ଏକ ଜିଦ୍ । ଶେଷକୁ ରାଜା ବାଧ୍ୟ ହୋଇ ପୁଅ କଥାରେ ହଁ ଭରିଲେ ।

ଶୁଭଦିନ ଦେଖି ଜୟଶ୍ରୀ ସଙ୍ଗେ ରଜାପୁଅର ବିବାହ ହେଲା ।

ବାହାଘର ପରେ ବିଜୟ ରାୟ ହସିକରି ଜୟଶ୍ରୀକୁ କହିଲେ— "ତୁମେ କହୁଥିଲ ନା ଶାଶୁଘରେ ସମସ୍ତଙ୍କୁ ହାତ ମୁଠାରେ ରଖି ବସ୍ ଉଠ୍ କରିବ ?" ଏଠି ସେ ଧାରୁ ଚଳିବନାହିଁ । ତୁମ ବଡ଼ପଣ ଭାଙ୍ଗିଦେବାକୁ ମୁଁ ତୁମକୁ ବାହା ହୋଇଛି । ତୁମକୁ ମୁଁ ଏଠି ନଶ୍ଚେ ଦାସୀ ଭଳି ରଖିବି ।"

ଜୟଶ୍ରୀ ଭାରି ବୁଦ୍ଧିକ୍ । ଏହା ଶୁଣି ସେ ପ୍ରଥମେ ଚମକି ପଡ଼ିଲା; ମାତ୍ର ବିଚଳିତ ନହୋଇ ନମ୍ରଭାବେ କହିଲା—"ନା, ନା । ମୁଁ ଏଠି କାହାକୁ ହାତ ମୁଠାରେ ରଖିବାକୁ ଚାହୁଁନି । ଦାସୀ ଭଳି ମୁଁ ଆପଣଙ୍କ ଆଦେଶ ମାନି ଚଳିବି; ମାତ୍ର ଗୋଟିଏ ସର୍ତ୍ତରେ । ମୋର ଗୋଟିଏ ମାଗୁଣି ଅଛି । ଯଦି ରକ୍ଷା କରିବ କହିବି ।"

ବିଜୟ ରାୟ କହିଲେ—"ତୁମର ପୁଣି ସର୍ତ୍ତ କଣ ? ଆଚ୍ଛା ହଉ, କୁହ,

ମୁଁ ତା' ନଷ୍ଟସ୍ୱ ପୂରଣ କରିବ ।"

ଜୟଶ୍ରୀ କହିଲା—"ଜୟଗଡ଼ର ରାଜକୁମାରୀ ଯେମିତି ଖୁବ୍ ଚତୁର, ସେମିତି ସୁନ୍ଦର । ତାକୁ ତୁମେ ଜିତିପାରିଲେ ଜାଣିବ, ତୁମଠୁଁ ଧୀର ଓ ବୁଦ୍ଧିଆ ଆଉ କେହି ନାହିଁ ।"

ବିଜୟ ରାୟ ହସି ହସି କହିଲେ—"ଇଏ ବା କିବା କଥାଟେ ! ମୁଁ ଏହା କରିଦେଲେ ତୁମେ ସାରା ଜୀବନ ମୋ ଆଦେଶ ମାନି ଚଳିବ ତ ?"

ଜୟଶ୍ରୀ କହିଲା—"ନିଶ୍ଚୟ; ମାତ୍ର ଯଦି ଆପଣ ରାଜକୁମାରୀଙ୍କୁ ବୁଦ୍ଧିରେ ହରାଇ ନ ପାରନ୍ତି, ତେବେ ଆପଣଙ୍କୁ ମୋ ଆଦେଶ ମାନିବାକୁ ପଡ଼ିବ । ଏଥିରେ ଆପଣ ରାଜି ତ ?"

ରାଜକୁମାର ଏଥିରେ ରାଜି ହୋଇଗଲେ । ଆଉ କାଳବିଳମ୍ବ ନକରି ସେ ତା' ପରଦିନ ଜୟଗଡ଼ ଆଡ଼କୁ ଘୋଡ଼ା କସି ଦେଲେ ।

ଜୟଗଡ଼ ବହୁତ ଦୂର । କେତେଦୂର ପରେ ରାଜକୁମାର ଜୟଗଡ଼ରେ ପହଞ୍ଚିଲେ । ସେହି ଦୁର୍ଗର ପାଚେରି, ଘର ସବୁ କଳା ରଙ୍ଗର । ତା ଉପରେ ଶହ ଶହ କଳା ପତାକା ଉଡୁଥାଏ । କେବଳ ଗଡ଼ ମଝିରେ ଥିବା ଗୋଟିଏ କୋଠା ଉପରେ ଧଳା ରଙ୍ଗର ପତାକାଟିଏ ଉଡୁଥାଏ । ସେଇ ଘରଟି ହେଉଛି, ରାଜକୁମାରୀ ରୂପବତୀଙ୍କ ମହଲ । ସେ ଦେଖିବାକୁ ଯେମିତି ଅପୂର୍ବ ରୂପବତୀ, ସେହିପରି ଗୁଣବତୀ । ଯିଏ ତାଙ୍କୁ ବିଦ୍ୟା, ବୁଦ୍ଧିରେ ହରାଇବ, ସିଏ ତାଙ୍କୁ ବିଭାହେବ । କେହି ତାଙ୍କୁ ଜିତି ପାରୁନଥିଲେ । ଏଣୁ ସେ ଯେପର୍ଯ୍ୟନ୍ତ ବି ବାହାହୋଇ ନ ଥାନ୍ତି । ଯିଏ ଆସେ ସେ ତାଙ୍କ ପାଖେ ହାରେ । ସେଇମାନଙ୍କ ନାଆଁରେ ଗଡ଼ରେ ଶହ ଶହ କଳା ପତାକା ଉଡୁଛି । ରାଜକୁମାରୀଙ୍କ ପଣ ହେଉଛି, ଯିଏ ତାଙ୍କ ପ୍ରଶ୍ନର ଉତ୍ତର ଦେଇ ନ ପାରିବ, ସିଏ ସେଇ କଳା-ଦୁର୍ଗରେ ମୂଲିଆ ହୋଇ ରହିବ, ତା ନାଁରେ ପାଚେରିରେ କଳା ପତାକା ଉଡ଼ିବ ।

ରାଜକୁମାର ସେଠାରେ ପହଞ୍ଚି ଏସବୁ ଶୁଣିଲେ । ସେଠିକାର ଲୋକ

କହିଲେ—"ବାବୁ, ରାଜକୁମାରୀଙ୍କୁ ବାହାଦେବା ଆଶାରେ କାହିଁକି ଜୀବନଟା ନଷ୍ଟ କରିବ ? ସେଠିକି ମୋଟେ ଯାଅନା । ଭଲ ଗତ ଅଛି ତ ଘରକୁ ଫେରିଯାଅ ।"

ରାଜକୁମାର ଏ ବିଷୟରେ କାନ ନଦେଇ ଗଡ଼ର ଫାଟକ ପାଖେ ଯାଇ ପହଞ୍ଚିଲେ । ଫାଟକର ପହରିବାଲା ତାଙ୍କୁ ସଲାମ କଲା । ରାଜକୁମାର ଆସିବାର କାରଣ କହିବାରୁ ରୂପବତୀଙ୍କ ମହଲକୁ ସେଇ ଖବର ପଠାଗଲା । ମନ୍ତ୍ରୀ ଆସିଲେ; ରାଜକୁମାରଙ୍କୁ ସ୍ୱାଗତ ଜଣାଇ ତାଙ୍କୁ ରାଜକୁମାରୀଙ୍କ ମହଲକୁ ପଠାଇଦେଲେ ।

ରାଜକୁମାରୀ ଗୋଟିଏ ପର୍ଦ୍ଦା ଆଢ଼ୁଆଳରେ ବସିଥାନ୍ତି । ଏହିପରି ଭାବେ ବିଜୟ ରାୟଙ୍କ ସହିତ ତାଙ୍କର କଥାବାର୍ତ୍ତା ଆରମ୍ଭ ହେଲା । ଅଳ୍ପ ହସି ହସି କହିଲେ—"କୁମାର ! ଏବେ ବି ସମୟ ଅଛି । ସବୁ କଥା ବିଚାରି ଏଠାକୁ ଆସିଛ ତ ? ରୂପବତୀ ପ୍ରକୃତ ବୁଦ୍ଧିମାନ୍ ଓ ଚତୁର ଲୋକକୁହିଁ ବିବାହ କରିବ । ମୋ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦେଇପାରିଲେ ଏଇ ଗଡ଼ ଓ ରାଜ୍ୟ ହେବ ତୁମର; ମାତ୍ର ଠିକ୍ ଉତ୍ତର ଦେଇ ନ ପାରିଲେ ମୋ ଗଡ଼ରେ ତୁମକୁ ସାରା ଜୀବନ ମଜୁରିଆ ହେବାକୁ ପଡ଼ିବ । ଏଇ କଳା ପତାକାକୁ ଦେଖୁଛ ତ ? ଏମିତି ଗୋଟିଏ କଳା ପତାକା ତୁମ ନାଁରେ ପାଚେରୀ ଉପରେ ଉଡ଼ିବ । ଏଥିରେ ତୁମେ ରାଜି ତ ?

ବିଜୟ ରାୟ ନିର୍ଭୀକ ଭାବେ କହିଲେ—"ହଁ ମୁଁ ଏସବୁ ଜାଣି ଏଠାକୁ ଆସିଛି । ସ୍ତ୍ରୀ ଲୋକଙ୍କ ବୁଦ୍ଧି କେତେ ତା ମୋତେ ଜଣା । ତୁମେ ମୋତେ କି ପ୍ରଶ୍ନ ପଚାରିବ ପଚାର ।"

ରାଜକୁମାରୀ ମନେ ମନେ ବିରକ୍ତ ହୋଇ କହିଲେ—"ବେଶ୍, ଭଲ-କଥା । ଏଥର ତୁମ ବୁଦ୍ଧି ପରଖା ଯାଉ । ଆଚ୍ଛା କୁହ ଦେଖି 'ଏକ କ'ଣ ?' ଏ ହେଉଛି ମୋର ପ୍ରଥମ ପ୍ରଶ୍ନ । ଶୀଘ୍ର ଏହାର ଉତ୍ତର ଦିଅ !"

ରାଜକୁମାର ଏପରି ପ୍ରଶ୍ନ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ଏହାର କ'ଣ ଉତ୍ତର ହେବ, ସେ ଠିକ୍ କରିପାରିଲେନାହିଁ । ଚିନ୍ତିତ ହୋଇ ସେ କହିଲେ —

'ଏକ ! ଏକ ପୁଣି କଣ ! ଏଇଟା କଣ ଗୋଟିଏ ପ୍ରଶ୍ନ ? ଠିକ୍ ପ୍ରଶ୍ନ ପଗ୍ଚରନ୍ତୁ ।'

ରାଜକୁମାରୀ ହସିଉଠିଲେ । ସେ ଦୁଇଥର ତାଳି ବଜାଇବା ମାତ୍ରେ ଗ୍ଚାରି-ଜଣ ସିପାହୀ ଆସି ସେଇ ଘରେ ହାଜର ହୋଇଗଲେ । ରାଜକୁମାରଙ୍କୁ ଦୁଇପଟୁ ଘେରି ଠିଆ ହୋଇଗଲେ ।

ରାଜକୁମାରୀ କହିଲେ, "କୁମାର, ଏହି ପ୍ରଶ୍ନର ଉତ୍ତର ହେଉଛି ଈଶ୍ୱର । ସେ ହେଉଛନ୍ତି ଏକ; ମାତ୍ର ତୁମେ ଏ ଉତ୍ତର ଦେଇପାରିଲନାହିଁ ।'

ଏପରି ସମୟରେ ଗଡ଼ ରୋଷେଇଆ ଆସି ସେଇଠି ପହଞ୍ଚିଲା । ରାଜ-କୁମାରୀଙ୍କୁ ନମସ୍କାର କରି କହିଲା—"ରାଣୀ ସାହେବା, ଗଡ଼ର ଗ୍ଚାରି ପାଞ୍ଚଶହ ଲୋକଙ୍କ ଲାଗି ରୋଷେଇ କରିବାକୁ ହେଉଛି । ଏକୁଟିଆ ମୁଁ ତାହା ପାରୁନ । ମୁଁ ବୁଢ଼ା ହେଲିଣି । ମୋତେ ସାହାଯ୍ୟ କରିବାକୁ ଜଣେ ଲୋକ ଦିଆଯାଉ ।"

ରାଜକୁମାରୀ ବିଜୟ ରାୟଙ୍କୁ ଦେଖାଇ କହିଲେ — "ଏଇ ଲୋକଟାକୁ ନେଇଯାଅ । ଯୁଆ ବୁଢ଼ି ଚୁଲୀ ଲଗାଇବାକୁ ଉପଯୁକ୍ତ ।"

ବିଗ୍ଚରା ବିଜୟ ରାୟ ! ସିପାହୀମାନେ ତାଙ୍କୁ ବାହାରକୁ ଟାଣି ନେଲେ । ତାଙ୍କଠାରୁ ଢାଲ ତରୁଆଲ କାଢିନେଲେ । ତାଙ୍କ ପଗଡ଼ି ଓ କୁର୍ତ୍ତାକୁ କାଢି ଗୋଟାଏ କଣକୁ ଫୋପାଡ଼ି ଦିଆଗଲା । ବନ୍ଦୀଶାଳାରେ କଇଦୀଙ୍କ ଭଳି ପୋଷାକ ତାଙ୍କୁ ପିନ୍ଧାଇ ଦିଆଗଲା । ତାଙ୍କୁ ରୋଷେଇ ଘରର ଚୁଲୀ ଲଗାଇ ରୁଟି ସେକିବାକୁ କୁହାଗଲା ।

ଗ୍ଚହୁଁ ଗ୍ଚହୁଁ ଏକମାସ ବିତିଗଲା । ବିଜୟ ରାୟ ନ ଫେରିବାରୁ ଜୟଶ୍ରୀ ମନରେ ଚିନ୍ତା । ସେ ଭାବିଲା ତାଙ୍କୁ ନିଶ୍ଚେ କିଛି ବିପଦ ପଡ଼ିଛି । ତାରି ଯୋଗୁ ରାଜକୁମାର ବିପଦରେ ପଡ଼ିବେ ଭାବି ତା ମନ ଦୁଃଖ ହେଲା । ସେ ସ୍ଥିର କଲା, ରୂପବତୀକୁ ହରେଇ ରାଜକୁମାରଙ୍କୁ ଉଦ୍ଧାର କରିବ । ରାଜକୁମାରୀର ଦର୍ପ ଭାଙ୍ଗି ଦେବ । ଦିନେ ସେ ଘୋଡ଼ାରେ ବସି ଜୟଗଡ଼ ଗ୍ଚଲିଲା ।

କେତେଦିନ ପରେ ସେ ଯାଇ ସେଇ କଳାଦୁର୍ଗ ପାଖେ ପହଞ୍ଚିଲା ।

ଗୋଟାଏ ଗଛପାଖେ ଘୋଡ଼ାରୁ ଓହ୍ଲାଇ ଆପଣାର ଶାଢ଼ୀ, କାଚ ପ୍ରଭୃତି ବଦଳାଇ ପୁରୁଷ ବେଶ ହେଲା । ପଗଡ଼ି ପ୍ରଭୃତି ପିନ୍ଧିବାରୁ ଠିକ୍ ରାଜକୁମାର ପରି ଦିଶିଲା । ସେହି ବେଶରେ ସେ ଯାଇ ଗଡ଼ର ଫାଟକ ପାଖେ ପହଞ୍ଚିଲା । ପହରାଦାରଙ୍କୁ କହିଲା—"ଯାଅ ରାଜକୁମାରୀଙ୍କି କହିବ, ଜଣେ ରାଜକୁମାର ଆସିଛନ୍ତି, ତାଙ୍କ ଗର୍ବ ଭାଙ୍ଗିଦେବାକୁ । ତାଙ୍କ ବୁଦ୍ଧି କେତେ ସେ ପରୀକ୍ଷା କରିବେ ।"

ପହରାଦାର ଭିତରକୁ ଖବର ପଠାଇଲା । ମନ୍ତ୍ରୀ ଆସି ଏହି ରାଜକୁମାରଙ୍କୁ ରାଜକୁମାରୀଙ୍କ ପାଖକୁ ନେଇଗଲେ । ରାଜକୁମାରୀ ପର୍ଦ୍ଦା ଆଢ଼ୁଆଳରେ ବସି ପ୍ରଶ୍ନ କରିବାକୁ ଲାଗିଲେ । ପଚାରିଲେ "ହେଁ କୁମାର ସାହେବ କହନ୍ତୁ ତ 'ଏକ' କିଏ ?"

ଜୟଶ୍ରୀ ସଙ୍ଗେ ସଙ୍ଗେ ଉତ୍ତର ଦେଲା—"ଏ ଗୋଟାଏ ପ୍ରଶ୍ନ ! 'ଏକ'ତ ହେଉଛନ୍ତି ଭଗବାନ୍ ।"

ରାଜକୁମାରୀ ଟିକିଏ ଆଶ୍ଚର୍ଯ୍ୟ ହେଲା । ସେ ପୁଣି ଦ୍ୱିତୀୟ ପ୍ରଶ୍ନ ପଚାରିଲା—"ଆଚ୍ଛା ଦୁଇ କିଏ ?"

"ସୂର୍ଯ୍ୟ ଓ ଚନ୍ଦ୍ର ।"

"ଆଚ୍ଛା ତିନି କିଏ ?"

ତିନି ହେଉଛି, "ତିନି ଗୁଣ—ସତ୍ତ୍ୱ, ରଜ, ତମ ।" ଜୟଶ୍ରୀ ଦୃଢ଼ଭାବେ ଉତ୍ତର ଦେଲା । ରାଜକୁମାରୀ ବୁଝିପାରିଲା, ଆଜି ପ୍ରକୃତରେ ଜଣେ ବୁଦ୍ଧିମାନ୍ ଚତୁର ଲୋକ ହାବୁଡ଼ରେ ସେ ପଡ଼ିଯାଇଛି । ତାହାଙ୍କୁ ହରବର କରିଦେଲେ ହୁଏତ ତାଙ୍କ ଭୁଲ୍ ହୋଇପାରେ । ଏଥିଆଇଁ ସେ ଶୀଘ୍ର ପୁଣି ସବୁ ପ୍ରଶ୍ନ ପଚାରିବାକୁ ଆରମ୍ଭକଲା ।

ରୂପବତୀ ପଚାରିଲା—"ଗୁରୁ କିଏ ?"

"ଗୁରୁ ହେଉଛି, ବେଦ ।"

"ପାଞ୍ଚ କଣ ?"

"ପାଞ୍ଚ ହେଉଛି, ମହାଭୂତ ।"

"ଆଚ୍ଛା, ଛଅ କଣ ?"

"ଛଅ ହେଉଛି, ଶାସ୍ତ୍ର ।"

"ଆଚ୍ଛା, ସାତ କଣ ?"

"ସାତ ହେଉଛନ୍ତି ସପ୍ତଋଷି ।"

"ଆଠ କଣ ?"

"ଆଠ ହେଉଛି, ଅଷ୍ଟମହାସିଦ୍ଧି ।"

"ନଅ କଣ ?"

"ନବ ଗ୍ରହ ।"

"ଦଶ କଣ ?"

"ଦଶାବତାର ।"

ଏମିତି ରାଜକୁମାରୀ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଯାଉଥାଏ ଏବଂ ଜୟଶ୍ରୀ ଗୋଟିଏ ପରେ ଗୋଟିଏ ଉତ୍ତର ଦେଉଥାଏ । ଏଥର ରୂପବତୀ ଘାବୁରେଇ ଗଲା । ତାର ଭୟହେଲା, କାଳେ ଏଇ ଯୁବକ ତାକୁ ହରାଇଦେବ । ଯୁବକକୁ ହରାଇ ଦେବାର ଆଉ ଆଶା ଦେଖାଯାଉନି । ଶେଷକୁ ସେ ଉତ୍ତର କହିଲା — ରାଜକୁମାର, ଆପଣ ପ୍ରକୃତରେ ବହୁତ ବୁଦ୍ଧିମାନ ମନେ ହେଉଛନ୍ତି । ଆଚ୍ଛା, ଏଗାର କ'ଣ କୁହନ୍ତୁ । ଯଦି କହିଦେବେ ତେବେ ମୁଁ ହାରିଗଲି ବୋଲି ମାନିନେବି ।"

ରାଜକୁମାର ବେଶ ହୋଇଥିବା ଜୟଶ୍ରୀ କହିଲା—"ରାଜକୁମାରୀ ! ଆପଣ ଆପଣା ଏକମାତ୍ର ଜ୍ଞାନୀ ବୋଲି ଅହଙ୍କାର କରିବା ଉଚିତ ନୁହେଁ । ମୁଁ ତୁମର ଏତେଗୁଡ଼ାଏ ପ୍ରଶ୍ନର ଉତ୍ତର ଦେଲି, ତଥାପି ତୁମେ ହାର ମାନିଲନାହିଁ । ହଉ, ଏଇ ଶେଷଥର ତେବେ ତୁମେ ହାରିଲ । ତୁମର ଶେଷ ପ୍ରଶ୍ନର ଉତ୍ତର ହେଉଛି, ଏଗାର ରୁଦ୍ର ।"

ରାଜକୁମାରୀ ହାରିଗଲେ ବୋଲି ମାନିବାକୁ ବାଧ୍ୟହେଲେ । ସେ କହିଲେ —"ରାଜକୁମାର, ବାସ୍ତବିକ୍ ମୋଠାରୁ ଆପଣ ଅଧିକ ବୁଦ୍ଧିମାନ । ମୁଁ ଆପଣଙ୍କୁ ବିବାହ କରିବାଲାଗି ପ୍ରସ୍ତୁତ ।"

ରାଜକୁମାରୀ ତାଙ୍କ ବାପାଙ୍କ ନିକଟକୁ ଏଇ ଖବର ପଠାଇଲେ । ମନ୍ତ୍ରୀ ରାଜାଙ୍କୁ ଏଇ ଖବର ଜଣାଇବାରୁ ରାଜା ଖୁସିହୋଇ ରାଜକୁମାରଙ୍କୁ ଦେଖି-ବାକୁ ଆସିଲେ । ଜୟଶ୍ରୀଙ୍କୁ ରାଜକୁମାର ମନେକରି ତାଙ୍କୁ ଆଶୀର୍ବାଦ କଲେ । ବିବାହ ହେବାର ଲଗ୍ନ ସ୍ଥିରହେଲା ।

ମାତ୍ର ଜୟଶ୍ରୀ ରାଜାଙ୍କୁ କହିଲେ— "ଆଜ୍ଞା, ଏଥିରେ ମୋର ଆପତ୍ତି ନାହିଁ; ମାତ୍ର ଆମ ବଂଶର ବିବାହ ଆମ କୁଳଦେବତାଙ୍କ ଆଗରେ ହୋଇ-ଥାଏ । ଏଣୁ ରାଜକୁମାରୀଙ୍କୁ ମୋ ସହିତ ଆମ ଘରକୁ ଯିବାକୁ ପଡ଼ିବ ।"

ବାଧ୍ୟହୋଇ ରାଜାଙ୍କୁ ତାହା ମାନିବାକୁ ହେଲା । ରାଜକୁମାରୀଙ୍କୁ ନେଇ ରାଜକୁମାର ଦେଶକୁ ଫେରିବା ସ୍ଥିର ହେଲା । ଗଡ଼ରୁ ବିଦାୟ ନେବା ପୂର୍ବରୁ ରାଜକୁମାର (ଜୟଶ୍ରୀ) ଗଡ଼ ଦେଖିବାକୁ ବାହାରିଲେ । ଗଡ଼ର ଗୋଟିଏ ଘର ପାଖେ ପହଞ୍ଚି ଦେଖିଲେ, ତା ସ୍ୱାମୀ ବିଜୟ ସିଂହ ଗୋଟିଏ ଚୂଲୀ ଫୁଙ୍କୁଛନ୍ତି । ତାଙ୍କର ବାଳ ସବୁ ବଢି ଯାଇଥାଏ । କେଉଁ କାଳର ମଇଳା, ଚିରା ଲୁଗା ସେ ପିନ୍ଧିଥାନ୍ତି । ମନ ଦୁଃଖ ମନରେ ମାରି ସେ କାମ କରୁଥାନ୍ତି । ସ୍ୱାମୀଙ୍କର ଏପରି ଅବସ୍ଥା ଦେଖି ଜୟଶ୍ରୀ ମନରେ ଦୁଃଖ ହେଲା । ଜୟଶ୍ରୀ ତାଙ୍କ ନିକଟକୁ ଯାଇ ସଫା ଲୁଗାପଟା ଦେଇ କହିଲେ—"ହଇଓ ବାବୁ, ତୁମ ମଇଳା ଲୁଗା-ପଟା କାଢି ମୋତେ ଦିଅ ଓ ତୁମେ ଏଇ ଭଲ ଲୁଗାପଟା ପିନ୍ଧ । ତୁମେ ପରା ରାଜକୁମାରୀଙ୍କୁ ଜିତିବାକୁ ଆସିଥିଲ ? ଏବେ ତାଙ୍କୁ ନେଇ ନିଜ ଦେଶକୁ ଫେରିଯାଅ । ଏବେ ତୁମକୁ ମୁକ୍ତ ଦିଆଗଲା । ମୁଁ ବି ତୁମରି ଭଳି ତାଙ୍କୁ ହରାଇବାକୁ ଆସିଥିଲି; ମାତ୍ର ତାଙ୍କୁ ବାହା ହେବାକୁ ମୋର ଇଚ୍ଛା ନାହିଁ ।"

ଏଇ ରାଜକୁମାରଙ୍କୁ ବିଜୟ ସିଂହ ଚିହ୍ନି ପାରିଲେନାହିଁ । ନିଜେ ଜିତିଲେ ବି ରାଜକୁମାରଙ୍କୁ ସେ ତାଙ୍କୁ ଦେଇଦେଉଛନ୍ତି । ରାଜକୁମାରୀଙ୍କୁ ସାଙ୍ଗରେ ଧରି ସେ ଖୁବ୍ ଆଡ଼ମ୍ବରରେ ନିଜ ଦେଶକୁ ବାହାରିଲେ ।

ଏଣେ ଜୟଶ୍ରୀ ଆସି ଗଡ଼ରେ ବନ୍ଦୀହୋଇ ଖଟୁଥିବା ତିନି ସ୍ବୟଂବର ରାଜାଙ୍କୁ ଛାଡ଼ିଦେଲା । ସେମାନଙ୍କ ନାଁରେ ଉଡ଼ୁଥିବା କଳା ପତାକାକୁ ଓହ୍ଲାଇ ପକାଇଲା । ତା ଆଦେଶରେ ଗଡ଼ରୁ କଳା ରଙ୍ଗକୁ ଉଡ଼ାଇ ଗେରୁଆ ରଙ୍ଗ କରାଗଲା । ଏହାପରେ ସେ ଗଡ଼ରୁ ବାହାରି ଆପଣାର ପୁରୁଷ ବେଶ ଛାଡ଼ି ପ୍ରକୃତ ଲୁଗାପଟା ପିନ୍ଧିଲା । ଅନ୍ୟ ଗୋଟିଏ ରାସ୍ତାରେ ନିଜ ଦେଶକୁ ଫେରିଲା ।

ବିଜୟ ରାୟ ପହଞ୍ଚିବା ପୂର୍ବରୁ ଜୟଶ୍ରୀ ଆସି ଘରେ ପହଞ୍ଚି ଯାଇଥାଏ । ତିନି ଦିନ ପରେ ଖୁବ୍ ଆଡ଼ମ୍ବରରେ ବିଜୟ ରାୟ ଦେଶକୁ ବାହୁଡ଼ିଲେ । ଜୟଗଡ଼ର ଚତୁରୀ ରାଜକୁମାରୀଙ୍କୁ ସେ ହରାଇ ଫେରୁଥିବାରୁ ଲୋକଙ୍କ ଆନନ୍ଦ କହିଲେ ନ ସରେ । ରାଜଧାନୀରେ ଉତ୍ସବ ଚାଲିଲା । ରାଜାରାଣୀ ପୁଅକୁ ଆନନ୍ଦରେ କୁଣ୍ଢାଇ ପକାଇଲେ । ଏସବୁ ଦେଖି ଜୟଶ୍ରୀ ମନେମନେ ହସୁଥାଏ ।

ରାତି ପାହିଲା । ଲୋକେ ଯେଝା ଘରକୁ ଫେରିଗଲେ । ରାଜକୁମାର ଆପଣା ମହଲକୁ ଗଲେ । ଜୟଶ୍ରୀକୁ ଦେଖି କହିଲେ—"ଦେଖିଲ ତ ତୁମପାଇଁ ମୁଁ ରୂପବତୀକୁ କେବଳ ବୁଦ୍ଧିରେ ଜିତି ନାହିଁ, ତାକୁ ସାଙ୍ଗରେ ବି ନେଇ-ଆସିଛି । ଏଥର ତୁମକୁ ମୋ ଆଦେଶ ଜୀବନ ସାରା ମାନିବାକୁ ହେବ ।"

ଜୟଶ୍ରୀ ଖୁବ୍ ନମ୍ର ଭାବରେ କହିଲା—"ହଁ ହଁ, ଆପଣ ପ୍ରକୃତରେ ଜିତି-ଛନ୍ତି । ମୁଁ ତୁମ ପାଖେ ହାରିଯାଇଛି । ମୋତେ ବି ଆପଣଙ୍କ ଆଦେଶ ମାନିବାକୁ ହେବ । ଆଚ୍ଛା ହେଉ, ଦୟାକରି ଏଇ ପୋଟଳିକୁ ଟିକିଏ ଖୋଲନ୍ତୁ !"

ବିଜୟରାୟ ପୋଟଳିକୁ ଖୋଲିଲେ । ଦେଖିଲେ, ସେଥିରେ ରହିଛି, ସେ ଜୟଗଡ଼ରେ ପିନ୍ଧୁଥିବା ମଇଳା କୋଚଟ ଗୋଟିଏ ଲୁଗା ଓ କାମିଜ । ମୁହଁଟା ମଳିନ ହୋଇଗଲା । ଲାଜରେ ମୁଣ୍ଡ ତଳକୁ ହୋଇଗଲା । ପାଟିରୁ ଟିକିଏ କଥା ବାହାରିଲା ନାହିଁ । କିଛି ସମୟପରେ ସେ କହିଲେ— ତା' ହେଲେ, ରାଜକୁମାରୀକୁ ହରାଇଥିବା ରାଜକୁମାର କିଏ ତୁମେ ?

ଜୟଶ୍ରୀ ହାତଯୋଡ଼ି ହସି ହସି କହିଲେ—"ହଁ ଆଜ୍ଞା, ମୁଁ ଥିଲି ସେଇ

ଛଦ୍ମବେଶୀ ରାଜକୁମାର ।"

ବିଜୟ ରାୟ କହିଲେ — "ଜୟଶ୍ରୀ, ତୁମେ ପ୍ରକୃତରେ ବୁଦ୍ଧିମତୀ । ତୁମର ବୁଦ୍ଧି ସବୁଠାରୁ ଅଧିକ । ତୁମେ ଆମ ସମସ୍ତଙ୍କୁ ଜିତିଗଲ । ଏଥର ମୁଁ ତୁମକଥା ମାନିବ ।"



# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬ | ୧୫ | କଲ | କଲ୍ଲ |
| ୭ | ୨୪ | ଧାଇଁ | ଧାଇଁ |
| ୯ | ୫ | ସରୁ | ସାନ୍ତୁ |
| ୧୦ | ୨୧ | ଲଭ | ଲଭ୍ର |
| ୪୫ | ୧୦ | ପୁଣିଲ | ଶୁଣିଲ |
| ୪୬ | ୧୩ | ନିଷ୍ଟପୁ | ନିଷ୍ଠପୁ |
| ୪୬ | ୧୯ | ବପୁଷ | ବଷପୁ |
| ୬୨ | ୧୫ | ଗେମା | ଭୂମ |
| ୬୩ | ୧ | ପୁଣି | ଶୁଣି |
| ୬୩ | ୧୫ | ଏହା | ଏକା |
| ୬୫ | ୧୨ | ଉତ୍ତମ | ମଧ୍ୟମ |
| ୬୯ | ୧୦ | ଡ଼ାଳେ | ଢ଼ାଳେ |
| ୭୩ | ୧୬ | ଅପେକ୍ଷାରେ | ଆକାଶରେ |
| ୭୫ | ୧୯ | ଘଗରେ | ଗଘରେ |
| ୮୮ | ୧୪ | ଛୁଙ୍କିମା | ଛୁଙ୍କିବା |
| ୯୯ | ୧୭ | ମଡ଼ାଇ | ମଘଇ |
| ୧୦୧ | ୩ | ମୋଟେ | ମୋତେ |
| ୧୧୨ | ୨୪ | କଣିଚି | ମଣିଚି |
| ୧୨୧ | ୨ | ସେମିତି ଥିଲ | (କଟିଯିବ) |
| ୧୨୨ | ୧୯ | କୁଷି | ପୁଷି |
| ୧୨୮ | ୧୧ | ମୋ | ତୋ |
| ୧୩୬ | ୯ | ନେଇ | ଦେଇ |
| ୧୩୬ | ୧୩ | ସବୁବେଳେ | ସବୁତକ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୩୮ | ୧୭ | ଦ୍ୱଆଗଲ | ଦ୍ୱଆଇଲ |
| ୧୪୩ | ୮ | ନେଇଥି | ସେଇଥି |
| ୧୪୪ | ୧୬ | ପଚିଶ | ପଚଶ |
| ୧୫୭ | ୧୧ | ସକଥା | (କଟିଯିବ) |
| ୧୭୨ | ୨୨ | ଘାଇବୁ | ଖାଇବୁ |
| ୧୭୮ | ଶେଷଧାଡ଼ି | ଜଣାଯାଏ | ଜଣାଯାଏ |
| ୧୮୪ | ୨୫ | କୁରର | ବଗୁର |
| ୧୮୯ | ୨ | ସେ ପାଖରେ | ସେ ପାଖରେ |
| ୧୯୩ | ୧୧ | ଦୋକାର | ଦୋକାନର |
| ୧୯୮ | ୧୫ | ହାତକୁ | ହାଡକୁ |
| ୨୦୬ | ୧୭ | ରାଜା | ରାଜ |
| ୨୧୭ | ୨୦ | ପରହ୍ୱା | ପରୀକ୍ଷା |
| ୨୧୯ | ଶେଷଧାଡ଼ି | ଦେଇ | ନେଇ |
| ୨୨୬ | ୨୦ | ସକୁ | ସବୁ |
| ୨୪୭ | ୧୩ | ପ୍ରାଣୀଠା | ପାଣୀର |
| ୨୪୮ | ୫ | ଡିଆର | ଡିଆର |
| ୨୬୪ | ୧୩ | ଯେତେ | ତୋତେ |

---